# ଶକ୍ତି ତତ୍ତ୍ୱ ଓ ଶ୍ରୀଦୁର୍ଗା

ଡକ୍ଟର ତ୍ରିନାଥ ପଟ୍ଟନାୟକ

**ଶ୍ରୀ**ମଦ୍ ଦେବୀ ଭାଗବତରେ ଶକ୍ତି ରୂପର ବ୍ୟାଖ୍ୟା କରାଯାଇଛି, ତାହା ହେଉଛି - 'ଶ' ଶବ୍ଦ ମଙ୍ଗଳଦାୟକ ହୋଇଥିବା ଯୋଗୁଁ ଐଶ୍ୱର୍ଯ୍ୟବୋଧକ ଅଟେ । ଶକ୍ତିର 'କ୍ତି' ଶବ୍ଦ ପରାକ୍ରମ ଅର୍ଥରେ ହୋଇଥାଏ । ଏଣୁ ଏହି ପରାକ୍ରମକୁ ଯିଏ ଦାନ କରେ ସେ ହିଁ ଶକ୍ତି । ଶକ୍ତି ଯେଉଁଠାରେ ଥାଏ ତାହା ଶକ୍ତ, ଆଉ ଯିଏ ଶକ୍ତି ଉପାସନା କରେ ତାହାକୁ ଶାକ୍ତ କୁହାଯାଏ । ଏଭଳି ଭାବରେ ସାରା ଚରାଚର ଜଗତ 'ଶାକ୍ତ' ଅଟେ । ଶକ୍ତି ବ୍ୟାପକ । ପ୍ରତ୍ୟେକ ବସ୍ତୁରେ 'ଶକ୍ତି' ଅଛି । ଦୁର୍ଗା ସପ୍ତଶତୀରେ ସ୍ୱୟଂ ବ୍ରହ୍ମା କହିଛନ୍ତି - ଯତ୍ କିଞ୍ଚିତ୍, କ୍ୱଚିଦ ବସ୍ତୁ, ସଦ ସଦ୍ବାଽଖିଳାତ୍ମିକେ ! ତସ୍ୟ ସର୍ବସ୍ୟ ଯା ଶକ୍ତି ସାତ୍ୱଂ କିଂ ସ୍ତୂୟସେମୟା । ଅର୍ଥାତ୍ 'ହେ ସର୍ବମୟୀ ଦେବୀ, ଏହି ଅନନ୍ତ କୋଟି ବ୍ରହ୍ମାଣ୍ଡରେ ଯେଉଁଠାରେ ଯାହାକିଛି ସତ୍ ଅସତ୍ ପଦାର୍ଥ ଅଛି, ତାହାର ସବୁକିଛି 'ଶକ୍ତିଭୂତା' ହେଉଛ ତୁମେ, ଏଣୁ ତୁମର ସ୍ତୁତି ମୁଁ କିଭଳି ଭାବରେ କରିପାରିବି ?'



ପ୍ରତ୍ୟେକ ବସ୍ତୁର ଶକ୍ତି ସ୍ୱଭାବରେ ଅଚିନ୍ତ୍ୟ ଏବଂ ଦ୍ରବ୍ୟଠାରୁ ପୃଥକ୍ ସ୍ଥିତିରେ ରହିଥାଏ । ତାହା ଦ୍ରବ୍ୟର ସୂକ୍ଷ୍ମରୂପ ଓ ଅବ୍ୟକ୍ତ ଅବସ୍ଥା । ଯାହା ଭିନ୍ନ ରୂପରେ ଗୋଚର ହୁଏ ନାହିଁ । କୌଣସି ଶବ୍ଦଦ୍ୱାରା ତାହା ବିଧାନ ବା ନିଷେଧ କରାଯାଇପାରିବ ନାହିଁ । କେବଳ କାର୍ଯ୍ୟର ସ୍ୱରୂପରୁ ହିଁ ଜଣାଯିବ ।

ଶକ୍ତୟଃ ସର୍ବଭାବନାମଚିନ୍ତ୍ୟା ଅପୃଥକ୍ ସ୍ଥିତାଃ<br>
ସ୍ୱରୂପେଣୈବ ଦୃଶ୍ୟନ୍ତେ ଦୃଶ୍ୟନ୍ତେ କାର୍ଯ୍ୟତସ୍ତୁ ତାଃ

ସୂକ୍ଷ୍ମାବସ୍ଥା ହୀ ସାତେଷାଂ ସର୍ବ ଭାବାନୁଗାମିନୀ<br>
ଇଦଂତୟାବିଧାତୁଂ ସା ନ ନିଷେଦ୍ଧୁଂ ଚ ସକ୍ୟତେ ।

ଈଶ୍ୱରଙ୍କ ମଧ୍ୟରେ ଶକ୍ତି ଏପରି ଭାବରେ ଅଭିନ୍ନ ରୂପରେ ଅବସ୍ଥିତ ଅଛନ୍ତି ଯେପରି ଚନ୍ଦ୍ର ରଶ୍ମି ଚନ୍ଦ୍ରମାଠାରୁ ଅଭିନ୍ନ । ଶକ୍ତି ସହଜ ରୂପ, ଜଗତ ଏହାର ଅଭିବ୍ୟକ୍ତି । ଯାହାକୁ ଆନନ୍ଦ କୁହାଯାଏ । କାରଣ ସେହି ଶକ୍ତି ନିରପେକ୍ଷ । ତାହା ନିତ୍ୟ କାରଣ, ତାହା କାଳାତୀତ । ତାହା ପୂର୍ଣ୍ଣ କାରଣ ସ୍ୱରୂପ ଅଟେ । ସେଥିପାଇଁ ଶକ୍ତି ଜଗତ ରୂପରେ ଅଭିବ୍ୟକ୍ତ ହୋଇଥାଏ । ତେଣୁ ତାହାକୁ ଲକ୍ଷ୍ମୀ କୁହାଯାଏ । ଯିଏ ଜଗତ ଭିତରେ ପୂର୍ଣ୍ଣ ଅଭିବ୍ୟକ୍ତ, ଅନ୍ୟ ଅର୍ଥରେ ଲକ୍ଷ୍ମୀ ବୋଲି କୁହାଯାଏ । ଏହି ଶକ୍ତିକୁ ଅନ୍ୟ ଅର୍ଥରେ ବିଷ୍ଣୁଶକ୍ତି ବୋଲି କୁହାଯାଏ । ଯାହାକି ଅବ୍ୟକ୍ତକୁ ନିଜ ବିକାଶ ମାର୍ଗରେ ପ୍ରେରିତ କରିଥାଏ । ପ୍ରକୃତି ତତ୍ତ୍ୱକୁ ପୁରୁଷ ସମ୍ମୁଖରେ ଉପସ୍ଥିତ କରିଥାଏ ।

ଭାରତୀୟ ଦର୍ଶନରେ ଆଦ୍ୟ ଶକ୍ତି ହେଉଛି ପ୍ରକୃତି । ସେଥିପାଇଁ ଶକ୍ତିକୁ ସଂସାରରେ ପ୍ରମୁଖ ସ୍ଥାନ ପ୍ରଦାନ କରାଯାଇଅଛି । ମାତୃଶକ୍ତି ରୂପରେ ବିଶ୍ୱରେ ଏହି ଶକ୍ତିକୁ ପୂଜା କରାଯାଏ । ମିଶର ମେସୋପୋଟାମିୟା, ଇରାନ ତଥା ପ୍ରାଗୈତିହାସିକ ଭାରତରେ ମାତୃଦେବୀ ଓ ଭୂଦେବୀଙ୍କର ସାଙ୍କେତିକ ସ୍ୱରୂପ ସୃଷ୍ଟି କରାଯାଇ ଅଛି । ସଂସାରର ଉତ୍ପତ୍ତି କାରଣ ଶକ୍ତି ହୋଇଥିବା ଯୋଗୁଁ ଶକ୍ତିପୂଜା ସଦାସର୍ବଦା ଚାଲିଛି ।

ସାମବେଦରେ ଉଲ୍ଲେଖ ଅଛି- 'ଏକ ଏବ ଦ୍ୱିଧାଜାତଃ' ଅର୍ଥାତ୍ ଈଶ୍ୱର ନିଜକୁ ବ୍ୟକ୍ତ କରିବା ନିମନ୍ତେ ପୁରୁଷ ଓ ପ୍ରକୃତି ଏହି ଦୁଇ ରୂପରେ ବିଭକ୍ତ କରିଛନ୍ତି ।

'ବ୍ରହ୍ମ ବୈବର୍ତ୍ତ' ପୁରାଣରେ ଏହି କଥାକୁ ବିସ୍ତାରିତ ଭାବରେ ବର୍ଣ୍ଣନା କରାଯାଇଛି । ଈଶ୍ୱର ସ୍ତ୍ରୀ ତତ୍ତ୍ୱକୁ ଉତ୍ପନ୍ନ କରି ଅଛନ୍ତି, ଯାହାକୁ ପ୍ରକୃତି କୁହାଯାଏ । ତାହାକୁ ହିଁ ମାୟା, ମହାମାୟା ଅଥବା ଶକ୍ତି କୁହାଯାଏ । ଶକ୍ତି ଓ ବ୍ରହ୍ମର ସ୍ୱଭାବ ଏକ । ପ୍ରକୃତି ବ୍ରହ୍ମରୁ ଉତ୍ପନ୍ନ ଓ ସମସ୍ତ ଗୁଣଦ୍ୱାରା ଯୁକ୍ତ ହୋଇଅଛି ।

ଜଗତ ରଚନା ନିମନ୍ତେ ପ୍ରକୃତି ଅନେକ ଦେବୀଙ୍କୁ ନିଜେ ସୃଷ୍ଟି କରିଛି ।

ସର୍ବ ଖଲ୍ୱିଦ ମେ ବାହଂ ନାନ୍ୟବସ୍ତି ସନାତନମ୍ । (ଦେବୀ ଭାଗବତ ୧/୧୫/୫୨)

ଏହି ସମସ୍ତ ସଂସାର ମୁଁ ଅଟେ । ମୋ ବ୍ୟତୀତ ଅନ୍ୟ କୌଣସି ଅବିନାଶୀ ତତ୍ତ୍ୱ ନାହିଁ । ବେଦରେ ଦେବୀଙ୍କୁ ଓଁକାର ଅର୍ଦ୍ଧମାତ୍ର ତଥା ଗାୟତ୍ରୀ ପ୍ରଣବ ରୂପେ ସ୍ୱୀକାର କରାଯାଇଅଛି । ଦେବୀ ନିଜେ ସ୍ୱୀକାର କରି ହିମାଳୟକୁ କହିଛନ୍ତି -

ଅହମେବାସ ପୂର୍ବଂହି ନାନ୍ୟତ୍ କିଂଚନ୍ନଗାଧିପ ।

ସର୍ବ ପ୍ରଥମେ ମୁଁ ଥିଲି ଅନ୍ୟ କେହି ନଥିଲେ । ସେହି ଆଦିଶକ୍ତି ଶାକ୍ତ ସମ୍ପ୍ରଦାୟର ଆରାଧ୍ୟା ଅଟନ୍ତି ।

ଇଚ୍ଛାନୁସାରେ ମନୁଷ୍ୟ ଫଳ ପ୍ରଦାନକାରୀ ଦେବୀଙ୍କୁ ଚିନ୍ତନ କରିଥାଏ । ଶକ୍ତି ସମ୍ପ୍ରଦାୟର ଆରାଧ୍ୟ ଦେବୀ ଶୈବ ତଥା ବୈଷ୍ଣବ ସମ୍ପ୍ରଦାୟରେ ପୂଜା ପାଉଛନ୍ତି । ବେଦମାତା ଗାୟତ୍ରୀଙ୍କର ଉପାସନା ସମସ୍ତ ବ୍ରାହ୍ମଣ କରନ୍ତି । ଏଣୁ କୁହାଯାଇଛି - ସର୍ବେଶାକ୍ତା ଦ୍ୱିଜାଃ ପ୍ରୋକ୍ତା ନ ଶୈବା ନ ଚ ବୈଷ୍ଣବାଃ ଆଦି ଶକ୍ତି ମୁପାସନ୍ତେ ଗାୟତ୍ରୀଂ ବେଦମାତରମ୍ ।

ଆଦିଶକ୍ତି ବେଦମାତା ଗାୟତ୍ରୀ ଉପାସନା କରନ୍ତି । ଏଣୁ ସମସ୍ତ ଦ୍ୱିଜ ଶାକ୍ତ, ଶୈବ କିମ୍ବା ବୈଷ୍ଣବ ନୁହନ୍ତି । ଭାରତରେ ବୈଷ୍ଣବମାନେ ବିଷ୍ଣୁଙ୍କୁ ଏବଂ ଶୈବମାନେ ଶିବଙ୍କୁ ପୂଜା କରିଥାନ୍ତି । କିନ୍ତୁ ଶକ୍ତିପୂଜା, ଶାକ୍ତ କରିବା ସହିତ ବୈଷ୍ଣବ ଓ ଶୈବମାନେ ମଧ୍ୟ କରିଥାନ୍ତି । ଦେବୀ ଆରାଧନା ବିନା କୌଣସି ସାଧକ ଓ ଭକ୍ତ କିଛି ହେଲେ ପ୍ରାପ୍ତ ହୋଇନଥାନ୍ତି । ଦେବୀଶକ୍ତିର ବିନା ସହାୟତାରେ ବ୍ରହ୍ମାମଧ୍ୟ କିଛି ପାଇ ପାରି ନାହାନ୍ତି ।

ଆମେ ଯେତେବେଳେ ଶକ୍ତିପୂଜାର ପ୍ରାଚୀନତା ବିଷୟରେ ଆଲୋଚନା କରୁ ପ୍ରଥମେ ସିନ୍ଧୁ ସଭ୍ୟତା ନିକଟକୁ ଚାଲିଯାଉଁ । ଖନନଦ୍ୱାରା ପ୍ରାପ୍ତ ବର୍ତ୍ତୁଳ ଫଳକକୁ ଦେଖି ତାହାକୁ ଶକ୍ତିର ପ୍ରତୀକ ବୋଲି ଗ୍ରହଣ କରୁ । ଏଭଳି ଭାବରେ ଜୀବସୃଷ୍ଟିକୁ ଆଖି ଆଗରେ ରଖି ପିତୃମୁଖ ଓ ମାତୃମୁଖ ରୂପରେ ସ୍ତ୍ରୀ ପୁରୁଷ ଜନନାଙ୍ଗର ଉପାସନା ଆରମ୍ଭ ହେଲା । ପରବର୍ତ୍ତୀ କାଳରେ ଶିଳ୍ପୀମାନଙ୍କଦ୍ୱାରା ଦେବୀ ଆକୃତି ସୃଷ୍ଟି ହେଲା ଓ ସକାମ ଭକ୍ତିର ପରିପ୍ରଚାର ଘଟିଲା । ଯାହାଙ୍କ ଅନୁକମ୍ପାରୁ ପ୍ରାଣୀ ଜଗତରେ ସମସ୍ତ କାର୍ଯ୍ୟ ସମ୍ପନ୍ନ ହୁଏ ସେ ହେଉଛି ନାରୀ । ଶକ୍ତି ପୂଜନ ନାରୀ ଆକୃତିକୁ ନେଇ ପ୍ରଥମେ ସୃଷ୍ଟି ହୋଇଛି ।

ବୈଦିକ ଯୁଗରେ ମାତୃରୂପର ଉପାସନା ପଦ୍ଧତି ଆମ ଦେଶରେ ଯେତେବେଳେ ପ୍ରଚଳିତ ହେଲା ପ୍ରଥମେ ତାହା ବୀଜାକାର ରୂପ ଧାରଣ କଲା । ଶାକ୍ତ ପୁରାଣମାନଙ୍କରେ ମାତୃବ୍ରହ୍ମର ଉପାସନା ପ୍ରାଧାନ୍ୟ ଲାଭ କଲା । ଫଳରେ ଭକ୍ତିମାର୍ଗର ସାଧନା ଧାରାରେ ତାହା ଅତିଶୀଘ୍ର ସଂଯୋଜିତ ହୋଇଗଲା । ଋଗ୍‌ବେଦରେ ମାତୃବ୍ରହ୍ମର ସୁସ୍ପଷ୍ଟ ପରିଚୟ ମିଳେ ଅଦିତି ନାମରେ । ଅଦିତି ସର୍ବଲୋକ ଜନନୀ, ବିଶ୍ୱଧାତ୍ରୀ, ମୁକ୍ତିପ୍ରଦାୟିନୀ, ଆତ୍ମ ସ୍ୱରୂପିଣୀ ଇତ୍ୟାଦି । ଋଗବେଦର ବାକସୁକ୍ତ ବା ଦେବୀ ସୁକ୍ତରେ ଆଦ୍ୟଶକ୍ତି ଜନନୀ ଦେବୀ ଜନନୀ ଭଗବତୀଙ୍କ ସ୍ୱରୂପ ଓ ମହିମା ବର୍ଣ୍ଣନା କରାଯାଇଅଛି । ଦେବୀ ସ୍ୱମୁଖରେ କହିଛନ୍ତି - ମୁଁ ହେଉଛି ବ୍ରହ୍ମସ୍ୱରୂପା, ରୁଦ୍ର, ବସୁ, ଆଦିତ୍ୟ ତଥା ବିଶ୍ୱଦେବଙ୍କ ରୂପରେ ବିଚରଣ କରୁଅଛି । ମୁଁ ମଧ୍ୟ ମିତ୍ର ବରୁଣ, ଇନ୍ଦ୍ର ଅଗ୍ନି ତଥା ଅଶ୍ୱିନୀ କୁମାରଦ୍ୱୟଙ୍କ ରୂପ ଧାରଣ କରିଥାଏ । ସେହି ଦେବୀ ଜନକଲ୍ୟାଣ ନିମନ୍ତେ ଅସୁର ଧ୍ୱଂସ ପାଇଁ ସଦା ପ୍ରସ୍ତୁତ - ଅହଂ ଜନାୟ ସମଦଂ କୃଣୋମି । ସେହି ହିଁ ଜଗତର ଏକମାତ୍ର ଅଧିଶ୍ୱରୀ । ସେ ହିଁ ଭକ୍ତମାନଙ୍କୁ ଭୋଗ ଓ ମୋକ୍ଷ ପ୍ରଦାନ କରିଥାନ୍ତି ।

ଯାହାଙ୍କର ବର୍ଣ୍ଣ ଅଗ୍ନି ବର୍ଣ୍ଣ ସଦୃଶ, ଯିଏ ତପଶକ୍ତିଦ୍ୱାରା ଜାଜ୍ୱଲ୍ୟମାନା, ପ୍ରକାଶମାନା, ଯିଏ ଐହିକ ଓ ପାରଲୌକିକ କର୍ମଫଳ ପ୍ରାପ୍ତି ନିମନ୍ତେ ସାଧକ ନିକଟରେ ଉପସ୍ଥିତ ହୁଅନ୍ତି ମୁଁ ସେହି ଦୁର୍ଗା ଦେବୀଙ୍କର ଶରଣ ଯାଉଛି । ହେ ଦେବି ! ତୁମେ ସଂସାର ସାଗର ପାର ନିମନ୍ତେ ସେତୁ ସ୍ୱରୂପା । ମୁଁ ତୁମକୁ ପ୍ରଣାମ କରୁଛି । କେନୋପନିଷଦରେ ବ୍ରହ୍ମବିଦ୍ୟା ଓ ବ୍ରହ୍ମଶକ୍ତି ସ୍ୱରୂପିଣୀ ହୈମବତୀ ଉମାଙ୍କ ପ୍ରସଙ୍ଗ ଅଛି । ଏଥିରୁ ଜଣାପଡୁଛି ଯେ ଆଦ୍ୟ ଶକ୍ତି ହିଁ ସର୍ବଭୂତରେ ଶକ୍ତି ରୂପରେ ଅବସ୍ଥିତ ଅଛନ୍ତି । ତାଙ୍କର ଶକ୍ତି ବିନା ଏକମାତ୍ର ତୃଣ ଖଣ୍ଡକୁ ମଧ୍ୟ ଅଗ୍ନି ଜଳାଇ ଦେଇପାରିବ ନାହିଁ ।

ବାୟୁ ଛୋଟ ତୃଣ ଖଣ୍ଡକୁ ମଧ୍ୟ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ସ୍ଥାନାନ୍ତରିତ କରିପାରିବ ନାହିଁ ।

ଓଡ଼ିଶାରେ ଶକ୍ତିପୂଜା ଶ୍ରୀମନ୍ଦିରରେ ବହୁ ପୁରାତନ କାଳରୁ ପ୍ରଚଳିତ ହୋଇ ଆସୁଅଛି । ଏଠାରେ ଦେବୀ ବିମଳା ହେଉଛନ୍ତି ଭୈରବୀ ଓ ଶ୍ରୀଜଗନ୍ନାଥ ହେଉଛନ୍ତି ଭୈରବ । ମହାଭାରତରେ ବର୍ଣ୍ଣିତ ଅଛି ଯେ ପାଣ୍ଡବମାନେ ଲୋମଶ ଋଷିଙ୍କ ସହିତ ଉତ୍କଳକୁ ଆସି ପ୍ରାଚୀନ ଶକ୍ତିପୀଠ ଯାଜପୁରଠାରେ ପହଞ୍ଚିଥିଲେ । ଦେବୀଙ୍କ ନାଭିଦେଶ ଏଠାରେ ପଡ଼ିଥିଲା । ଏହା ବ୍ୟତୀତ ଓଡ଼ିଶାର ଆଦିବାସୀମାନେ ସ୍ତମ୍ଭ ସ୍ଥାପନ କରି ସ୍ତମ୍ଭେଶ୍ୱରୀ, ଖମ୍ଭେଶରୀ ରୂପେ ଶକ୍ତି ଆରାଧନା କରୁଥିଲେ । ଏବେ ଆସିକା ଓ ସୋନପୁରଠାରେ ପୂଜା ପାଉଛନ୍ତି । ସ୍ତମ୍ଭେଶ୍ୱରୀ କାଳକ୍ରମେ ପରବର୍ତ୍ତୀ ସମୟରେ ସୁଭଦ୍ରା ରୂପରେ ରୂପାନ୍ତରିତ ହୋଇଛନ୍ତି । ଓଡ଼ିଶାରେ ଭୌମ ଶାସକମାନଙ୍କର ସମୟରେ ଶକ୍ତିପୂଜା ଓ ତନ୍ତ୍ରର ପୁଷ୍କଳ ସାଧନ ହୋଇଥିଲା । ଏହା ପଞ୍ଚମ ଓ ଷଷ୍ଠ ଶତାବ୍ଦୀର କଥା । ଭୌମ ଯୁଗ ପରେ ସୋମ ଓ ଗଙ୍ଗବଂଶୀ ରାଜାମାନେ ମଧ୍ୟ ଶକ୍ତି ଆରାଧନା ପ୍ରତି ଗୁରୁତ୍ୱ ପ୍ରଦାନ କରିଥିଲେ । ଗଜପତି ପୁରୁଷୋତ୍ତମଦେବ (ଖ୍ରୀ:୧୪୬୬-୧୪୯୬) ଜଣେ ଦୁର୍ଗା ଉପାସକ ଥିଲେ । ଓଡ଼ିଶାରେ ଆଠଗୋଟି ସ୍ଥାନରେ ଚଣ୍ଡୀଙ୍କର ପ୍ରଧାନ ବିଗ୍ରହମାନ ଅଛି ।

ଝଙ୍କଡ଼ରେ ଶାରଳା, କାକଟପୁରରେ ମଙ୍ଗଳା, କୋଣାର୍କରେ ରାମଚଣ୍ଡୀ, ପୁରୀରେ ବିମଳା, ବାଙ୍କିରେ ଚର୍ଚ୍ଚିକା, ଯାଜପୁରରେ ବିରଜା, ପଶ୍ଚିମ (ତାଳଚେର)ରେ ହେଙ୍ଗୁଳା ଓ ଭୁବନେଶ୍ୱରରେ ଗୌରୀ । ଏସବୁ ପୀଠ ବହୁ ପୁତରାନ । ଏସବୁ ପୀଠ ତନ୍ତ୍ର ପୀଠ ରୂପରେ ପ୍ରସିଦ୍ଧ ।

ସଂପାଦକ, ପୁରାଣ ପତ୍ରିକା
ନିଆଳୀ, ଜି-କଟକ

## ପ୍ରାଥମିକ / ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ରଗୁଡ଼ିକୁ ଉନ୍ନୀତ କରାଯିବା ଉପରେ ବୈଠକ

ରାଜ୍ୟରେ ଥିବା ପ୍ରାଥମିକ ଏବଂ ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ରଗୁଡ଼ିକୁ ଉପଖଣ୍ଡ / ଜିଲ୍ଲା ଚିକିତ୍ସାଳୟକୁ ଉନ୍ନୀତ କରାଯିବା ନେଇ ଗତ ତା.୨୬.୦୮.୦୯ରିଖ ଦିନ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ତଥା ସାଧାରଣ ଅଭିଯୋଗ ଓ ପେନସନ ପ୍ରଶାସନ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ଆଚାର୍ଯ୍ୟଙ୍କ ଅଧ୍ୟକ୍ଷତାରେ ଏକ ବୈଠକ ଅନୁଷ୍ଠିତ ହୋଇ ଯାଇଛି । ରାଜ୍ୟରେ ବର୍ତ୍ତମାନ ୩୨ଟି ଜିଲ୍ଲା ସଦର ମହକୁମା ଡାକ୍ତରଖାନା, ୨୨ଟି ଉପଖଣ୍ଡସ୍ତରୀୟ ଡାକ୍ତରଖାନା, ୨୩୧ଟି ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର, ୧୧୫ଟି ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ଏବଂ ୧୨୧୨ଟି ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର (ନୂତନ) ରହିଛି । ଭାରତ ସରକାରଙ୍କ ଗାଇଡ଼ଲାଇନ ଅନୁଯାୟୀ ସମତଳ ଅଞ୍ଚଳରେ ପ୍ରତି ଏକ ଲକ୍ଷ ୨୦ ହଜାର ଏବଂ ପାହାଡ଼ିଆ ଅଞ୍ଚଳରେ ପ୍ରତି ୮୦ ହଜାର ଜନସଂଖ୍ୟାରେ ଗୋଟିଏ ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର ରହିବା କଥା । ସେହିପରି ସମତଳ ଅଞ୍ଚଳରେ ପ୍ରତି ୩୦ ହଜାର ଏବଂ ପାହାଡ଼ିଆ ଅଞ୍ଚଳରେ ପ୍ରତି ୨୦ ହଜାର ଜନସଂଖ୍ୟାରେ ଗୋଟିଏ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ରହିବ । ରାଜ୍ୟରେ ୨୦୦୮ରେ ଲୋକସଂଖ୍ୟା ପ୍ରାୟ ୪ କୋଟି ହୋଇଥିବା ବେଳେ ଆମର ୩୪୬ଟି ପ୍ରାଥମିକ / ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର ରହିଛି । ଏତଦ୍‌ବ୍ୟତୀତ ୧୨୧୨ ଗୋଟି ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର (ନୂତନ) ମଧ୍ୟ ପ୍ରତିଷ୍ଠା କରାଯାଇଛି । ତେବେ ବିଭିନ୍ନ ସ୍ତରରୁ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରକୁ ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର ଏବଂ ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦକୁ ଉପଖଣ୍ଡ / ଜିଲ୍ଲା ହସପିଟାଲକୁ ଉନ୍ନୀତ କରିବା ପାଇଁ ପ୍ରସ୍ତାବ ଆସୁଛି ।

ଆଜିର ବୈଠକରେ ବିଧାୟକ ସର୍ବଶ୍ରୀ ଅଶୋକ କୁମାର ପଣ୍ଡା, ଭାଗୀରଥି ବଡ଼ଜେନା ଏବଂ ବିଜୟ ମହାନ୍ତି ଯୋଗ ଦେଇ ଭୁବନେଶ୍ୱର ଅନ୍ତର୍ଗତ ତିନି ଗୋଟି ନିର୍ବାଚନ ମଣ୍ଡଳୀର ବିଭିନ୍ନ ସ୍ଥାନରେ ଥିବା ସ୍ୱାସ୍ଥ୍ୟ କେନ୍ଦ୍ରଗୁଡ଼ିକୁ ଉନ୍ନୀତ କରାଯିବା ପାଇଁ ସ୍ୱାସ୍ଥ୍ୟ ମନ୍ତ୍ରୀଙ୍କ ସହ ଆଲୋଚନା କରିଥିଲେ ।

ରାଜ୍ୟରେ ଡାକ୍ତରମାନଙ୍କର ଅଭାବ ରହିଛି । ମଞ୍ଜୁରିପ୍ରାପ୍ତ ଡାକ୍ତର ପଦବୀ ମଧ୍ୟରୁ ଗତ ଜୁନ୍ ମାସ ଶେଷ ସୁଦ୍ଧା ୯୬୫ ଡାକ୍ତର ପଦବୀ ଖାଲି ପଡ଼ିଛି । ସମସ୍ତ ଦୃଷ୍ଟିରୁ ବିଚାର କରାଯାଇ ଲୋକମାନଙ୍କୁ ଉନ୍ନତ ମାନର ଗୁଣାତ୍ମକ ସ୍ୱାସ୍ଥ୍ୟସେବା ଯୋଗାଇ ଦେବା ପାଇଁ ସ୍ୱାସ୍ଥ୍ୟ କେନ୍ଦ୍ରଗୁଡ଼ିକୁ ଉନ୍ନୀତ କରାଯିବା ନେଇ ପ୍ରସ୍ତାବ ଉପରେ ତର୍ଜମା କରାଯାଇ ଆବଶ୍ୟକ ପଦକ୍ଷେପ ଗ୍ରହଣ କରାଯିବ ବୋଲି ସ୍ୱାସ୍ଥ୍ୟ ମନ୍ତ୍ରୀ ଶ୍ରୀ ଆଚାର୍ଯ୍ୟ ପ୍ରକାଶ କରିଥିଲେ ।

# ନବଗ୍ରହ ଓ ନବରାତ୍ର ପୂଜା

ଡକ୍ଟର ପ୍ରଦୀପ କୁମାର ଚୌଧୁରୀ

**ସୃ**ଷ୍ଟିର ଆବହମାନ କାଳରୁ ଦୈବୀ ଶକ୍ତିର ଆରାଧନା ଏବଂ ଗ୍ରହମାନଙ୍କ ସହ ଜୀବଜଗତ ସହ ସଂପର୍କ ରହିଛି । ଗ୍ରହମାନଙ୍କ ଦୈବୀଶକ୍ତିର ପ୍ରତ୍ୟକ୍ଷ ଏବଂ ପରୋକ୍ଷ ସଂପର୍କ ଅଛି । ଜ୍ୟୋତିର୍ବିଦମାନଙ୍କ ମତରେ ଗ୍ରହମଣ୍ଡଳ ରବି, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନି, ରାହୁ ଓ କେତୁ ଏହିପରି ନଅଟି ଗ୍ରହକୁ ନେଇ ଗଠିତ । ଏମାନଙ୍କ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ପ୍ରଭାବ ପୃଥିବୀ ତଥା ପୃଥିବୀର ଜୀବଜଗତ ଉପରେ ଅଛି । ଏମାନଙ୍କ ସୁପ୍ରଭାବରେ ବ୍ୟକ୍ତି କିମ୍ବା ଜୀବଜଗତକୁ ସୁଫଳ ମିଳେ । ଏମାନଙ୍କ କୁପ୍ରଭାବରେ କୁଫଳ ମିଳେ । ଏହି ଗ୍ରହମାନଙ୍କ କୁପ୍ରଭାବରୁ ମୁକ୍ତି ନିମନ୍ତେ ଏବଂ ସୁଫଳ ପ୍ରାପ୍ତି ନିମନ୍ତେ ପରୋକ୍ଷ ଭାବରେ ଦୈବୀଶକ୍ତିର ପୂଜା, ଆରାଧନା, ଉପାସନା, ଧ୍ୟାନ, ଜପ, ହୋମ, ଯଜ୍ଞ, ଯନ୍ତ୍ରଧାରଣ କରି ବ୍ୟକ୍ତି ତଥା ଜୀବଜଗତ ସୁସ୍ଥ ଓ ସମୃଦ୍ଧ ହୁଏ । ଏହାର ଦୃଷ୍ଟାନ୍ତ ପୌରାଣିକ କିମ୍ବଦନ୍ତୀର ପୃଷ୍ଠା ମଣ୍ଡନ କରିଛି । ଏହା ଅନ୍ୱେଷଣ ଏବଂ ଅନୁଧ୍ୟାନ କଲେ ଜଣାପଡ଼ିବ ଯେ ନବଗ୍ରହ ନବରାତ୍ର ପୂଜା ସହ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ସଂପର୍କ ରହିଛି । ଶିବ ଏବଂ ଶକ୍ତିର ଉପାସନାଦ୍ୱାରା ସକଳ ଅସୁବିଧାକୁ ଉଲ୍ଲଂଘନପୂର୍ବକ ବିଜୟପ୍ରାପ୍ତି କରିବା ପଛରେ ଗ୍ରହମାନଙ୍କୁ ସନ୍ତୁଷ୍ଟ କରିବା କାର୍ଯ୍ୟ ପରୋକ୍ଷରେ ନିହିତ ଅଛି, ଏଥିରେ ଦ୍ୱିମତ ନାହିଁ । ଶ୍ରୀରାମଚନ୍ଦ୍ର ତ୍ରେତୟା ଯୁଗରେ ସେତୁବନ୍ଧ ନିର୍ମାଣର ଅବ୍ୟବହିତ ପୂର୍ବରୁ ବିଜୟ ପ୍ରାପ୍ତି ନିମନ୍ତେ ଶିବଲିଙ୍ଗ ପ୍ରତିଷ୍ଠା କରି ଶିବ ଆରାଧନା କରିବାର ପ୍ରତ୍ୟକ୍ଷ ପ୍ରମାଣ ଅଛି । ଠିକ୍ ସେହିପରି ରାମଚନ୍ଦ୍ର ଶତ୍ରୁଦମନ, ରାବଣ ସଂହାର, ସୀତାମାତାଙ୍କ ଉଦ୍ଧାର, ଦୁଷ୍ଟଶକ୍ତିର ବିନାଶ ଏବଂ ବିଜୟ ପ୍ରାପ୍ତି ନିମନ୍ତେ ଦୈବୀଶକ୍ତିର ଆରାଧନା ନବଦିନ ବ୍ୟାପୀ ନବରାତ୍ର ଦୁର୍ଗାମାତାଙ୍କ ପୂଜା କରିବା ରାମାୟଣ ପୃଷ୍ଠାମଣ୍ଡନ କରିଛି । ନବରାତ୍ର ପୂଜାକରି ନବଦୁର୍ଗାଙ୍କୁ ସନ୍ତୁଷ୍ଟ କରି ଆଶୀର୍ବାଦ ନେଇ ରାବଣର ସଂହାର, ଦୃଷ୍ଟିଶକ୍ତିର ବିନାଶ ପୂର୍ବକ ଶ୍ରୀରାମଚନ୍ଦ୍ର ଜୟଲାଭ କରିଥିଲେ ନବରାତ୍ର ପୂଜାର ଦଶମ ଦିନ । ଏହି ଦିନକୁ ଦଶହରା ବା ବିଜୟ ଉତ୍ସବ ରୂପେ ପାଳନ କରାଯାଏ । ନବରାତ୍ର ପୂଜାର ପରୋକ୍ଷ ଭାବରେ ନବଗ୍ରହଙ୍କ ସମ୍ପର୍କ ରହିଛି ଏଥିରେ ଦ୍ୱିଧା ନାହିଁ । ନବରାତ୍ର ପୂଜାରେ ପରୋକ୍ଷ ଭାବରେ ନବଦୁର୍ଗାଙ୍କୁ ପ୍ରତ୍ୟେକ ଗ୍ରହଙ୍କ ଅଧିଷ୍ଠାତ୍ରୀ ମାତୃ ରୂପରେ ପୂଜା ବା ଆରାଧନାପୂର୍ବକ ପରୋକ୍ଷରେ ନବଗ୍ରହଙ୍କୁ ସନ୍ତୁଷ୍ଟ କରି ସେମାନଙ୍କ ସୁପ୍ରଭାବରେ ବ୍ୟକ୍ତି, ଜାତି, ସମାଜ, ଏପରିକି ସଂପୂର୍ଣ୍ଣ ଜଗତର କଲ୍ୟାଣ କରାଯାଇପାରେ ବୋଲି ଏହି ଦୃଷ୍ଟାନ୍ତରୁ ଅନୁମେୟ ।



ପବିତ୍ର ଚୈତ୍ରମାସ ଶୁକ୍ଳପକ୍ଷର ପ୍ରତିପଦା ତିଥିରେ ଶ୍ରୀରାମଚନ୍ଦ୍ର ମା' ଦୁର୍ଗାଙ୍କୁ ନବଦିନ ବ୍ୟାପୀ ପୂଜା କରି ଆଶୀର୍ବାଦ ନେଇ ଦଶମ ଦିନ ବିଜୟ ଉତ୍ସବ ପାଳନ କରିଥିଲେ । ନବ ଦୁର୍ଗାପୂଜା ପରୋକ୍ଷରେ ନବଗ୍ରହଙ୍କ ଶୁଭଦୃଷ୍ଟି ଆକର୍ଷଣ କରି ଶୁଭ ଫଳପ୍ରାପ୍ତି ପୂର୍ବକ ଦୁଷ୍ଟଶକ୍ତିର ବିନାଶ ସମ୍ଭବ ହେଲା । ରାମାୟଣ ପୃଷ୍ଠାରେ ପ୍ରତ୍ୟକ୍ଷରେ ଉଲ୍ଲେଖ ଅଛି ଯେ ଋଷି ଅଗସ୍ତିଙ୍କ ଉପଦେଶରେ ଶ୍ରୀରାମଚନ୍ଦ୍ର ଗ୍ରହରାଜ ରବିଙ୍କୁ ଆରାଧନା ପୂର୍ବକ ରଣକ୍ଷେତ୍ରରେ ତିନିଥର ଆଦିତ୍ୟ ହୃଦୟ ପଠନ କରି ରାବଣକୁ ସଂହାର କରିଥିଲେ । ଏଥିରୁ ଅନୁମାନ କରାଯାଏ ଯେ ନବରାତ୍ର ପୂଜା ବା ନବଦୁର୍ଗା ପୂଜା ନବଗ୍ରହଙ୍କ ସନ୍ତୁଷ୍ଟ ଉଦ୍ଦେଶ୍ୟରେ ଦୈବୀଶକ୍ତି ପୂଜା ମାଧ୍ୟମରେ କରାଯାଉଥିଲା ।

ଠିକ୍ ସେହିପରି ଦେବୀ ପୁରାଣରେ ଦଶହରା ଉତ୍ସବକୁ ମହିଷାସୁର ସଂହାର ବା ଦୈବୀଶକ୍ତିର ବିଜୟ ଉତ୍ସବ ବୋଲି ବର୍ଣ୍ଣନା ଅଛି । ଦେବୀ ନବଦିନ ବ୍ୟାପୀ ନବଦୁର୍ଗା ରୂପ ନେଇ ଦଶମ ଦିନ ଦୁଷ୍ଟଶକ୍ତିର ବିନାଶ ପୂର୍ବକ ବିଜୟ ଉତ୍ସବକୁ ଦଶହରା କୁହାଯାଏ । ନବଗ୍ରହଙ୍କୁ ସନ୍ତୁଷ୍ଟପୂର୍ବକ ନବଦୁର୍ଗା ରୂପେ ପୂଜା ହୋଇ ଦଶମଦିନ ବିଜୟପ୍ରାପ୍ତି ହୋଇଥିଲା । ପ୍ରତ୍ୟେକ ବର୍ଷର ଆଶ୍ୱିନ ମାସ ଶୁକ୍ଳପକ୍ଷ ପ୍ରତିପଦା ତିଥିଠାରୁ ଦଶମୀ ତିଥି ପର୍ଯ୍ୟନ୍ତ ଦୁର୍ଗାପୂଜା ଉତ୍ସବ ପାଳିତ ହୁଏ । ଏଥିରେ ନବରାତ୍ର ପୂଜା ହୁଏ । ନବରାତ୍ର ପୂଜା ଅର୍ଥାତ୍ ଦୈବୀଶକ୍ତିର ସ୍ୱରୂପକୁ ନବଗ୍ରହଙ୍କୁ ପରୋକ୍ଷ ଭାବରେ ଆରାଧନା କରି ସୁଫଳ ପାଇବା । ନବରାତ୍ର ପୂଜାରେ ଦୁର୍ଗାଦେବୀଙ୍କୁ ଭିନ୍ନ ଭିନ୍ନ ନାମରେ ନବଦିନ ପର୍ଯ୍ୟନ୍ତ ପୂଜା କରାଯାଏ ।

ପ୍ରଥମ ଦିନ - ମା' ଶୈଳପୁତ୍ରୀ
ଦ୍ୱିତୀୟ ଦିନ - ମା' ବ୍ରହ୍ମଚାରିଣୀ
ତୃତୀୟ ଦିନ - ମା' ଚନ୍ଦ୍ରଘଣ୍ଟା
ଚତୁର୍ଥ ଦିନ - ମା' କୁଷ୍ମାଣ୍ଡ
ପଞ୍ଚମ ଦିନ - ମା' ସ୍କନ୍ଦମାତା
ଷଷ୍ଠ ଦିନ - ମା' କାତ୍ୟାୟନୀ
ସପ୍ତମ ଦିନ - ମା' କାଳରାତ୍ରୀ
ଅଷ୍ଟମ ଦିନ - ମା' ମହାଗୌରୀ
ନବମ ଦିନ - ମା' ସିଦ୍ଧିଦାତ୍ରୀ

ନବରାତ୍ରୀର, ମା' ନବଦୁର୍ଗାଙ୍କ ପୂଜା ମହାନବମୀ ଦିନ ସମାପ୍ତି ହୁଏ । ଦଶମୀ ଦିନ ମହିଷାସୁର ବା ଦୁଷ୍ଟଶକ୍ତିର ବିନାଶ ପୂର୍ବକ ବିଜୟ ଉତ୍ସବ ପାଳନ ହୁଏ । ଏଥିରୁ ଅନୁମେୟ ନବଗ୍ରହ ସହ ନବରାତ୍ର ପୂଜାର ପ୍ରତ୍ୟକ୍ଷ ଏବଂ ପରୋକ୍ଷ ସଂପର୍କ ରହିଛି ।

ରାବଣ ସଂହାର ପୂର୍ବକ ଶ୍ରୀରାମଚନ୍ଦ୍ରଙ୍କ ରଣକ୍ଷେତ୍ରରେ ମା' ନବଦୁର୍ଗା ପୂଜା ଏବଂ ମହିଷାସୁର ସଂହାର ନିମନ୍ତେ ମା' ଦୁର୍ଗାଙ୍କ ନବଦୁର୍ଗା ଅବତାର ପଛରେ ଏକ ଲୌକିକ ତତ୍ତ୍ୱ ନବଗ୍ରହ ସହ ବା ଗ୍ରହଜଗତ ସହ ସଂପର୍କ ଅଛି । ଏହା ରାମାୟଣ ପୃଷ୍ଠାରୁ ଏବଂ ଦେବୀ ପୁରାଣରୁ ଅନୁମେୟ । ସେହିପରି ଦଶ ମହାବିଦ୍ୟାରେ ଉଲ୍ଲେଖ ଅଛି ପ୍ରତ୍ୟେକ ଗ୍ରହଙ୍କୁ ସନ୍ତୁଷ୍ଟ ନିମନ୍ତେ ତଥା ଶୁଭଫଳ ପ୍ରାପ୍ତି ନିମନ୍ତେ ଏବଂ ସମସ୍ତ ଅଶୁଭ ଫଳ ପରିହାର ନିମନ୍ତେ ସେମାନଙ୍କ ଅଧିଷ୍ଠାତ୍ରୀ ଦେବୀଙ୍କ ପୂଜା, ହୋମ, ଜପ, ଯଜ୍ଞ, ଧ୍ୟାନ, ଆରାଧନା କରି ପ୍ରାପ୍ତି ହୁଏ ।

| ନବଗ୍ରହ | ଅଧିଷ୍ଠାତ୍ରୀ ଦେବୀ |
|---|---|
| ରବି ମହାଗ୍ରହ | ମା' ମାତଙ୍ଗୀ |
| ଚନ୍ଦ୍ର ମହାଗ୍ରହ | ମା' ଭୁବନେଶ୍ୱରୀ |
| ମଙ୍ଗଳ ମହାଗ୍ରହ | ମା' ବଗଳାମୁଖୀ |
| ବୁଧ ମହାଗ୍ରହ | ମା' ତ୍ରିପୁରାସୁନ୍ଦରୀ |
| ବୃହସ୍ପତି ମହାଗ୍ରହ | ମା' ତାରା |
| ଶୁକ୍ର ମହାଗ୍ରହ | ମା' କମଳାତ୍ମିକା |
| ଶନି ମହାଗ୍ରହ | ମା' ଦକ୍ଷିଣକାଳୀ |
| ରାହୁ ମହାଗ୍ରହ | ମା' ଛିନ୍ନମସ୍ତା |
| କେତୁ ମହାଗ୍ରହ | ମା' ଧୂମାବତୀ |

ନବଗ୍ରହଙ୍କ ମଧ୍ୟରୁ ରବି, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର ଓ ଶନିଙ୍କର ନିଜସ୍ୱ ସ୍ୱତନ୍ତ୍ର ବାର ରହିଛି । ସେହି ବାରରେ ସେହି ଇଷ୍ଟଦେବୀଙ୍କୁ ପୂଜା ଅର୍ଚ୍ଚନା କରାହୁଏ । ଉଦାହରଣ ସ୍ୱରୂପ, ରବି ମହାଗ୍ରହଙ୍କ ନିମନ୍ତେ ରବିବାର ଦିନ ମା' ମାତଙ୍ଗୀଙ୍କୁ ପୂଜା ଅର୍ଚ୍ଚନା କରାଯାଏ । କିନ୍ତୁ ରାହୁ ଓ କେତୁ ଏ ଦୁହେଁ ଛାୟାଗ୍ରହ ହେତୁ ଏମାନଙ୍କ କୌଣସି ସ୍ୱତନ୍ତ୍ର ବାର ନାହିଁ, ତେଣୁ ଏ ଦୁଇ ଗ୍ରହଙ୍କ ନିମନ୍ତେ ଶୁକ୍ର କିମ୍ବା ଶନିବାର ପୂଜା ଅର୍ଚ୍ଚନା କରାଯାଏ । ଯେଉଁ ବର୍ଷ ଯେଉଁ ବାର ନବରାତ୍ର ପୂଜାର ପ୍ରଥମ ଦିନ ପଡ଼େ ସେହି ବାରର ଅଧିଷ୍ଠାତ୍ରୀ ଦେବୀଙ୍କ ରୂପକୁ ସେହି ଦିନ ପୂଜା କରାଯାଏ । ଉଦାହରଣ ସ୍ୱରୂପ, ନବରାତ୍ର ପୂଜାର ପ୍ରଥମ ଦିନ ମଙ୍ଗଳବାର ଯେଉଁ ବର୍ଷ ପଡ଼ିବ ସେହି ବର୍ଷ ନବରାତ୍ରର ପ୍ରଥମ ଦିନ ମା' ବଗଳାମୁଖୀ ରୂପରେ ଆରାଧନା ଆରମ୍ଭ ହୋଇ ସେହି କ୍ରମରେ ବିଧିବଦ୍ଧ ଭାବରେ ଚାଲେ ।

ନବରାତ୍ର ପୂଜା ଦ୍ୱାରା କେବଳ ଦୈବୀଶକ୍ତିର ଆଶୀର୍ବାଦ ନୁହଁ, ସମ୍ପୂର୍ଣ୍ଣ ଗ୍ରହମଣ୍ଡଳ ବା ନବଗ୍ରହଙ୍କ ଆଶୀର୍ବାଦ ପ୍ରାପ୍ତି ହୁଏ । ଏଥିରେ ବ୍ୟକ୍ତି, ଜାତି, ସମାଜ, ରାଷ୍ଟ୍ର, ଜୀବଜଗତ ଏବଂ ସଂପୂର୍ଣ୍ଣ ବିଶ୍ୱ ବ୍ରହ୍ମାଣ୍ଡର କଲ୍ୟାଣ ସାଧିତ ଅଛି ଏଥିରେ ତିଳେ ହେଲେ ସନ୍ଦେହ ନାହିଁ ।

ଯା ଦେବୀ ସର୍ବଭୂତେଷୁ ନବଦୁର୍ଗାରୂପେଣ ସଂସ୍ଥିତା
ନମସ୍ତସୈ ନମସ୍ତସୈ ନମସ୍ତସୈ ନମୋ ନମଃ ।
ଯା ଦେବୀ ସର୍ବଭୂତେଷୁ ନବଗ୍ରହ ରୂପେଣ ସଂସ୍ଥିତା
ନମସ୍ତସୈ ନମସ୍ତସୈ ନମସ୍ତସୈ ନମୋ ନମଃ ॥

ଜ୍ୟୋତିର୍ବିଦ ଓ ଭାରତୀୟ ସୂଚନା ସେବାର ଅଧିକାରୀ
କ୍ୱାର୍ଟର ନଂ- ଭି.ଏ.-୩୪/୪
ୟୁନିଟ୍-୨, ଭୁବନେଶ୍ୱର

# ମହିଷମର୍ଦ୍ଦିନୀ

ରବୀନ୍ଦ୍ର କୁମାର ବେହୁରିଆ

ମାତୃ ପୂଜାର ପରିକଳ୍ପନା ସଚେତନ ମଣିଷର ଏକ ଶ୍ରେଷ୍ଠ ଉପଲବ୍ଧି କହିଲେ ଅତ୍ୟୁକ୍ତି ହେବ ନାହିଁ । ଜ୍ଞାନୀ ତଥା ଅଜ୍ଞାନ, ସୃଜନଶୀଳ ବ୍ୟକ୍ତିମାନେ ମାତୃଶକ୍ତିକୁ ବିଭିନ୍ନ ଭାବରେ ରୂପ ଦେଇଛନ୍ତି । କେତେବେଳେ ସେ ଜଗତ୍ ଜନନୀ ରୂପେ ଶାନ୍ତ, ସହାନୁଭୂତିଶୀଳା, ସନ୍ତୋଷୀ, ସର୍ବମଙ୍ଗଳକାରିଣୀ ସର୍ବମଙ୍ଗଳା, ଅନ୍ୟ ଭାବରେ ସେ ଭୀମା, ଭୀଷଣା, ଭୟଙ୍କରୀ, କାଳୀ କରାଳୀ ଓ ଦୁର୍ଗା ଦୁର୍ଗତିନାଶିନୀ । ଏ ଦେଶରେ ସମସ୍ତ ଧର୍ମଗ୍ରନ୍ଥ- ବେଦ, ଉପନିଷଦ, ପୁରାଣ ଆଦିରେ ଶକ୍ତିର ମହିମା ପ୍ରକଟିତ । ଦେଶର ପ୍ରତିପ୍ରାନ୍ତ ଗୁଞ୍ଜରିତ ମାତୃ ସ୍ତୁତିରେ -



ଯା ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା
ନମସ୍ତସୈ ନମସ୍ତସୈ ନମସ୍ତସୈ ନମୋ ନମଃ ।

ମହିଷମର୍ଦ୍ଦିନୀ ଆଖ୍ୟାନ ବୈଦିକଯୁଗ ପରବର୍ତ୍ତୀ ସମୟର କୌଣସି ଜନଜାତିର ଏକ ଘଟଣାରୁ ଉତ୍ପତ୍ତି ହୋଇଥିବା ସମ୍ଭବ । ବେଦ ମହିଷମର୍ଦ୍ଦିନୀଙ୍କ ସଂପର୍କରେ ନୀରବ ରହୁଥିବାବେଳେ ଆଜିକୁ ପ୍ରାୟ ପାଞ୍ଚହଜାର ବର୍ଷ ପୂର୍ବ ସିନ୍ଧୁ ସଭ୍ୟତାର ପ୍ରତ୍ନତାତ୍ତ୍ୱିକ ଖନନରୁ ପ୍ରାପ୍ତ କେତେକ ମୋହର ବା ସିଲ୍‌ରେ ଏହି ଆଖ୍ୟାନର ଆଦ୍ୟ ସୂଚନା ମିଳେ । ମହୋଞ୍ଜୋଦାରୋରୁ ପ୍ରାପ୍ତ ଏକ ମୋହରରେ ଏକ ଦୁଷ୍ଟ ମହିଷ ସହିତ ଲଢୁଥିବା କେତେକ ଦୃଶ୍ୟ ରହିଛି । ସେହିପରି ଅନ୍ୟ କେତୋଟି ମୋହରରେ ବୃକ୍ଷ କିମ୍ବା ମଞ୍ଚା ଉପରେ ରହିଥିବା ଜଣେ ନାରୀ ଓ ନିକଟରେ ଥିବା ବ୍ୟାଘ୍ରର ଚିତ୍ର, ବନବାସିନୀ କୌଣସି ଦେବୀଙ୍କର ସୂଚନା ଦିଏ । ବ୍ୟାଘ୍ର ସହିତ ନାରୀ ପ୍ରତିମାଟି ବନଦୁର୍ଗାଙ୍କ ଆଦ୍ୟରୂପ ହୋଇପାରେ । ଏହାବ୍ୟତୀତ ପୋଡ଼ାମାଟିର ଅନେକ ନାରୀ-ପ୍ରତିମା ସେ ସମୟରେ ମାତୃଶକ୍ତି ପୂଜାର ପ୍ରଚଳନକୁ ବୁଝାଏ । ଅର୍ଥାତ୍ ସାମୂହିକ ଭାବେ ଏହିସବୁ ତଥ୍ୟ ମହିଷମର୍ଦ୍ଦିନୀ ଦୁର୍ଗାଙ୍କ ଆଦ୍ୟ ରୂପର ଉତ୍ସ ହୋଇଥିବା ସମ୍ଭବ ।

ହରିବଂଶରେ ଦୁର୍ଗାଙ୍କୁ ସ୍ପଷ୍ଟଭାବେ ମହିଷମର୍ଦ୍ଦିନୀ ଭାବରେ ବର୍ଣ୍ଣନା କରିବା ସଂଗେସଂଗେ ଯୁଦ୍ଧରେ ବିଜୟ ପାଇଁ ତାଙ୍କ ପୂଜାର୍ଚ୍ଚନାର ସୂଚନା ମିଳେ । ଏଠାରେ ଦେବୀ ବିନ୍ଧ୍ୟବାସିନୀ ନାମରେ ପରିଚିତା । ସେହିପରି ଖ୍ରୀ: ୧୪ଶ-୧୫ଶ ଶତାବ୍ଦୀରେ ରଚିତ ମୟୂରଙ୍କ ପ୍ରଖ୍ୟାତ ତନ୍ତ୍ରଶାସ୍ତ୍ର ‘ତନ୍ତ୍ରସାର’ରେ ମଧ ମହିଷାସୁର ସହିତ ଦେବୀଙ୍କ ଭୀଷଣ ଯୁଦ୍ଧର ଅବତାରଣା ଜନମାନସକୁ ପ୍ରଭାବିତ କରିଛି । ମାର୍କଣ୍ଡେୟଙ୍କଦ୍ୱାରା ରଚିତ ମାର୍କଣ୍ଡେୟ ପୁରାଣ ଗ୍ରନ୍ଥରେ ଶକ୍ତିତତ୍ତ୍ୱର ପରିକଳ୍ପନା କରାଯାଇଛି । ଏହି ମହାନ୍ ଗ୍ରନ୍ଥ ୧୩୭ ଅଧ୍ୟାୟ ବିଶିଷ୍ଟ । ଏହାର ୮୧ ଅଧ୍ୟାୟଠାରୁ ୮୪ ଅଧ୍ୟାୟ ମଧ୍ୟରେ ଦେବୀଙ୍କର ଆବିର୍ଭାବ ମହିଷାସୁର ବଧ ବିଷୟ ବର୍ଣ୍ଣିତ । ମାର୍କଣ୍ଡେୟ ପୁରାଣ ଅନୁଯାୟୀ ଦେବୀଙ୍କ ଅଲୌକିକ ରୂପ ପରିକଳ୍ପନା ଏହିପରି- ଶିବଙ୍କ ତେଜରୁ ମୁଖମଣ୍ଡଳ, ଯମଙ୍କ ତେଜରୁ କେଶରାଶି, ବିଷ୍ଣୁଙ୍କ ତେଜରୁ ବାହୁ ଯୁଗଳ, ଚନ୍ଦ୍ରଙ୍କ ତେଜରୁ କୁଚଯୁଗଳ, ଇନ୍ଦ୍ରଙ୍କ ତେଜରୁ କଟିଭାଗ, ବରୁଣଙ୍କ ତେଜରୁ ଜଘନ, ପୃଥିବୀଙ୍କ ତେଜରୁ ନିତମ୍ବ, ବ୍ରହ୍ମାଙ୍କ ତେଜରୁ ଦୁଇ ଚରଣ, ସୂର୍ଯ୍ୟଙ୍କ ତେଜରୁ ପଦାଙ୍ଗୁଳି, କୁବେରଙ୍କ ତେଜରୁ ନାସିକା, ପ୍ରଜାପତିଙ୍କ ତେଜରୁ ଦନ୍ତପଂକ୍ତି, ଅଗ୍ନିଙ୍କ

ତେଜରୁ ତ୍ରିନୟନ, ବାୟୁଙ୍କ ତେଜରୁ କର୍ଣ୍ଣଦ୍ୱୟ ଉତ୍ପନ୍ନ ହୋଇଛି । ଦେବୀଙ୍କ ବିଭିନ୍ନ ଗୁଣ ସହିତ ବର୍ଣ୍ଣତତ୍ତ୍ୱ ମଧ୍ୟ ସଂପର୍କିତ । ସେ ମୁକ୍ତି ପ୍ରଦାୟିନୀ ଭାବରେ ଶ୍ୱେତବର୍ଣ୍ଣା ହୋଇଥିବାବେଳେ ଭକ୍ତମାନଙ୍କ ଜ୍ଞାନର ସଂଚାଳିକା ବା ଶାସନକାରିଣୀ ଭାବେ ରକ୍ତବର୍ଣ୍ଣା ଅଟନ୍ତି । ଧନ ଓ ଐଶ୍ୱର୍ଯ୍ୟ ପ୍ରଦାୟିନୀ ରୂପରେ ସେ କେଶର ବର୍ଣ୍ଣ ଏବଂ ବିଶ୍ୱର ସଂହାରକାରିଣୀ ଭାବରେ ଦେବୀ କୃଷ୍ଣା ଅଟନ୍ତି ।

ଦୀର୍ଘକାଳ ଲାଗି ରହିଥିବା ଦେବାସୁର ସମରରେ ବିଜୟୀ ହୁଏ ଦାନବ ରାଜ ମହିଷାସୁର । ସମଗ୍ର ଅମରାବତୀ ହୁଏ ମହିଷାର ଆୟତ୍ତାଧୀନ । ସମସ୍ତ ଦେବଗଣ ସ୍ୱର୍ଗପୁରୀରୁ ବିତାଡ଼ିତ ହୋଇ ଦେବ ଦେବ ମହାଦେବ ଏବଂ ତ୍ରାଣକର୍ତ୍ତା ବିଷ୍ଣୁଙ୍କ ସମୀପରେ ଉପଗତ ହୁଅନ୍ତି । ମହିଷାର ଅତ୍ୟାଚାର ଓ ଦେବଗଣଙ୍କପ୍ରତି ତାହାର କାର୍ଯ୍ୟ କଳାପ ଶ୍ରବଣ କରି ଯୋଗାଧିରାଜ ଶିବ ଓ ଭଗବାନ ବିଷ୍ଣୁ କ୍ରୋଧାନ୍ୱିତ ହୋଇ ଉଠନ୍ତି । ସେହି ସମୟରେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ପବିତ୍ର ଶରୀରରୁ ଉଗ୍ର ତେଜ ନିଃସୃତ ହୁଏ । ଇନ୍ଦ୍ରାଦି ଦେବତାମାନଙ୍କ ଶରୀରରୁ ମଧ୍ୟ ବିପୁଳ ତେଜ ରଶ୍ମି ଉଦ୍ରେକ ହୁଏ । ସମସ୍ତ ତେଜ ରଶ୍ମିର ଏକୀଭୂତ ସତ୍ତା ମହିୟସୀ ଦେବୀ ଜ୍ୟୋତିର୍ମୟୀ ମା' ଦୁର୍ଗା । ତ୍ରେତିଶ କୋଟି ଦେବଗଣଙ୍କୁ ବରାଭୟ ଦେବା ନିମିତ୍ତ ଆବିର୍ଭୂତା ହୁଅନ୍ତି ସେ ।

ମହିଷାସୁର ସହିତ ଦେବୀଙ୍କ ଯୁଦ୍ଧର କାରଣ ଓ ଯୁଦ୍ଧର ବର୍ଣ୍ଣନା କରିବାକୁ ଯାଇ ବିଭିନ୍ନ ପୁରାଣରେ କେତେକ ଭିନ୍ନତା ପରିଲକ୍ଷିତ ହେଉଥିବା ସତ୍ତ୍ୱେ ଦେବୀଙ୍କୁ ସର୍ବଶକ୍ତିସମ୍ପନ୍ନ କରିବା ନିମନ୍ତେ ଦେବତାମାନେ ନିଜ ନିଜର ତେଜ ସମେତ ମୁଖ୍ୟ ଅସ୍ତ୍ରଶସ୍ତ୍ର, ବସ୍ତ୍ର-ଭୂଷଣ ଓ ଦ୍ରବ୍ୟମାନ ଦେଇଥିବା ସୂଚନା ମିଳେ । ଦେବୀ ମାହାତ୍ମ୍ୟରେ ଏହାର ବର୍ଣ୍ଣନା ଅତ୍ୟନ୍ତ ପ୍ରାଞ୍ଜଳ । ଏହି ଶାସ୍ତ୍ର ଅନୁସାରେ ଦେବୀଙ୍କ ହସ୍ତରେ ଦେଖାଯାଏ, ଶିବଙ୍କ ତ୍ରିଶୂଳ, ବିଷ୍ଣୁଙ୍କ ଶଙ୍ଖ ଓ ଚକ୍ର, ଅଗ୍ନିଙ୍କ ଶୂଳ, ବାୟୁଙ୍କର ଧନୁର୍ବାଣ, ଇନ୍ଦ୍ରଙ୍କ ବଜ୍ର ଓ ଐରାବତ ହସ୍ତୀର ଘଣ୍ଟା, ଯମଙ୍କ ଦଣ୍ଡ ଓ କାଳଫାଶ, କାଳଙ୍କ ଖଡ୍‌ଗ ଓ ଢାଲ, ବିଶ୍ୱକର୍ମାଙ୍କ ଦିବ୍ୟକୁଠାର, ବହୁ ଅସ୍ତ୍ରଶସ୍ତ୍ର ଓ ଦେବୀଙ୍କ ଭୂଷଣ ନିମନ୍ତେ ଅଳଙ୍କାର । ଶେଷନାଗ ଦେବୀଙ୍କ ଭୂଷଣ ନିମନ୍ତେ ଅଳଙ୍କାର । ଶେଷନାଗ ଦେବୀଙ୍କୁ ଦେଇଥିଲେ ନାଗଫାଶ ଓ କଣ୍ଠ ନିମନ୍ତେ ମଣିଯୁକ୍ତ ନାଗହରା । ଅନ୍ୟାନ୍ୟ ପଦାର୍ଥ ମଧ୍ୟରେ ବରୁଣ ଦେଇଥିବା ଅକ୍ଷୟ ବସ୍ତ୍ର ଓ ମୁକ୍ତାହାର, ପ୍ରଜାପତିଙ୍କ ଅକ୍ଷମାଳା, ବ୍ରହ୍ମାଙ୍କ କମଣ୍ଡଳୁ ଓ କୁବେରଙ୍କ ସୁରାପାତ୍ର ଅନ୍ତର୍ଭୁକ୍ତ । ଏତଦ୍‌ବ୍ୟତୀତ ଦେବୀଙ୍କ ବାହନ ନିମନ୍ତେ ହିମବାନ ଦେଇଥିବା ସିଂହ ଉଲ୍ଲେଖ ଯୋଗ୍ୟ ।

ସମସ୍ତ ତେଜ ରଶ୍ମିର ଏକୀଭୂତ ସତ୍ତା ମହିୟସୀ ଦେବୀ ଜ୍ୟୋତିର୍ମୟୀ ମା' ଦୁର୍ଗା । ତ୍ରେତିଶ କୋଟି ଦେବଗଣଙ୍କୁ ବରାଭୟ ଦେବା ନିମିତ୍ତ ଆବିର୍ଭୂତା ହୁଅନ୍ତି ସେ ।

ମହାଶକ୍ତି ମା' ଦୁର୍ଗାଙ୍କଦ୍ୱାରା ମହାପରାକ୍ରମୀ ମହିଷାସୁରର ବିନାଶ ଘଟି ଦେବଲୋକରେ ଶାନ୍ତି ପ୍ରତିଷ୍ଠିତ ହୁଏ । ଇନ୍ଦ୍ର, ଚନ୍ଦ୍ର, ବରୁଣ, କୁବେର ପ୍ରଭୃତି ତ୍ରେତିଶକୋଟି ଦେବଗଣ ଏବଂ ମହର୍ଷିଗଣ ଦିବ୍ୟ କୁଙ୍କୁମ, ଗନ୍ଧ, ଧୂପ-ଦୀପ, ନୈବେଦ୍ୟାଦି ସହିତ ବିଧିପୂର୍ବକ ଦେବୀଙ୍କ ଅର୍ଚ୍ଚନା ନିମିତ୍ତ ସ୍ତୁତି କରନ୍ତି-

ଭଗବତ୍ୟା କୃତଂ ସର୍ବଂ<br>
ନ କିଂ ଚିଦ୍‌ବଶିଷ୍ୟତେ<br>
ଯଦୟଂ ନିହତଃ ଶତ୍ରୁ<br>
ରସ୍ମାଙ୍କ ମହିଷାସୁର ।<br>
ଯଦି ଚାପି କରୋ ଦେୟସ୍ତ୍ୱ-<br>
ୟାସ୍ମାଙ୍କ ମାହେଶ୍ୱରୀ<br>
ସଂସ୍କୃତା ସଂସ୍ମୃତା ତ୍ୱଂ<br>
ନୋ ହିଂସାଥାଃ ପରମାପଦଃ ।

ହେ ଦେବି ! ଦୁର୍ଦ୍ଦାନ୍ତ ମହିଷାସୁର ବଧ ଫଳରେ ମହାନ୍ କର୍ତ୍ତବ୍ୟ ସଂପାଦିତ ହୋଇପାରିଛି । ହେ ମାହେଶ୍ୱରି ! ଦୟା ପରବଶ ହୋଇ ତୁମେ ଯେବେ ବରଦାନ କରୁଛ, ଆମର ଏତିକି ପ୍ରାର୍ଥନା - ସ୍ମରଣ କାଳେ ଆବିର୍ଭାବ ଘଟୁ ଏବଂ ସମସ୍ତ ବିପତ୍ତିରୁ ତ୍ରାହି ମିଳୁ ।

ଦେବଗଣ ଦେବୀଙ୍କୁ ପୁନଶ୍ଚ ନିଜ ରୂପ ସଂପର୍କରେ ପ୍ରଶ୍ନ କରନ୍ତେ ଦେବୀ ସ୍ୱୟଂ ଉତ୍ତର ଦିଅନ୍ତି - ମୁଁ ବ୍ରହ୍ମ । ମୋଠାରୁ ପ୍ରକୃତି ପୁରୁଷାତ୍ମକ ଜଗତର ସୃଷ୍ଟି । ସମସ୍ତ ଜୀବକୋଷର ପୁଞ୍ଜିଭୂତ କୋଷ । ପରମ ମନୀଷା ଏବଂ ସମସ୍ତଙ୍କର ପୂଜନୀୟ । ବିଶ୍ୱର ଶିଖର ଦେଶରୁ ପରମ ପିତାଙ୍କର ଅବତରଣ କେବଳ ମୋ ଦ୍ୱାରା ସମ୍ଭବ । ମୋ' ନିବାସ ଘନଜଳ ମଧ୍ୟରେ, ମହାସାଗରରେ ସେଇଠି ବିଦ୍ୟମାନ ହୋଇ ମୁଁ ସମଗ୍ର ବିଶ୍ୱରେ ପ୍ରାଣୀ ସୃଷ୍ଟିର ବିସ୍ତାର ଘଟାଏ । ନିଜ ଲଲାଟ ଦେଶରେ ଚିରନ୍ତନ ସ୍ୱର୍ଗ ସ୍ପର୍ଶକରି ପ୍ରଭଞ୍ଜନ ଭଳି ମୋ ନିଃଶ୍ୱାସ ପ୍ରଶ୍ୱାସରେ ଉଦ୍ଧାମତା ଏବଂ ସମ୍ପୂର୍ଣ୍ଣ ସୃଷ୍ଟିସତ୍ତା ସ୍ୱହସ୍ତରେ ନିୟନ୍ତ୍ରିତ । ବିରାଟ ବିଶ୍ୱ ତଥା ସ୍ୱର୍ଗଲୋକରେ ନିଜ ମହିମା ବଳରେ ମୁଁ ପ୍ରଚଣ୍ଡ ପ୍ରବଳ ଶକ୍ତିଶାଳିନୀ ।

ଅଙ୍ଗ, ବଙ୍ଗ, କଳିଙ୍ଗ ଏଇ ତିନି ପ୍ରାନ୍ତରେ ପରମ ନିଷ୍ଠାର ସହ ଦୁର୍ଗାପୂଜା ଶରତଋତୁରେ ମହାସମାରୋହରେ ପାଳିତ ହୁଏ । ଏହି ମହାନ୍ ଶାରଦୀୟ ପର୍ବ ଭାରତର ପୁରପଲ୍ଲୀରେ ଦଶହରା ପର୍ବ ରୂପେ ପାଳନ କରାଯାଏ । ଏହି ପର୍ବର ମୂଳ ଲକ୍ଷ୍ୟ ହେଉଚି ଦେବୀ ଉପାସନା । ଏହି ପବିତ୍ର ଦଶହରା ଦିବସରେ ରାମଚନ୍ଦ୍ର ମାତୃଶକ୍ତି ବନଦୁର୍ଗାଙ୍କୁ ସ୍ତୁତି କରି ରାବଣର ନିଧନ ଉଦ୍ଦେଶ୍ୟରେ ଲଙ୍କା ଅଭିମୁଖେ ବିଜୟ ଯାତ୍ରା କରିଥିବାରୁ ଏହି ତିଥିକୁ 'ବିଜୟା ଦଶମୀ' କୁହାଯାଏ । ପୁଣି ଏହି ଦିବସଙ୍କର ଅବ୍ୟବହିତ ପୂର୍ବରୁ ସିଂହବାହିନୀ ଆଦ୍ୟାଶକ୍ତି ଦୁର୍ଗା ଦୁର୍ଦ୍ଦମନୀୟ ମହିଷାସୁରକୁ ବଧ କରି ଦେବତାମାନଙ୍କର ମଙ୍ଗଳ ବିଧାନ କରିଥିଲେ । ଏହିଦିନ ଜଗତର ଦୁଃଖହରଣ ହୋଇଥିବାରୁ ଏହା 'ଦୁଃଖହାଦଶମୀ' ନାମରେ ଖ୍ୟାତି ଲାଭ କରିଅଛି ବୋଲି ଆଦିକବି ଶୂଦ୍ରମୁନି ସାରଳା ଦାସ 'ଚଣ୍ଡୀ ପୁରାଣ'ରେ ଲେଖିଛନ୍ତି -

> କୁରୁକ୍ଷେତ୍ର ଯୁଦ୍ଧ ଆରମ୍ଭର ପ୍ରାକ୍‌କାଳରେ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କୁ ବନଦୁର୍ଗାଙ୍କ ଆରାଧନା କରିବା ପାଇଁ ଉପଦେଶ ଦେଇଥିଲେ । ଇତିହାସ ପ୍ରସିଦ୍ଧ ଛତ୍ରପତି ଶିବାଜୀ ମଧ ମୋଗଲମାନଙ୍କ ସହ ଯୁଦ୍ଧ କରିବା ସମୟରେ ଦୁର୍ଗାଙ୍କ ଉପାସନା କରିଥିଲେ ।

'କନ୍ୟା ଶୁକ୍ଳାଷ୍ଟମୀ ଦିନ ହେଲା ମହାମାରୁ
ଅସୁର ଅସୁରୀ ନ ଉବୁରିଲେ ତହିଁରୁ ।
ନବମୀ ରାତ୍ରରେ ମହାମାରୁ ଯେ ହୋଇଲା
ତେଣୁ ମହାମାରୁ ନବମୀ ତା ନମ ହେଲା ।
କନ୍ୟାମାସ ଶୁକ୍ଳପକ୍ଷ ଦଶମୀର ଦିନ
ଗୁରୁବାର ଶ୍ରବଣା ନକ୍ଷତ୍ର ବିଦ୍ୟମାନ ।
ତୈତିଳ ନାମେ କରଣ ଯୋଗ ନାମେ ଧୃତି
ସର୍ବସିଦ୍ଧି ହୋଇଲା ସେ ଦଶମୀ ତିଥି ।
ସମସ୍ତ ଶୁଭ ମଙ୍ଗଳ ହେଲା ଉପୁତ୍ତି
ତେଣୁ ଦୁଃଖହା ଦଶମୀ ନାମେ ଭବେ ଖ୍ୟାତି ।

'ଦୁଃଖହାଦଶମୀ' ଦିନ ମହାଦଶାରୁ ଉଦ୍ଧାର ପାଇ ଦେବତାମାନେ ମହାଶକ୍ତି ବ୍ରହ୍ମମୟୀ ଦୁର୍ଗତିନାଶିନୀ ଦୁର୍ଗାପୂଜାର ପରମ୍ପରା ସୃଷ୍ଟି କରିଥିଲେ । ଏହି ପର୍ବର ମହତ୍ତ୍ୱ ବିଷୟରେ 'ଦେବୀ ପୁରାଣ'ରେ କୁହାଯାଇଛି ଯେ ଏହା ଏକ ମହାନ୍ ପବିତ୍ର ବ୍ରତ ଏବଂ ଏହି ବ୍ରତ ପାଳନ କଲେ ସିଦ୍ଧି ଲାଭ ହୁଏ ଓ ଶତ୍ରୁମାନେ ପରାଜିତ ହୁଅନ୍ତି । କୁରୁକ୍ଷେତ୍ର ଯୁଦ୍ଧ ଆରମ୍ଭର ପ୍ରାକ୍‌କାଳରେ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କୁ ବନଦୁର୍ଗାଙ୍କ ଆରାଧନା କରିବା ପାଇଁ ଉପଦେଶ ଦେଇଥିଲେ । ଇତିହାସ ପ୍ରସିଦ୍ଧ ଛତ୍ରପତି ଶିବାଜୀ ମଧ ମୋଗଲମାନଙ୍କ ସହ ଯୁଦ୍ଧ କରିବା ସମୟରେ ଦୁର୍ଗାଙ୍କ ଉପାସନା କରିଥିଲେ ।

ଯୁଗ ଚେତନାର ପରିବର୍ତ୍ତନ ସଂଗେସଂଗେ ମାତୃପୂଜା ଆଜି ଜଣକର ନ ହୋଇ ହୋଇପାରିଛି ସାର୍ବଜନୀନ । ତେଣୁ ମା' ଦୁର୍ଗାଙ୍କର ପୂଜା କେବଳ କର୍ମକାଣ୍ଡର ପ୍ରତୀକ ନହୋଇ ଭାରତୀୟ ଜୀବନର ଏକ ବିଶିଷ୍ଟ ଅଙ୍ଗରୂପେ ଦେଖା ଦେଇଛି । ଉପସଂହାରରେ ଏତିକି କୁହାଯାଇପାରେ ଯେ ପରମ ଈଶ୍ୱରୀ ଦେବୀ ମାତା ଦୁର୍ଗା ବିଶ୍ୱର ସକଳ ବସ୍ତୁରେ ପରିବ୍ୟାପ୍ତା । ସେ ମହାବିଦ୍ୟା, ମହାମାୟା ମହାଯୋଗେଶ୍ୱରୀ । ତାଙ୍କର 'କ୍ଷର' ବା ଶେଷ ନ ଥିବାରୁ ସେ 'ଅକ୍ଷରା' ।

**ସହାୟକ ଗ୍ରନ୍ଥସୂଚୀ**


୧. ପଣ୍ଡା, ଦୁର୍ଗାଚରଣ - ଭାରତୀୟ ସଂସ୍କୃତି ଓ ମୂର୍ତ୍ତିକଳାରେ ହିନ୍ଦୁ ଦେବଦେବୀ, ପୃ.୧୪୯-୫୨

୨. ମିଶ୍ର, କୁମୁଦିନୀ - ଦେବୀ ଉପାସନା ଓ ଦଶହରା : ଓଡ଼ିଶାର ପର୍ବପର୍ବାଣି ଓଷାବ୍ରତ ଯାନିଯାତ୍ରା, କଟକ, ଓଡ଼ିଶା ବୁକ୍ ଷ୍ଟୋର୍, ୧୯୯୪, ପୃ.୧୪୧-୪୩

୩. ରାୟ, ରାହାସ - ଦୁର୍ଗାପୂଜା : ଓଡ଼ିଶାର ପର୍ବପର୍ବାଣି ଓଷାବ୍ରତ ଯାନିଯାତ୍ରା, କଟକ, ଓଡ଼ିଶା ବୁକ୍ ଷ୍ଟୋର୍, ୧୯୯୪, ପୃ.୧୩୦-୩୬



ଅବସରପ୍ରାପ୍ତ ଅଧ୍ୟାପକ
ଚାନ୍ଦବାଲି କଲେଜ
ଜି: ଭଦ୍ରକ-୭୫୬୧୩୩


▬▬▬▬▬

# ଦୁର୍ଗା ପ୍ରତିମାର ବିଶ୍ୱଭ୍ରମଣ

ଡଃ କୃଷ୍ଣଚନ୍ଦ୍ର ଭୂୟାଁ

**ଗୋ**ବିନ୍ଦପୁର, କଲକାତା ଓ ସୂତାନୁଟି - ଏହି ତିନୋଟି ଗ୍ରାମକୁ ନେଇ ଆଧୁନିକ କଲକାତା ସହର ତିଆରି ହୋଇଛି । ସୂତାନୁଟି ଅନ୍ତର୍ଗତ କୁମୋରଟୁଲି ଏବେ ବାଗ ବଜାର ଅନ୍ତର୍ଗତ ଏକ ସ୍ଥାନ । ଗଙ୍ଗାନଦୀ କୂଳରେ ଅବସ୍ଥିତ ଏହି କୁମୋରଟୁଲିରେ ଶହ ଶହ ବର୍ଷ ଧରି ପାଲ ପଦବୀଧାରୀ କୁମ୍ଭକାର ସଂପ୍ରଦାୟର ଲୋକ ବାସ କରି ଆସୁଛନ୍ତି । ଅତୀତରେ ଭାରତ ମହାସାଗର ଅନ୍ତର୍ଗତ ଦ୍ୱୀପପୁଞ୍ଜଗୁଡ଼ିକ ସହିତ ପାଲମାନଙ୍କର ନୌବାଣିଜ୍ୟ ଚଳୁଥିଲା । ନୌବାଣିଜ୍ୟର ଅବସାନ ହେବା ପରେ ହାଣ୍ଡି, କଳସି, କୁଣ୍ଡ ପ୍ରଭୃତି ଗୃହୋପକରଣ ବସ୍ତୁ ତିଆରି କରିବା ସଂଗେସଂଗେ ସେମାନେ ମୂର୍ତ୍ତିଶିଳ୍ପକୁ କୌଳିକ ବୃତ୍ତି ହିସାବରେ ଗ୍ରହଣ କରିଥିଲେ । ଅତୀତରେ କୁମୋରଟୁଲି, ସପ୍ତଗ୍ରାମ ଓ କୃଷ୍ଣନଗରର ଶିଳ୍ପୀମାନଙ୍କର ମୂର୍ତ୍ତି ନିର୍ମାଣରେ ସୁଖ୍ୟାତି ଥିଲା । କୁମୋରଟୁଲି ଓ କୃଷ୍ଣନଗରର ସେହି ସୁଖ୍ୟାତି ଏବେବି ଅଛି । ସପ୍ତଗ୍ରାମ ଏବେ ମାନଚିତ୍ରରେ ଚିହ୍ନିତ ଏକ ସ୍ଥାନ ମାତ୍ର । ମୂର୍ତ୍ତି ନିର୍ମାଣ କ୍ଷେତ୍ରରେ କୃଷ୍ଣ ନଗର, ବିଶେଷ କରି କୁମୋରଟୁଲିର ଶିଳ୍ପୀମାନେ ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ପ୍ରତିଷ୍ଠା ଲାଭ କରିଛନ୍ତି । ଦେବଦେବୀଙ୍କ ପୂଜାପର୍ବ ସମୟରେ ସେମାନଙ୍କର କର୍ମମୁଖର ଜୀବନ ଲକ୍ଷଣୀୟ । ଦୁର୍ଗା, ଲକ୍ଷ୍ମୀ, ସରସ୍ୱତୀ, କାଳୀ, ଜଗଦ୍ଧାତ୍ରୀ, ଗଣେଶ, କାର୍ତ୍ତିକ, ଶିବ, ବିଶ୍ୱକର୍ମା, ଶନି ପ୍ରଭୃତି ଦେବଦେବୀଙ୍କ ମୂର୍ତ୍ତି ନିର୍ମାଣ ହେଉଛି ସେମାନଙ୍କର ବର୍ଷବ୍ୟାପି ଶିଳ୍ପକର୍ମ । ମୁଖ୍ୟତଃ ଏହି ମୂର୍ତ୍ତିଗୁଡ଼ିକ ମାଟିରେ ନିର୍ମିତ । କିନ୍ତୁ ମହାପୁରୁଷମାନଙ୍କର ଯେଉଁ ମୂର୍ତ୍ତି ସେମାନେ ନିର୍ମାଣ କରନ୍ତି ତାହା ପଥର, ମାର୍ବଲ, ଫାଇବର୍, ବ୍ରୋଞ୍ଜ ଓ ସିମେଣ୍ଟରେ ନିର୍ମିତ ।



୧୯୨୪ ମସିହାର କଥା । ଲଣ୍ଡନର ଓ୍ୱେମ୍ବଲି ପାର୍କରେ ହେଉଥାଏ ପ୍ରକାଣ୍ଡ ପ୍ରଦର୍ଶନୀ । ଇଂରେଜ ସାମ୍ରାଜ୍ୟ ଅନ୍ତର୍ଗତ ଦେଶଗୁଡ଼ିକର ଶିଳ୍ପୀମାନେ ଯୋଗ ଦେଇଥିଲେ ସେହି ପ୍ରଦର୍ଶନୀରେ । ଭାରତବର୍ଷରୁ ଯୋଗ ଦେଇଥାଆନ୍ତି ଜଣେ ୨୯ ବର୍ଷ ବୟସର ଶିଳ୍ପୀ । ମଣ୍ଡପରେ ବସି ସେ କଞ୍ଚାମାଟିରେ ମୂର୍ତ୍ତି ଗଢୁଛନ୍ତି, ପୁଣି ଭାଙ୍ଗି ଦେଉଛନ୍ତି । ପାଖରେ ଛୋଟ ଛୋଟ ମାଟି ତିଆରି ମୂର୍ତ୍ତିଗୁଡ଼ିକୁ ଦର୍ଶକମାନେ ଦେଖୁଥାଆନ୍ତି । ଏହି ସମୟରେ ରାଣୀ ଭିକ୍ଟୋରିଆଙ୍କ ପୁଅ ଡିଉକ ଅଫ୍ କନଟ ଓ ତାଙ୍କ ଭଉଣୀ ଆସି ପହଞ୍ଚିଲେ ଭାରତୀୟ ଶିଳ୍ପୀଙ୍କ ନିକଟରେ । ଦୁହେଁ ମନ୍ତ୍ରମୁଗ୍ଧ ହୋଇ ଦେଖୁଥିଲେ ଶିଳ୍ପୀଙ୍କ କଳାକୃତି । ମାତ୍ର କେଇ ମିନିଟ୍ ମଧ୍ୟରେ ଶିଳ୍ପୀ ତାଙ୍କ କାମ ଶେଷ କରି ଦେଇଥିଲେ । ସେ ଧରିଥିବା ମାଟି ଟେଳାଟିକୁ ଡିଉକ ଅଫ କନଟରେ ରୂପାନ୍ତରିତ କରି ଦେଇଥିଲେ । ବିସ୍ମିତ ଡିଉକ ହାତତାଳି ଦେଇ ଅଭିନନ୍ଦନ ଜଣାଇଲେ ଶିଳ୍ପୀଙ୍କୁ । ସଙ୍ଗେ ସଙ୍ଗେ ଭଉଣୀ ପାଟ୍ରିସିରାମସେ ସେଠି ଥିବା ମୂର୍ତ୍ତିଗୁଡ଼ିକୁ ଓ ଭାଇଙ୍କ ପ୍ରତିମୂର୍ତ୍ତିକୁ କିଣି ନେଇଥିଲେ । ଏହି ଦୃଶ୍ୟ ସେଠି ଦେଖୁଥିଲେ ଅଗଣିତ ଦର୍ଶକ । ଏହି ଘଟଣା ଆଲୋଡ଼ନ ସୃଷ୍ଟି କରିଥିଲା ଲଣ୍ଡନ ସହରରେ । ପରଦିନ ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିଲା ସେହି ସମ୍ବାଦ । ସାରା ବିଶ୍ୱ ଜାଣିପାରିଲା କୁମୋରଟୁଲିର ଶିଳ୍ପୀଙ୍କୁ ।

ସେହି ଘଟଣାର ପଛରେ ଥିଲେ ବଙ୍ଗଳାର ପୂର୍ବତନ ଗଭର୍ଣ୍ଣର କାରମାଇକେଲ । ୧୯୧୫ରେ ବଙ୍ଗଳାର ଛୋଟ ଲାଟ ଥିବାବେଳେ କୃଷ୍ଣନଗର ଯାଇଥିଲେ ସେ ସସ୍ତ୍ରୀକ । ଖ୍ୟାତନାମା ଶିଳ୍ପୀ ଯଦୁନାଥ ପାଲଙ୍କ ଶିଳ୍ପକର୍ମ ଦେଖିବାକୁ ସେ ପହଞ୍ଚିଗଲେ ।

ସେଠାରେ କର୍ମରତ ଜଣେ ଯୁବକ କାରମାଇକେଲଙ୍କୁ ଦେଖି ସଂଗେସଂଗେ ତାଙ୍କର ମୁଖାବୟବ ତିଆରି କରିଦେଲେ । ଏହି ଯୁବଶିଳ୍ପୀ ଥିଲେ ଗୋପେଶ୍ୱର ପାଲ । ସ୍ୱଦେଶକୁ ଫେରିଯିବା ପରେ ବି କାରମାଇକେଲ ତାଙ୍କୁ ମନେ ରଖିଥିଲେ । ତାଙ୍କରି ପାଇଁ ଗୋପେଶ୍ୱର ଯାଇଥିଲେ ଲଣ୍ଡନ ପ୍ରଦର୍ଶନୀରେ ଅଂଶ ନେବାକୁ । ସେତେବେଳକୁ ସେ କୃଷ୍ଣନଗର ଛାଡ଼ି କଲକାତାର କୁମୋରଟୁଲିରେ ଆସ୍ଥାନ ଜମେଇ ଦେଇଥିଲେ । ଗୋପେଶ୍ୱର ସର୍ବପ୍ରଥମେ ପ୍ରତିମାର ଭଙ୍ଗା ଗଢ଼ା କାମଟି ଆରମ୍ଭ କରିଥିଲେ । ମଣ୍ଡପରେ ସଂଯୁକ୍ତ ପ୍ରତିମାଗୁଡ଼ିକୁ ସେ ଅଲଗା କରି ଦେବା ସଂଗେସଂଗେ ପ୍ରତିମାଗୁଡ଼ିକର ପଶ୍ଚାତ୍‌ପଟର ମଧ୍ୟ ନବୀକରଣ କରିଥିଲେ । ସେତେବେଳକୁ କୁମୋରଟୁଲିର ନିଜସ୍ୱ ଐତିହ୍ୟ ଯଥା- ରାମଚନ୍ଦ୍ରୀ, ଦଶାବତରୀ, ଇନ୍ଦ୍ରାଣୀ ଓ ବ୍ରହ୍ମାଣୀ ରୀତି ଅନେକାଂଶରେ ହଜି ଯାଇଥିଲା। ଚଳୁଥିଲା କୈଳାସି ରୀତି । କୈଳାସି ରୀତିର ବଙ୍ଗଳାରୀତି, ଖୋପରୀତି, ମାର୍କିନୀ ରୀତି ଓ ସର୍ବସୁନ୍ଦରୀ ରୀତିର ବେଶ୍ ପ୍ରଚଳନ ଥିଲା ।

ଶିଳ୍ପୀମାନେ ଖାଇବା ପିଇବା ଭୁଲି ପ୍ରତିମାଗୁଡ଼ିକର ପଶ୍ଚାତ୍‌ପଟର ଯେଉଁ ଦୃଶ୍ୟ ଅଙ୍କନ କରୁଥିଲେ ତାହା ଦର୍ଶକମାନେ ଦେଖି ବିମୋହିତ ହେଉଥିଲେ । ଚଣ୍ଡୀପୁରାଣ ବର୍ଣ୍ଣିତ ଘଟଣା ରେଖାଙ୍କିତ ହେଉଥିଲା । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଓ ଶୁମ୍ଭ ନିଶୁମ୍ଭ ବଧ ଇତ୍ୟାଦି ପଶ୍ଚାତ୍‌ପଟ୍ଟରେ ଅଙ୍କିତ ହେଉଥିଲା । ମଣ୍ଡପରେ ଦୁର୍ଗା ପ୍ରତିମାର ପ୍ରାଧାନ୍ୟ ପରିଲକ୍ଷିତ ହେଉଥିଲା । ଶିଳ୍ପୀର ଶିଳ୍ପକର୍ମର ଉତ୍କୃଷ୍ଟ ନିଦର୍ଶନ ଫୁଟି ଉଠୁଥିଲା ଦୁର୍ଗା ପ୍ରତିମାରେ । ପୂଜା ସମୟରେ ବିଭିନ୍ନ ରକମର ମାଟିପାତ୍ରର ପ୍ରୟୋଜନ ହେଉଥିଲା । ସେଗୁଡ଼ିକ ତିଆରି ହେଉଥିଲା କୁମୋରଟୁଲିରେ । ସେହି ମାଟି ପାତ୍ରଗୁଡ଼ିକ ପାଇଁ ଢାଙ୍କୁଣୀ ମଧ୍ୟ ତିଆରି ହେଉଥିଲା । ସେହି ଢାଙ୍କୁଣୀଗୁଡ଼ିକ ମଧ୍ୟ କାରୁକାର୍ଯ୍ୟମୟ ଥିଲା । ଉଲ୍ଲେଖ ଯୋଗ୍ୟ ଯେ କୁମ୍ଭକାରମାନଙ୍କୁ ଛାଡ଼ି ଦେଲେ ବ୍ରାହ୍ମଣ, ସୂତ୍ରଧର ଓ ପଟୁଆମାନେ ତାହା ତିଆରି କରୁଥିଲେ । ସେତେବେଳେ ଅର୍ଥାତ୍ ଦ୍ୱିତୀୟ ବିଶ୍ୱଯୁଦ୍ଧର ଆଗେ ଫରିଦପୁରୀ ସରା (ଢାଙ୍କୁଣୀ), ଢାକାଇସରା, ସୁରେଶ୍ୱରୀ, ଆଶ୍ଚର୍ଯ୍ୟସରା ଓ କୁମୋରଟୁଲି ସରାର ପ୍ରଚଳନ ଥିଲା । ଏବେ ତାହା ଲୁପ୍ତ ।

ଦଙ୍ଗା ଓ ଦେଶଭାଗ ଭଳି ଘଟଣା କୁମୋରଟୁଲିର କଳାକୃତିକୁ କେତୋକାଂଶରେ ଆକ୍ରାନ୍ତ କରିଥିଲା । ରାଜନୈତିକ ଅସ୍ଥିରତା କାରଣରୁ ପୂର୍ବବଙ୍ଗର ମୃତ ଶିଳ୍ପୀମାନେ ଭିଟାମାଟି ଛାଡ଼ି ଆଖିର ଲୁହ ପଦ୍ମାନଦୀର ପାଣିରେ ଧୋଇ ଆସି ପହଞ୍ଚିଥିଲେ କଲକାତାରେ, ବିଶେଷ କରି କୁମୋରଟୁଲିରେ ଓ ଆଖପାଖ ଅଞ୍ଚଳରେ । ପୂର୍ବରୁ ରହିଥିବା ଶତାଧିକ ଶିଳ୍ପୀ ପରିବାରଙ୍କ ଜୀବନ ଜୀବିକାରେ ସେମାନେ ଆସି ଅଂଶୀଦାର ହୋଇଗଲେ । ଯେଉଁ ଉଦ୍‌ବାସ୍ତୁ ଶିଳ୍ପୀମାନେ ଆସି ଅସ୍ଥାୟୀ ଶିବିରରେ ଆଶ୍ରୟ ନେଲେ ସେମାନଙ୍କ ମଧ୍ୟରେ ଧନଞ୍ଜୟ ରୁଦ୍ରପାଲ, ରାଖାଲ ପାଲ, ହରିବଲ୍ଲଭ ପାଲ, ଗୋବିନ୍ଦ ପାଲ, ନେପାଳ ପାଲ, ମୋହନ ବାଁଶି ପାଲ ଓରମେଶ ପାଲ ଥିଲେ ପ୍ରସିଦ୍ଧ ।

ସ୍ୱାଧୀନତା ପୂର୍ବରୁ କଲକାତା ଓ ରାଜ୍ୟର ଅନ୍ୟତ୍ର ସଂଭ୍ରାନ୍ତ ବଙ୍ଗୀୟ ପରିବାରରେ ଦୁର୍ଗାପୂଜା ଥିଲା ପ୍ରଚଳିତ । ସ୍ୱାଧୀନତା ପରେ ଏହା କ୍ରମଶଃ ହ୍ରାସ ପାଇବାକୁ ଲାଗିଲା । ପାରିବାରିକ ଦୁର୍ଗାପୂଜାରେ ଗ୍ରାମ୍ୟ ସଂସ୍କୃତିର ଚିହ୍ନ ଉଙ୍କି ମାରୁଥିଲା । ସ୍ୱାଧୀନତା ପରେ ସାର୍ବଜନୀନ ପୂଜା ମଧ୍ୟରେ ଆହିରୀ ଟୋଲା, ବି.କେ. ପାଲ ପାର୍କ, ବେନିୟାନଟୋଲା, କୁମୋରଟୁଲି, ବାଘବଜାର, ସିମଲା ପ୍ରଭୃତି ସ୍ଥାନର ଦୁର୍ଗାପୂଜାର ପୁରୁଣା । ଏହି ସାର୍ବଜନୀନ ପୂଜାର ସଂଖ୍ୟା ବର୍ଷକୁବର୍ଷ ବୃଦ୍ଧି ପାଉଛି । ଦୁର୍ଗାପୂଜା ସମୟରେ କଲକତା ସହର ଓ ସମଗ୍ର ରାଜ୍ୟର ଚେହେରା ଦେଖିଲେ ଯଥାର୍ଥରେ ମନେହୁଏ ଦୁର୍ଗାପୂଜା ହେଉଛି ବଙ୍ଗାଳୀ ଜାତିର ଏକ ଜାତୀୟ ପର୍ବ ।

ରମେଶ ପାଲ ଆର୍ଟ ସ୍କୁଲରେ ଶିକ୍ଷିତ । ସେ କୁମୋରଟୁଲି ରୀତି, ଅଜନ୍ତା ରୀତି ଓ ରବିବର୍ମାଙ୍କ ରୀତି ଅନୁସରଣ କରି ଏକ ନୂତନ ରୀତିରେ ପ୍ରତିମା ତିଆରି କରନ୍ତି । ଏହାଛଡ଼ା ସୁନୀଲ ପାଲ, ଆଶିଷ ପାଲ, ଅଲକସେନ ପ୍ରମୁଖ ଶିଳ୍ପୀମାନଙ୍କର ଶିଳ୍ପ ପରାକାଷ୍ଠା ବଙ୍ଗଳା ବାହାରେ ମଧ୍ୟ ପ୍ରସାରିତ । କୁମୋରଟୁଲିର ଶିଳ୍ପୀମାନେ ସର୍ବଦା ପ୍ରତିମା ନିର୍ମାଣ କ୍ଷେତ୍ରରେ ପରୀକ୍ଷା ନିରୀକ୍ଷା କରନ୍ତି । ରୁଚି ବଦଳୁଛି, ମନ ବଦଳୁଛି, ଦାବି ବଦଳୁଛି । ଶିଳ୍ପୀମାନେ ଏ ସବୁ ଲକ୍ଷ୍ୟ କରୁଛନ୍ତି ଓ ସେହି ଅନୁସାରେ ପ୍ରତିମା ନିର୍ମାଣ କରିବାକୁ ପ୍ରସ୍ତୁତ ହେଉଛନ୍ତି । ୧୯୫୦ ମସିହା ପୂର୍ବରୁ ଯେଉଁ ଦୁର୍ଗା ପ୍ରତିମା ସେମାନେ ତିଆରି କରୁଥିଲେ ତାହା ଥିଲା ମାତୃ ସ୍ୱରୂପିଣୀ । କିନ୍ତୁ ୧୯୫୦ ମସିହା ପରେ ରୁଚି ବଦଳିବାକୁ ଆରମ୍ଭ ହେଲା । ଦୁର୍ଗା ପ୍ରତିମା ହେଲା ଓ୍ୱାହିଦା ରହେମନ, ମୀନାକୁମାରୀ, ହେମାମାଳିନୀ ରୂପିଣୀ । ତାହାବି କ୍ରମେ ମ୍ଳାନ ପଡ଼ିଗଲା । ଏବେ ଲୋକ ଚାହୁଁଛନ୍ତି ଦୁର୍ଗା ହୁଅନ୍ତୁ ଆଧୁନିକା । ପ୍ରତିଯୁଗରେ ଏଭଳି ରୁଚିର ପରିବର୍ତ୍ତନ ହୁଏ ଏବଂ ହେବ । ଏଇ ପରିବର୍ତ୍ତନ ସହିତ ଶିଳ୍ପୀକୁ ଖାପଖୁଆଇ ଚଳିବାକୁ ହେବ । **ଏବେ କଲକାତା ସହରରେ କେବଳ ଏକ ହଜାର ଭଳି ଦୁର୍ଗାପୂଜା ହୁଏ ।** ସେଥିମଧ୍ୟରୁ କଲେଜସ୍କୋୟାର, ମହମ୍ମଦ ଅଲୀ ପାର୍କ, ସିଆଲଦହ,

ଢାକୁରିଆ, ବାଲିଗଞ୍ଜ, କାଳିଘାଟ, ଖିଦିରପୁର, ଏକଡାଲିଆ, ସନ୍ତୋଷ ମିତ୍ର ସ୍କୋୟାର ପ୍ରଭୃତି ସ୍ଥାନରେ ହେଉଥିବା ଦୁର୍ଗାପୂଜା ବିଭିନ୍ନ ଦୃଷ୍ଟିକୋଣରୁ ଆକର୍ଷଣୀୟ ।

ମାଟି ତିଆରି ଦୁର୍ଗାପ୍ରତିମା ସହିତ ଶୋଲା ତିଆରି ଦୁର୍ଗାପ୍ରତିମା ତାଳ ଦେଇ ଚାଲିଛି । ଶୋଲା ଶିଳ୍ପୀ ଗୋପାଳ ସରକାରଙ୍କ ଖ୍ୟାତି କହିଲେ ନସରେ । ତାଙ୍କର ଶୋଲାର ଦୁର୍ଗାପ୍ରତିମାର ସାନଫ୍ରାନ୍‌ସିସ୍‌କୋ, ଟୋକିଓ, ନ୍ୟୁୟର୍କ, ଟରେଣ୍ଟୋ, ଲଣ୍ଡନ ପ୍ରଭୃତି ସ୍ଥାନରେ ଚାହିଦା ବେଶି । ଶିଳ୍ପୀମାନଙ୍କର ଦୁଃଖ ଯେ ସେମାନଙ୍କର ଶିଳ୍ପକଳା କୌଶଳକୁ ଦେଶବିଦେଶରେ ଆଦର କରୁଥିଲେ ହେଁ ନିଜ ଅଞ୍ଚଳରେ ଲୋକେ ଆଦର କରୁନାହାନ୍ତି । ସେମାନଙ୍କର ବେଶୀ ଦୁଃଖ ହେଉଛି ଯେ ସେମାନଙ୍କ ସନ୍ତାନମାନେ ଏହି ଶିଳ୍ପ କଳାକୁ ଆଡ଼ଆଖିରେ ଚାହୁଁ ନାହାନ୍ତି । ସେମାନେ ରିକ୍ସା ଚଳାଇବାକୁ, ମୁଢ଼ି ତେଲଭଜା ବିକ୍ରି କରିବାକୁ ପସନ୍ଦ କରୁଛନ୍ତି, କିନ୍ତୁ ପ୍ରତିମା ତିଆରି କରିବାକୁ ଚାହୁଁ ନାହାନ୍ତି ।

ଅତୀତରେ ଆମେରିକାର 'ଫିନିକ୍ସ' ପତ୍ରିକାର ବିଖ୍ୟାତ ସାମ୍ବାଦିକ ଲିଉଇସ୍ ହେଇ ଆସିଥିଲେ କୁମୋରଟୁଲିର ଶିଳ୍ପକଳା ସଂପର୍କରେ ତଥ୍ୟ ସଂଗ୍ରହ କରିବାକୁ । ତାଙ୍କ ସାଙ୍ଗରେ ଥିଲେ ଚିତ୍ର ସାମ୍ବାଦିକ ଅର୍ନେଷ୍ଟ ଗୁଡ଼ଉଇନ । ତଥ୍ୟ ସଂଗ୍ରହ କରି ସେମାନେ ଯେଉଁ ଲେଖା ପ୍ରକାଶ କରିଥିଲେ ସେଥିରେ କୁମୋରଟୁଲିର ମୃତ୍ ଶିଳ୍ପୀମାନେ ଜୀବନଧାରଣ ପାଇଁ ଯେଉଁଭଳି ସଂଗ୍ରାମ କରୁଥିଲେ । ତାହା ଆଲୋକିତ ହୋଇଥିଲା । ଲିଭଇସ ଲେଖିଥିଲେ ସାଧାରରତଃ ଗୋଟିଏ ଦୁର୍ଗାପ୍ରତିମା ତିଆରି କରି ଶିଳ୍ପୀ ପଚାଶ ଟଙ୍କାରେ ବିକ୍ରି କରୁଥିଲା । ହିସାବ ଅନୁସାରେ ସେଥିରୁ ସେ ପନ୍ଦର ଟଙ୍କା ଲାଭ ପାଉଥିଲା । ଏହି ପନ୍ଦର ଟଙ୍କା ପାଇଁ ଶିଳ୍ପୀଙ୍କୁ ଚାଳିଶ ଘଣ୍ଟା ପରିଶ୍ରମ କରିବାକୁ ହେଉଥିଲା । ତାଙ୍କ ସହିତ ପୁଣି ତାଙ୍କର ପାଞ୍ଚ ବର୍ଷର ପୁଅ ଓ ସ୍ତ୍ରୀ ଶ୍ରମ ଦେଉଥିଲେ । ସେତେବେଳେ କୁମୋରଟୁଲିକୁ ବିଦ୍ୟୁତ୍ ଯାଇନଥିଲା । ରାତିରେ ମୁଣ୍ଡରେ କିରୋସିନି ତେଲର ଝୁମ୍ପିଟିକୁ ବାନ୍ଧି କାମ କରିବାକୁ ହେଉଥିଲା । ଲିଉଇସ ବିସ୍ମୟ ପ୍ରକାଶ କରିଥିଲେ ଏହି ରୋଜଗାରରେ ଶିଳ୍ପୀ କିପରି ଜୀବନ ଧାରଣ କରୁଛି ?

ଗବେଷକ ଅମୀୟ କୁମାର ବନ୍ଦ୍ୟୋପାଧ୍ୟାୟ ଊନବିଂଶ ଶତାବ୍ଦୀର ସ୍ୱନାମଧନ୍ୟ ଶିଳ୍ପୀ ତାରାପଦ ପାଲଙ୍କ ସଂପର୍କରେ ତଥ୍ୟ ସଂଗ୍ରହ କରିବାକୁ ଆସି ଦିନେ ପହଞ୍ଚିଥିଲେ କୁମୋରଟୁଲିରେ । ତାରାପଦ ଥିଲେ ଶୋଭାବଜାର ରାଜ ପରିବାରର ପ୍ରତିମା ଶିଳ୍ପୀ । ତାଙ୍କର ନାତି ବର୍ତ୍ତମାନ ଦିଲୀପ ପାଲ । ତାରାପଦ ଥିଲେ ଚୌରାଅଶି 'ଥାକ'ର କୁମ୍ଭକାର । ମଧ୍ୟଯୁଗ ଓ ଉତ୍ତର ମଧ୍ୟଯୁଗରେ ବଙ୍ଗପ୍ରଦେଶରେ ମନ୍ଦିର ନିର୍ମାଣ ଓ ଅଳଙ୍କରଣ ଶିଳ୍ପୀମାନେ ଗୋଷ୍ଠୀଗତ ଭାବେ ଗିଲ୍ଡ଼ ପ୍ରଥାରେ କାର୍ଯ୍ୟ କରୁଥିଲେ । ବିଭିନ୍ନ ଅଞ୍ଚଳରେ ଥିବା ଏହି ଗୋଷ୍ଠୀକୁ 'ଥାକ' କୁହାଯାଉଥିଲା । ଏହି 'ଥାକ' ହେଉଛି ବିଦ୍ୟାଳୟ । ଅତୀତରେ ବର୍ଦ୍ଧମାନ ଥାକ, ଅଷ୍ଟକୁଳ ଥାକ ପ୍ରଭୃତି ସ୍କୁଲ ଥିଲା । ମୃତ ଶିଳ୍ପ ଓ ଟେରାକୋଟା ମନ୍ଦିର ନିର୍ମାଣ ଶିଳ୍ପ କେତେ ଯେ ଉନ୍ନତ ଥିଲା ଏହି ସ୍କୁଲଗୁଡ଼ିକ ତାହା ପ୍ରମାଣ ଦିଏ । ଶିଳ୍ପୀ ନିରଞ୍ଜନ ପାଲଙ୍କଠାରୁ ଆରମ୍ଭ କରି ତାରାପଦ ପାଲଙ୍କ ନାତି ଦିଲୀପ ପାଲଙ୍କ ପର୍ଯ୍ୟନ୍ତ ଶିଳ୍ପୀମାନେ ଦୁଃଖର ସହିତ କୁହନ୍ତି, ସେମାନେ ଯେଉଁ ଦୁର୍ଗା ପ୍ରତିମା ନିର୍ମାଣ କରନ୍ତି ପରିଶ୍ରମ ଅନୁସାରେ କିମ୍ବା ଉତ୍କୃଷ୍ଟ କଳାର ନିଦର୍ଶନ ଅନୁସାରେ ଯେଉଁ ଅର୍ଥ ରୋଜଗାର କରିବା କଥା ତାହା ରୋଜଗାର କରନ୍ତି ନାହିଁ । କିନ୍ତୁ 'ଭାରତ ବାହାରେ ବିଭିନ୍ନ ଦେଶରେ ଯେଉଁଠି ହିନ୍ଦୁମାନେ ବିଶେଷ କରି ବଙ୍ଗାଳୀମାନେ ଦୁର୍ଗାପୂଜା କରନ୍ତି ସେଠି ଆମ ପ୍ରତିମାର ଚାହିଦା ଅନେକଗୁଣ ବେଶି । ଏହାଦ୍ୱାରା ଆନ୍ତର୍ଜାତିକ ସ୍ତରରେ ଆମକୁ ଖ୍ୟାତି, ଯଶ ଯେମିତି ମିଳେ ସେମିତି ଅର୍ଥ ମଧ୍ୟ ମିଳେ ।'

ଓ-୧୨, କ୍ଲଷ୍ଟର-୩
ପୂର୍ବାଞ୍ଚଳ, ସଲ୍ଟଲେକ, କଲକାତା-୭୦୦୦୯୭





# ଦେବୀପୂଜାର ଆଧ୍ୟାତ୍ମିକ ମୂଲ୍ୟାୟନ

ପୂର୍ଣ୍ଣେନ୍ଦୁ କୁମାର ନନ୍ଦ

**ଶ୍ରୀ**ଚଣ୍ଡୀରେ ମାତୃରୂପିଣୀ ଦେବୀ ଶକ୍ତିଙ୍କର ମହିମା ବର୍ଣ୍ଣନା କରାଯାଇଛି । ମାତୃଶକ୍ତିଙ୍କୁ ଲକ୍ଷ୍ୟ କରି ଏଥିରେ କୁହାଯାଇଛି - 'ହେ ନିତ୍ୟେ, ହେ ଅକ୍ଷରେ, ଆପଣ ସ୍ୱାହା, ଆପଣ ସ୍ୱଧା, ଆପଣ ହିଁ ବଷଟ୍‌କାର ଓ ସ୍ୱର ସ୍ୱରୂପିଣୀ । ଆପଣ ଅମୃତ ରୂପା ଓ ତ୍ରିବିଧ ମାତ୍ରା ରୂପେ ଅବସ୍ଥିତା । ଅର୍ଥାତ୍ ଆପଣ ଓ ପ୍ରଣବ ବ୍ରହ୍ମ ଅଭିନ୍ନା ।' ବାସ୍ତବରେ ମନ୍ତ୍ର ଚୈତନ୍ୟ ଲାଭ ହେଲେ ମନ୍ତ୍ର ଓ ମନ୍ତ୍ର ପ୍ରତିପାଦ୍ୟ ଦେବତାଙ୍କ ଅଭିନ୍ନତାକୁ ଅନୁଭବ କରିହୁଏ । ଜପ କରିବା ଫଳରେ ମନ୍ତ୍ର ଚୈତନ୍ୟ ଲାଭ ହୁଏ ।

କାଳିକାଙ୍କର ବୀଜମନ୍ତ୍ର ଉଚ୍ଚାରଣ କଲେ ଯଦି ନୃମୁଣ୍ଡମାଳିନୀ, ବରାଭୟକରା ଦେବୀଙ୍କ ପ୍ରକାଶ ହୁଏ ତେବେ ଏହି ବୀଜମନ୍ତ୍ରର ଚୈତନ୍ୟ ହୋଇଛି ବୋଲି ଜଣାଯାଏ ।

ମନ୍ତ୍ରାକ୍ଷରର ଗୋଟିଏ ନିଜସ୍ୱ ଶକ୍ତି ରହିଛି । ସେହି ଶକ୍ତିବଳରେ ମନ୍ତ୍ରଟି କାର୍ଯ୍ୟ କରିଥାଏ । ଇଷ୍ଟଲାଭ ପାଇଁ ବ୍ୟାକୁଳତାର ସହ ମନପ୍ରାଣ ଦେଇ ମନ୍ତ୍ର ଉଚ୍ଚାରଣ କଲେ ମନ୍ତ୍ର ଚୈତନ୍ୟମୟ ହୋଇ ଉଜ୍ଜ୍ୱଳ ହୋଇଉଠେ । ଏହା ହିଁ ମନ୍ତ୍ରର ଆଧ୍ୟାତ୍ମିକ ଦିଗ ଅଟେ । ମନ୍ତ୍ରଶକ୍ତିକୁ ହୃଦୟରେ ଜପ କଲେ, ଭକ୍ତି ଜାଗ୍ରତ ହୁଏ । ଭକ୍ତି ହିଁ ଶକ୍ତିକୁ ଉଦ୍‌ବୁଦ୍ଧ କରେ ।

ଏହି ପରିପ୍ରେକ୍ଷୀରେ ମେଧସ୍ ଋଷି ମାତୃଦର୍ଶନ ଲାଭ ଉଦ୍ଦେଶ୍ୟରେ ରାଜା ସୁରଥ ଓ ସମାଧି ବୈଶ୍ୟଙ୍କୁ ମାତୃପୂଜା କରିବାକୁ କହିଥିଲେ । ଏଥିପାଇଁ ଶ୍ରୀଚଣ୍ଡୀରେ କୁହାଯାଇଛି-

''ତାମୁପେହି ମହାରାଜ ! ଶରଣଂ ପରମେଶ୍ୱରୀମ୍
ଆରାଧିତା ସୈବ ନୃଣାଂ ଭୋଗ ସ୍ୱର୍ଗାପବର୍ଗଦା ।'

ଋଷିଙ୍କ ଆଦେଶରେ ରାଜା ସୁରଥ ଓ ସମାଧି ପୂଜା କରି ମହାଶକ୍ତିଙ୍କର ସାକ୍ଷାତ୍‌କାର ଲାଭ କରିଥିଲେ । ସେମାନେ ଯେଉଁ ପୂଜା କରିଥିଲେ, ତାହା ତନ୍ତ୍ରୋକ୍ତ ପୂଜାର ବିଶିଷ୍ଟ ରୂପ । ଶ୍ରୀଚଣ୍ଡୀରେ ସେମାନଙ୍କର ପୂଜା ବିଷୟରେ ସୂଚନା ଦେଇ କୁହାଯାଇଛି -

'ସନ୍ଦର୍ଶନାର୍ଥମମ୍ବାୟା ନଦୀ ପୁଳିନଃ ସଂସ୍ଥିତଃ
ସଚ ବୈଶ୍ୟ ସ୍ତପସ୍ତେପେ ଦେବୀ ସୂକ୍ତଂ ପରଂଜପନ୍ ।
ତୌ ତସ୍ମିନ୍ ପୁଳିନେ ଦେବ୍ୟାଃ କୃତ୍ୱାମୂର୍ତିଂ ମହୀମୟୀଂ
ଅର୍ହଣାଞ୍ଚକ୍ରତୁ ସ୍ତସ୍ୟାଃ ପୁଷ୍ପ ଧୂପାଗ୍ନି ତର୍ପଣୈ ।
ନିରାହାରୌ ଯତାହାରୌ ତନ୍ମନସ୍କୌ ସମାହିତୌ
ଦଦତୁ ସ୍ତୌ ବଳିଞ୍ଚୈବ ନିଜ ଗାତ୍ରା ସୃଗୁକ୍ଷିତଂ ।
ଏବଂ ସମାରାଧୟତୋ ସ୍ତ୍ରିଭି ବର୍ଷୈର୍ଯତାତ୍ମନୋଃ
ପରିତୁଷ୍ଟା ଜଗଦ୍ଧାତ୍ରୀ ପ୍ରତ୍ୟକ୍ଷଂ ପ୍ରାହ ଚଣ୍ଡିକା ।'

ଅର୍ଥାତ୍- ରାଜା ସୁରଥ ଓ ସମାଧି ବୈଶ୍ୟ ତପସ୍ୟା ନିମିତ୍ତ ଗମନ କଲେ ଓ ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ନଦୀ ତୀରରେ ରହିଲେ । ସେ ଦୁହେଁ ନଦୀ ତୀରରେ ଅବସ୍ଥାନପୂର୍ବକ ଭଗବତୀଙ୍କର ମୃଣ୍ମୟୀ ମୂର୍ତ୍ତି ସ୍ଥାପନ କରି ଦେବୀସୂକ୍ତ ଜପ କଲେ ଓ ଦେବୀ ମାହାତ୍ମ୍ୟ ପାଠ କରି ତପସ୍ୟା କଲେ । ସେମାନେ କେତେବେଳେ ନିରାହାର, କେତେବେଳେ ବା ପରିମିତ ଆହାର କରି ସମାଧିସ୍ଥ ହୋଇ ମନୋନିବେଶ ପୂର୍ବକ ପୁଷ୍ପଧୂପ ହୋମାଦି ଦ୍ୱାରା ପୂଜା କଲେ । ନିଜ ନିଜ ଦେହରୁ ରକ୍ତ ବାହାର କରି ବଳି ସ୍ୱରୂପ ଦେଉଥିଲେ । ଏହିପରି ସଂଯତ ଭାବରେ ତିନିବର୍ଷ ତପସ୍ୟା କଲାପରେ ଜଗଦ୍‌ଧାତ୍ରୀ ସନ୍ତୁଷ୍ଟା ହୋଇ ଚଣ୍ଡିକା ରୂପରେ ସେମାନଙ୍କୁ ପ୍ରତ୍ୟକ୍ଷ ଦର୍ଶନ ଦେଇଥିଲେ । ବରଦାନର ଅଭୟ ଦେଇ ଦେବୀ ସେମାନଙ୍କୁ କହିଥିଲେ -

'ଯତ୍ ପ୍ରାର୍ଥ୍ୟତେ ତ୍ୱୟା ଭୁପ ତ୍ୱୟା ଚ କୁଳନନ୍ଦନ
ମତ୍ତସ୍ତତ୍ ପ୍ରାପ୍ୟତାଂ ସର୍ବଂ ପରିତୁଷ୍ଟା ଦଦାମି ତତ୍ ।'

ରାଜା ସୁରଥ ଭଗବତୀଙ୍କଠାରୁ ବର ମାଗିଥିଲେ ଯେ ସେ ବଳବିକ୍ରମରେ ଶତ୍ରୁଦଳ ନିଧନ ପୂର୍ବକ ନିଜ ରାଜ୍ୟ ପ୍ରାପ୍ତ ହେବେ । ତାହା ସେହି ଜନ୍ମରେ ହିଁ ପ୍ରାପ୍ତ ହେବାକୁ ଇଚ୍ଛା କରିଥିଲେ । ସମାଧି ବୈଶ୍ୟ ଦେବୀଙ୍କ ନିକଟରେ ପ୍ରାର୍ଥନା କରିଥିଲେ ଯେ ଏହି ବିଷୟ ଆମ୍ଭର, ଏହି ଦେହ ଆମ୍ଭର ଇତ୍ୟାଦି ଅଭିମାନଶୂନ୍ୟ ମୋକ୍ଷ

ସାଧନ ଜ୍ଞାନ କେବଳ ତାଙ୍କୁ ଲାଭ ହେଉ । ଉଭୟଙ୍କୁ ଭଗବତୀ ଇପ୍‌ସୀତ ବର ପ୍ରଦାନ କରିଥିଲେ ଓ ଭଗବତୀଙ୍କ ନିର୍ଦ୍ଦେଶ ପ୍ରକାରେ ସୁରଥ ପରଜନ୍ମରେ ସୂର୍ଯ୍ୟବଂଶରେ ସାବର୍ଣ୍ଣିମନୁ ନାମରେ ଜନ୍ମ ନେଇଥିଲେ । ଗବେଷକମାନଙ୍କ ମତରେ ସୁରଥ ଓ ସମାଧି ଚୈତ୍ର ମାସ ନବମୀ ତିଥିରେ ଦେବୀ ପୂଜା ଆରମ୍ଭ କରିଥିଲେ ମଧ ତିନିବର୍ଷ ପୂଜା କରିଥିବାରୁ ସେମାନେ ଶରତଋତୁରେ ମଧ ଦେବୀଙ୍କୁ ପୂଜା କରିଥିଲେ ।

ଶ୍ରୀଚଣ୍ଡୀ ଗ୍ରନ୍ଥରୁ କିନ୍ତୁ ଜଣାଯାଏ ଯେ ଦେବତାମାନେ ନାରାୟଣୀ ସ୍ତୁତରେ ଦେବୀଙ୍କୁ ପ୍ରାର୍ଥନା କଲାପରେ ଦେବୀ ସେମାନଙ୍କୁ ଅଭୟ ପ୍ରଦାନ କରି କହିଥିଲେ, 'ତୁମ୍ଭେମାନେ ଯେଉଁ ସ୍ତବ କଲ, ମାନବଗଣ ମଧରେ ଯେଉଁ ବ୍ୟକ୍ତି ଏକାଗ୍ର ଚିତ୍ତରେ ଆତ୍ମ ଉଦ୍ଦେଶ୍ୟରେ ଏହା ପାଠ କରିବ, ଆମ୍ଭେ ତାହାର ସକଳ ବିପଦ ଧ୍ୱଂସ କରିବୁ, ଏଥିରେ ସନ୍ଦେହ ନାହିଁ ।' ଯଥା-

'ଏଭିସ୍ତବୈଶ୍ଚ ମାଂ ନିତ୍ୟଂ ସ୍ତୋଷ୍ୟତେ ଯଃ ସମାହିତଃ
ତସ୍ୟାହଂ ସକଳାଂ ବାଧାଂ ଶମୟିଷ୍ୟାମ୍ୟ ସଂଶୟଂ ।'

ପୁନଶ୍ଚ ଦେବୀ କହିଥିଲେ- 'ମଧୁକୈଟଭ ନାଶ କାଳରେ ଓ ମହିଷାସୁର ବଧ କାଳରେ ଏବଂ ଶୁମ୍ଭ ନିଶୁମ୍ଭ ନିଧନ ସମୟରେ ଆମ୍ଭର ଯେଉଁ ଚରିତ୍ର ତାହା ଯେ ପାଠ କରିବ ତଥା ଅଷ୍ଟମୀ, ନବମୀ ଓ ଚତୁର୍ଦ୍ଦଶୀରେ ଯେ ଭକ୍ତିପୂର୍ବକ ଏକାନ୍ତଃକରଣରେ ଆମ୍ଭର ମାହାତ୍ମ୍ୟ ଶ୍ରବଣ କରିବ, କେତେବେଳେ ସେମାନଙ୍କର ପାପ ଅଥବା ପାପଜନିତ ଉତ୍ପାତ ଘଟିବ ନାହିଁ ଏବଂ ନିର୍ଦ୍ଧନ ବା ମିତ୍ର ବିୟୋଗ ହେବ ନାହିଁ । ସେମାନଙ୍କର କେବେ ହେଁ ଶତ୍ରୁଭୟ, ଦସ୍ୟୁଭୟ, ରାଜଭୟ, ଶସ୍ତ୍ରଭୟ, ଜଳଭୟ ଓ ପାପଭୟ ହେବ ନାହିଁ ।' ଦେବୀ ପୁନର୍ବାର ଅଭୟ ଦେଇ କହିଥିଲେ - 'ମହାମାରୀ ସମୁତ୍ପନ୍ନ ଯେଉଁ ସକଳ ଉପସର୍ଗ ଓ ପୃଥିବୀ ସମ୍ବନ୍ଧୀୟ ଭୂମିକମ୍ପ ଆଦି, ଆକାଶ ସମ୍ବନ୍ଧୀୟ ଉଲ୍‌କାପାତ, ଦୈବ ସଂପର୍କୀୟ ଗ୍ରହ ବିପ୍ରାତ ଏହି ତ୍ରିବିଧ ଉତ୍ପାତ ଆମ୍ଭର ମାହାତ୍ମ୍ୟ ପାଠ ବା ଶ୍ରବଣରେ ବିନିଷ୍ଟ ହେବ । ଯେଉଁ ଗୃହରେ ଆମ୍ଭର ମାହାତ୍ମ୍ୟ ଯଥାବିଧିରେ ପାଠ କରାଯିବ, ସେହି ସ୍ଥାନରେ ଆମ୍ଭେ ନିରନ୍ତର ଅବସ୍ଥାନ କରିବୁଁ । ଏହି 'ଶ୍ରୀଚଣ୍ଡୀ' ଗ୍ରନ୍ଥରେ ଦେବୀ ସ୍ୱୟଂ କହିଛନ୍ତି, 'ପ୍ରତିବର୍ଷ ଶରତକାଳରେ ମହାପୂଜା ଅର୍ଥାତ୍ ଦୁର୍ଗୋତ୍ସବ କାଳରେ ଯେଉଁ ବ୍ୟକ୍ତି ଭକ୍ତିକରି ଆମ୍ଭର ଏହି ମାହାତ୍ମ୍ୟ ଶ୍ରବଣ କରିବ, ସେହି ବ୍ୟକ୍ତି ସମସ୍ତ ପାପରୁ ମୁକ୍ତ ହୋଇ ଆମ୍ଭର କୃପାରେ ଧନଧାନ୍ୟ ସନ୍ତାନଯୁକ୍ତ ହେବ, ଏଥିରେ ସନ୍ଦେହ ନାହିଁ ।' ଯଥା-

ଶରତ୍ କାଳେ ମହାପୂଜା କ୍ରିୟତେ ଯାଚ ବାର୍ଷିକୀ
ତସ୍ୟାଂ ମମୈତନ୍ମାହାତ୍ମ୍ୟଂ ଶ୍ରୁତ୍ୱା ଭକ୍ତି ସମନ୍ୱିତଃ ।

ଏହି ଗ୍ରନ୍ଥରେ ପୁନର୍ବାର କୁହାଯାଇଛି ଯେ ଦେବୀଙ୍କର ଏହି ମାହାତ୍ମ୍ୟ ଯେ ଶ୍ରବଣ କରିବ, ତାହାର ସମସ୍ତ ରିପୁ ସମ୍ପୂର୍ଣ୍ଣ ଭାବରେ କ୍ଷୟ ହେବ ଏବଂ ତାହାର ବଂଶର ଉନ୍ନତି ସହ ସମସ୍ତ ମଙ୍ଗଳ ଲାଭ ହେବ । ବ୍ରହ୍ମା ଯେଉଁ ସ୍ତୁତିରେ ଦେବୀଙ୍କୁ ପ୍ରାର୍ଥନା କରିଥିଲେ, ତାହା ମଙ୍ଗଳମୟ ବୁଦ୍ଧି ପ୍ରଦାନ କରିବ । ଅରଣ୍ୟରେ, ପ୍ରାନ୍ତରେ କିମ୍ବା ଦାବାଗ୍ନି ପରିବେଷ୍ଟନରେ, ଦସ୍ୟୁ ଆକ୍ରମଣରେ, ଶୂନ୍ୟରେ ବା ଶତ୍ରୁକର୍ତ୍ତୃକ ଗୃହୀତ ହେଲେ, ସିଂହ ବ୍ୟାଘ୍ର ପଶ୍ଚାଦ୍ଧାବିତ ହେଲେ, ବନମଧରେ କିମ୍ବା ହସ୍ତୀ ବେଷ୍ଟନ ସମୟରେ, ରାଜାଙ୍କ ଆଦେଶରେ ପ୍ରାରବ୍ଧ ବା ବନ୍ଧନ ସମୟରେ ସମୁଦ୍ର ମଧରେ ନୌକାରେ, ଝଞ୍ଜା ବା ବତାସରେ ଓ ଯୁଦ୍ଧକାଳରେ ଭୟାନକ ଅସ୍ତ୍ରମୁଖରେ ପତନ ସମୟରେ, ଘୋରତର ଦୁଃଖ ସମୟରେ ମୃତ୍ୟୁପୀଡ଼ା ବେଳେ ଦେବୀଙ୍କର ମାହାତ୍ମ୍ୟ ଯେଉଁମାନେ ଶ୍ରବଣ କରନ୍ତି ସେହି ମନୁଷ୍ୟଗଣ ସର୍ବପ୍ରକାର ସଙ୍କଟରୁ ଉଦ୍ଧାର ପାଇଥାନ୍ତି ।

ଏଣୁ ମୃଣ୍ମୟୀ ଦେବୀପୂଜା ମାଧମରେ ଭଗବତୀଙ୍କୁ ଆବାହନ କରିବାର ପରମ୍ପରା ବହୁ ପ୍ରାଚୀନ କାଳରୁ ପ୍ରଚଳିତ ରହିଛି । **ତ୍ରେତୟା ଯୁଗରେ ରାମଚନ୍ଦ୍ର ଅସମୟରେ ଅର୍ଥାତ୍ ଦେବଦେବୀଙ୍କ ନିଦ୍ରା ସମୟରେ ଶରତ୍‌କାଳରେ ଦେବୀଙ୍କୁ ଜାଗ୍ରତ କରି ପୂଜାଦ୍ୱାରା ସନ୍ତୁଷ୍ଟା କରିବା ପରେ ଦେବୀ ରାବଣବଧ ପାଇଁ ଶ୍ରୀରାମଚନ୍ଦ୍ରଙ୍କୁ ବର ପ୍ରଦାନ କରିଥିଲେ । ଏହାକୁ ଶାସ୍ତ୍ରରେ ଅକାଳବୋଧିନୀ କୁହାଯାଏ ।** ବାଲ୍ମିକୀ ରାମାୟଣରେ ରାମଚନ୍ଦ୍ରଙ୍କର ଦେବୀପୂଜା ବିଷୟରେ ବର୍ଣ୍ଣନା ନାହିଁ । ଦେବୀ ଭାଗବତ, କାଳିକା ପୁରାଣ ଓ ବଙ୍ଗଳାର କୃତ୍ତିବାସ ରାମାୟଣରେ ଏ ବିଷୟରେ ବର୍ଣ୍ଣନା କରାଯାଇଛି । ସପ୍ତମୀ ତିଥିରେ ଦେବୀ ରାମଚନ୍ଦ୍ରଙ୍କର ଦିବ୍ୟବାଣରେ ପ୍ରବେଶ କରିଥିଲେ । ଅଷ୍ଟମୀ ଦିନ ରାମରାବଣଙ୍କର ମହାଯୁଦ୍ଧ ହୋଇଥିଲା ଏବଂ ଅଷ୍ଟମୀ ନବମୀର ସନ୍ଧିକ୍ଷଣରେ ଦଶାନନ ବଧ ହୋଇଥିଲା । ଦଶମୀ ଦିନ ଶ୍ରୀରାମ ବିଜୟ ଉତ୍ସବ ପାଳନ କରିଥିଲେ । ମହାଶକ୍ତିଙ୍କର ଆବିର୍ଭାବ ଫଳରେ ଶ୍ରୀରାମଚନ୍ଦ୍ର ରାବଣକୁ ବଧ କରି ସୀତାଦେବୀଙ୍କୁ ଉଦ୍ଧାର କରିଥିଲେ । ଏଣୁ ଶ୍ରୀରାମଚନ୍ଦ୍ରଙ୍କର ଏହି ଶାରଦୀୟ ଦେବୀପୂଜା ଅବଲମ୍ବନରେ ମର୍ତ୍ତ୍ୟରେ ମାନବଗଣ ଶରତକାଳରେ ଦୁର୍ଗାପୂଜା ପାଳନ କରିଆସୁଛନ୍ତି । ଯଥାର୍ଥରେ ଶ୍ରୀଚଣ୍ଡୀରେ ଦେବୀଙ୍କ ସ୍ତୁତିରେ କୁହାଯାଇଛି -

ରୋମାନଶେଷାନ୍ ଅପହଂସି ତୁଷ୍ଟାନ୍
ରୁଷ୍ଟାତୁ କାମାନ୍ ସକଳାନଭୀଷ୍ଟାନ୍
ତ୍ୱାମାଶ୍ରିତାନାଂ ନ ବିପତ୍‌ନରାଣାଂ
ତ୍ୱାମାଶ୍ରିତାହ୍ୟାଶ୍ରୟତାଂ ପ୍ରୟାନ୍ତି ।

ଅତିରିକ୍ତ ଶାସନ ସଚିବ
ସ୍ୱରାଷ୍ଟ୍ର ବିଭାଗ, ଭୁବନେଶ୍ୱର

# ପ୍ରାଚୀନଦୀ, ମା' ମଙ୍ଗଳା ଓ ପ୍ରସିଦ୍ଧ ପାର୍ବଣପୂଜା

ତ୍ରିଲୋଚନ ମିଶ୍ର

**ଆ**ମ ପୁଣ୍ୟଭୂମି ଭାରତବର୍ଷ ଅନେକ ନଦନଦୀ, ଦେବାଦେବୀ, ଋଷିମୁନି ସଭ୍ୟତାର ଦେଶ । ପ୍ରତ୍ୟେକ ପବିତ୍ର ତୀର୍ଥ ସହ ଏକ ପବିତ୍ର ନଦୀର ସ୍ୱର୍ଗୀୟ ସମ୍ବନ୍ଧ ରହିଅଛି । ଗଙ୍ଗାମାତା ସମସ୍ତ ଭାରତୀୟମାନଙ୍କର ପ୍ରାତଃ ସ୍ମରଣୀୟ । ଗଙ୍ଗା ଜଳ ବିନା ସମସ୍ତ ପୂଜାପାଠ, ତର୍ପଣ, ସଂସ୍କାର ଅଧୁରା ରହିଯାଏ । ସମଗ୍ର ଭାରତବର୍ଷରେ ମୂଳ ସଂସ୍କୃତ ଭାଷାରେ ଦୁଇଗୋଟି ପବିତ୍ର ନଦୀ ଉପରେ ପୁରାତନ ମାହାତ୍ମ୍ୟ ଗ୍ରନ୍ଥ ଦୃଷ୍ଟିଗୋଚର ହୋଇଥାଏ । ସେମାନେ ହେଲେ 'ଗଙ୍ଗା ମାହାତ୍ମ୍ୟ' ଓ 'ପ୍ରାଚୀ ମାହାତ୍ମ୍ୟ' । ବହୁ ପୂର୍ବ ଏହି ପୁଣ୍ୟତୋୟା ପ୍ରାଚୀନଦୀ ଓଡ଼ିଶାର ଧର୍ମ ଧାରଣା ଓ ସାଂସ୍କୃତିକ ଚେତନାର ମୂଳପିଣ୍ଡ ଥିଲା । ସାରା ଭାରତବର୍ଷର ସାଂସ୍କୃତିକ ତଥା ଧାର୍ମିକ ଚେତନାର ପୀଠସ୍ଥଳୀ ଶ୍ରୀକ୍ଷେତ୍ର ଅଧିପତି ଶ୍ରୀଜଗନ୍ନାଥଙ୍କ ସହ ପ୍ରାଚୀ ତଟସ୍ଥ ପୀଠେଶ୍ୱରୀ 'ମା' ମଙ୍ଗଳା ପୀଠ'ର ସଂଯୋଗ ଅତି ପ୍ରାଚୀନ ଓ ସର୍ବଶାସ୍ତ୍ର ସମ୍ମତ । ଏଥିପାଇଁ ମା' ମଙ୍ଗଳାଙ୍କୁ ଦାରୁବ୍ରହ୍ମ ନିରୂପିଣୀ ଦେବୀ ଭାବରେ ମାଦଳା ପାଞ୍ଜିରେ ବର୍ଣ୍ଣିତ କରାଯାଇଛି । ଶ୍ରୀ ବେଦବ୍ୟାସ ବିରଚିତ ପଦ୍ମପୁରାଣ, ବ୍ରହ୍ମପୁରାଣ ତଥା ତତ୍‌ସମ୍ପର୍କିତ ପ୍ରାଚୀ ମାହାତ୍ମ୍ୟ ବର୍ଣ୍ଣନା ଅନୁଯାୟୀ ସମଗ୍ର ଭାରତବର୍ଷରେ ପୁଣ୍ୟତୋୟା ସରସ୍ୱତୀ ଅନ୍ତସଲିଳା ହେଲେ ମଧ୍ୟ ଏ ସ୍ଥାନରେ ସେ ପବିତ୍ର ପ୍ରାଚୀ ସରସ୍ୱତୀ ରୂପେ ପ୍ରବାହିତ । ବହୁ ପୂର୍ବରୁ ପ୍ରାଚୀ ତଟସ୍ଥ ଅରଣ୍ୟରୁ ଶ୍ରୀଜଗନ୍ନାଥ ଦେବଙ୍କ ନିମନ୍ତେ ଦିବ୍ୟଦାରୁ ତଥା ଅଣବସର ଉପଚାର ନିମନ୍ତେ ସମସ୍ତ ବନସ୍ପତି ସଂଗୃହୀତ ହେଉଥିଲା । କାହିଁ ଆଦିମ କାଳରୁ କେବଳ ପ୍ରାଚୀ କୂଳକୁ ହିଁ ଶ୍ରୀଜଗନ୍ନାଥଙ୍କର ବନଯାଗ ଯାତ୍ରା ଆଗମନ କରିଥାନ୍ତି । ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ସହ ପଞ୍ଚସଖା ଏହି ପବିତ୍ର ନଦୀ ତଟରେ ତପସ୍ୟା କରି ସିଦ୍ଧି ଲାଭ ସହ ଅନେକ ଦୁର୍ଲଭ ଗ୍ରନ୍ଥ ରଚନା କରି ଉତ୍କଳୀୟ ସାହିତ୍ୟକୁ ଋଦ୍ଧିମନ୍ତ କରିଅଛନ୍ତି । 'ଶୂନ୍ୟ ସଂହିତା' ଗ୍ରନ୍ଥରେ ପ୍ରାଚୀ ନଦୀକୁ ନୈମିଶ୍ୟାରଣ୍ୟର ପୂର୍ବସୀମା ନିର୍ଦ୍ଧାରଣ କରାଯିବା ସହ ମହର୍ଷି ଓ ବ୍ରହ୍ମର୍ଷିମାନଙ୍କର ବିଶ୍ରାମ ସ୍ଥଳୀ ରୂପେ ବର୍ଣ୍ଣନା କରାଯାଇଛି । ଋଷି ବାକ୍ୟର କେତୋଟି ଜ୍ୱଳନ୍ତ ଦୃଷ୍ଟାନ୍ତ ନିମ୍ନରେ ପ୍ରଦାନ କରାଗଲା -



ନୈମେଶ୍ୟାରଣ୍ୟ ପୂର୍ବତଟ ପ୍ରାଚୀନଦୀକୂଳ
ସାଧୁ, ସନ୍ଥ, ଜପି, ତପି ହୋଇଛନ୍ତି ଠୁଳ
(ଶୂନ୍ୟ ସଂହିତା)

କ୍ରୋଶେ କ୍ରୋଶେ ତଟେ ଲିଙ୍ଗେ
ତସ୍ମାତ୍ ପ୍ରାଚୀ ସରସ୍ୱତୀ (ପଦ୍ମପୁରାଣ)

ବିଲ୍ୱ ଗୋକର୍ଣ୍ଣ ଶ୍ୱେର୍ମଧେ ପ୍ରାଚୀତେ ଶିବ ନିର୍ମିତେ
ଏକାମ୍ରବନ ପୂର୍ବେଚ ତତ୍ର ପ୍ରାଚୀ ସରସ୍ୱତୀ
(ସଂସ୍କୃତ ପ୍ରାଚୀ ମାହାତ୍ମ୍ୟ)

ପ୍ରାଚୀତଟରେ ଯେତେ ହର ସମସ୍ତେ ବ୍ରହ୍ମ ଏକେଶ୍ୱର
ବିଶେଷ ପ୍ରାଚୀ ସରସ୍ୱତୀ, କୂଳେ କରିବ ତୁମ୍ଭେ କୀର୍ତ୍ତି
(ଓଡ଼ିଆ ପ୍ରାଚୀ ମାହାତ୍ମ୍ୟ)

ପ୍ରାଚୀନତମ ଓ ପବିତ୍ରତମ ପ୍ରାଚୀ ନଦୀର ମାହାତ୍ମ୍ୟକୁ ଦୁଇଗୋଟି ପ୍ରଧାନ ବିଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମତଃ ପୌରାଣିକ ଆଧାର ଓ ଦ୍ୱିତୀୟତଃ ଐତିହାସିକ ଆଧାର । ପୌରାଣିକ ଆଧାର ଶ୍ରୀ ବେଦବ୍ୟାସଙ୍କଠାରୁ ଆରମ୍ଭ କରି ଶ୍ରୀ ପ୍ରାଚୀ ମାହାତ୍ମ୍ୟ ପର୍ଯ୍ୟନ୍ତ ବର୍ଣ୍ଣିତ । ଐତିହାସିକ ଆଧାର ପାଇଁ ବହୁ ପ୍ରତିଷ୍ଠିତ ଐତିହାସିକ ତଥା ଗବେଷକମାନଙ୍କ ଲିଖିତ ପ୍ରାଚୀ ସଭ୍ୟତା ସମ୍ପର୍କିତ ଗ୍ରନ୍ଥ ଓ ପ୍ରବନ୍ଧ ପଠନୀୟ । ଅଧୁନା ଭାରତୀୟ ପ୍ରତ୍ନତତ୍ତ୍ୱବିତ୍ ତଥା ଐତିହାସିକମାନଙ୍କଦ୍ୱାରା ଆଦୃତ ଦୁର୍ଲ୍ଲଭ ଗ୍ରନ୍ଥଟି ହେଲା ପ୍ରାଚୀ କୂଳସ୍ଥ

ତୁଳସୀପୁର ଗ୍ରାମ ନିବାସୀ ପ୍ରାତଃ ସ୍ମରଣୀୟ ସ୍ୱର୍ଗତଃ ଶ୍ୟାମସୁନ୍ଦର ତ୍ରିପାଠୀଙ୍କ ଗବେଷଣାମୂଳକ ଇଂରାଜୀ ପୁସ୍ତକ 'ବୁଦ୍ଧିଜିମ୍ ଆଣ୍ଡ୍ ଅଦର ରିଲିଜିଅସ୍ କଲଚର୍ ଅଫ୍ ସାଉଥ୍ ଇଷ୍ଟ ଇଣ୍ଡିଆ ।' ଏହି ଗ୍ରନ୍ଥରୁ ପାଠକମାନେ ପ୍ରାଚୀ ସଭ୍ୟତାର ଏକ ନୂତନ ଆଲୋକ ପାଇପାରିବେ ।

ଆମ ଓଡ଼ିଶାର ଘରେ ଘରେ ପାଳିତ ଖୁଦୁରୁକୁଣୀ ଓଷା ବା ଭାଲୁକୁଣୀ ଓଷା ପୁସ୍ତକରେ ପବିତ୍ର ପ୍ରାଚୀନଦୀ ତଟସ୍ଥ ମା' ମଙ୍ଗଳାଙ୍କ ମାହାତ୍ମ୍ୟ ଆମୂଳଚୂଳ ବର୍ଣ୍ଣିତ । ପ୍ରାଚୀନଦୀର ପରମ ପବିତ୍ରତା, ଶୁଦ୍ଧତା, ପାପନାଶିନୀ ଶକ୍ତି, ନଦୀ ତଟସ୍ଥ ଶମ୍ଭୁ, ବିଷ୍ଣୁ, ମାଧବ, ଚଣ୍ଡୀ, ଯଜ୍ଞ ବେଦୀ, ଋଷି ଆଶ୍ରମ ଓ ପୁଣ୍ୟ ଘାଟମାନଙ୍କର ବର୍ଣ୍ଣନା କରାଗଲେ ଏକ ବିଶାଳ ଗ୍ରନ୍ଥ ହେବା ନିଶ୍ଚିନ୍ତ । ସର୍ବପ୍ରଥମେ ଏହି ବ୍ରହ୍ମ ପ୍ରଦାୟିନୀ ନଦୀ ତଟସ୍ଥ ଦାରୁବ୍ରହ୍ମ ନିରୂପିଣୀ ମା' ମଙ୍ଗଳାଙ୍କ ବିଷୟରେ ସଂକ୍ଷିପ୍ତ ସୂଚନା ପ୍ରଦାନ କରିବା ଆମ୍ଭର ମୂଳ ଲକ୍ଷ୍ୟ । ଗୋରଖପୁର ଗୀତା ପ୍ରେସ୍‌ରୁ ପ୍ରକାଶିତ ବିଶାଳ ପୁସ୍ତକ 'ତୀର୍ଥ ମାହାତ୍ମ୍ୟ'ରେ ସମଗ୍ର ଭାରତର ପୁରାଣ ବର୍ଣ୍ଣିତ ପୀଠମାନଙ୍କ ବର୍ଣ୍ଣନା ସହ ପୀଠେଶ୍ୱରୀ ମା' ମଙ୍ଗଳା, ପବିତ୍ର ନଦୀ ପ୍ରାଚୀ ସରସ୍ୱତୀ ଓ ପ୍ରାଚୀ ତଟସ୍ଥ ପବିତ୍ର ବିଶ୍ୱାମିତ୍ର ଆଶ୍ରମ ଓ ଦେଉଳି ମଠର ଗାଥା ବର୍ଣ୍ଣିତ ହୋଇଅଛି । ପାଠକମାନଙ୍କ ଅବଗତି ନିମନ୍ତେ ପ୍ରାଚୀ ତଟସ୍ଥ ମହର୍ଷି ବିଶ୍ୱାମିତ୍ରଙ୍କ ଆଶ୍ରମରେ ଦୁର୍ଲ୍ଲଭ ଗ୍ରନ୍ଥଗୁଡ଼ିକ ସଂରକ୍ଷିତ କରାଯାଇଅଛି ।

ଶ୍ରୀଜଗନ୍ନାଥ ସଂସ୍କୃତିର ସୁବିଦିତ ପୁଣ୍ୟପୀଠ କାକଟପୁରର, ବିଶ୍ୱବିଦିତ, ଦେବୀ ହେଉଛନ୍ତି ମା' ମଙ୍ଗଳା ଶ୍ରୀଜଗନ୍ନାଥ ସଂସ୍କୃତିର ଗବେଷକମାନଙ୍କ ମତରେ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ମର୍ତ୍ତ୍ୟରେ ବ୍ରହ୍ମଙ୍କୁ ଆବିର୍ଭାବ କରାଇ ଏକ ମର୍ତ୍ତ୍ୟ ବୈକୁଣ୍ଠ ସ୍ଥାପନ କରିବା ନିମନ୍ତେ ଗୁରୁ ମାର୍କଣ୍ଡେୟ ମହର୍ଷିଙ୍କ ପରାମର୍ଶରେ ବ୍ରହ୍ମାଙ୍କ ପୌରୋହିତ୍ୟରେ ବିଷ୍ଣୁ ଯଜ୍ଞ ଆରମ୍ଭ କରିଥିଲେ । ଏହି ଯଜ୍ଞାଗ୍ନିରେ ବ୍ରହ୍ମଙ୍କର ଚତୁର୍ଦ୍ଧାମୂର୍ତ୍ତି ଦର୍ଶନ କରି ଏହି ମୂର୍ତ୍ତି ତତ୍ତ୍ୱକୁ ସାକାର କରିବା ପାଇଁ ପ୍ରାଚୀ ତଟରେ ଘନ ଅରଣ୍ୟ ମଧ୍ୟରେ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ କଠୋର ତପସ୍ୟାରେ ନିମଗ୍ନ ହେଲେ । ନିଜର ଶରୀର ରକ୍ଷା ନିମନ୍ତେ ଉତ୍ତମ ଦୀକ୍ଷା ଗ୍ରହଣ କରିଥିବା ଦୁଇଜଣ କର୍ତ୍ତବ୍ୟନିଷ୍ଠ ସେବାକାରୀ ହଟ ଓ ବଟଙ୍କୁ ନିଯୁକ୍ତ କରିଥିଲେ । ପରମ ବିଷ୍ଣୁ ଭକ୍ତ ରାଜଶ୍ରୀ ଇନ୍ଦ୍ରଦ୍ୟୁମ୍ନଙ୍କ କଠୋର ତପଶ୍ଚର୍ଯ୍ୟାରେ ସନ୍ତୁଷ୍ଟ ହୋଇ ଶ୍ରୀବିଷ୍ଣୁଙ୍କର ଶରୀର ରକ୍ଷାକାରିଣୀ ଯୋଗମାୟା ପବିତ୍ର ପ୍ରାଚୀନଦୀର ଚକ୍ରଗଣ୍ଡରେ ଏକ ଦିବ୍ୟ ପଦ୍ମଫୁଲ ଉପରେ ଉପବିଷ୍ଟ ହୋଇ ଆବିର୍ଭୂତ ହେଲେ । ତପସ୍ୟାରେ ସମସ୍ତ ସୂଚନା ଅବଗତ ହୋଇ ମହାରାଜ ହଟ ଓ ବଟ ସେବାକାରୀଙ୍କ ସହ ନଦୀ ମଧ୍ୟରୁ ଅନାଶୟରେ ପଦ୍ମାରୂଢ଼ା ଦେବୀଙ୍କୁ କୂଳକୁ ଆଣି ପୂଜାର୍ଚ୍ଚନା କରି ଚତୁର୍ଦ୍ଧାମୁରତି ବ୍ରହ୍ମ ତତ୍ତ୍ୱ ଅବଗତ ହୋଇଥିଲେ । ଏହି ପବିତ୍ର ଦିବସଟି ଥିଲା ଚୈତ୍ରାନ୍ତ ଆଦ୍ୟବୈଶାଖର ଦ୍ୱିତୀୟା ତିଥିର ପ୍ରଥମ ମଙ୍ଗଳବାର । ଆଜି ପର୍ଯ୍ୟନ୍ତ କାହିଁ ଆଦିମ କାଳରୁ କାକଟପୁର ପୀଠରେ ପଞ୍ଚମ ପାଳି ମଙ୍ଗଳବାର ବୈଶାଖ ମାସରେ ମଧ୍ୟ ପାଳନ ବିଧି ରହିଅଛି । ପବିତ୍ର ବିଷ୍ଣୁ ମନ୍ତ୍ରରେ ଦୀକ୍ଷିତ ସେବାକାରୀ ହଟ ଓ ବଟ ପୁରୁଷାନୁକ୍ରମେ ଦୀକ୍ଷିତ ସମ୍ପ୍ରଦାୟର ଆଦ୍ୟପୁରୁଷ ରୂପେ ପରିଚିତ ହୁଅନ୍ତି । ପରବର୍ତ୍ତୀ ଦିନରେ 'ଭୋଦର' ପ୍ରଗଣାର ଶାସକ ରାୟ ଚୂଡ଼ାମଣି ଅପୁତ୍ରିକ ଥିବାରୁ ମା'ଙ୍କ ଶରଣାପନ୍ନ ହୋଇ ପୁତ୍ର ଲାଭ ସହ ଏକ ଭବ୍ୟ ମନ୍ଦିର ନିର୍ମାଣ କରି ମା'ଙ୍କ ସ୍ୱଇଚ୍ଛାରେ ପ୍ରାଚୀତଟସ୍ଥ ମଙ୍ଗଳପୁର ଗ୍ରାମ ଦେଉଳି ମଠରୁ ଶ୍ରୀମୂର୍ତ୍ତିକୁ ସ୍ଥାନାନ୍ତରିତ କରିଥିଲେ । ସେ ସମୟ ଥିଲା ୧୮୪୪ ମସିହା ପବିତ୍ର ବୈଶାଖ ଦ୍ୱିତୀୟା ମଙ୍ଗଳବାର ଯାହାକି ମା'ଙ୍କର ଆବିର୍ଭାବ ଦିବସ । ପରବର୍ତ୍ତୀ ସମୟରେ ବହୁ ଲୋକକଥାରେ ମା' ମଙ୍ଗଳା ସିଂହଳ ଦ୍ୱୀପରୁ ଭକ୍ତ ଦଧିବାମନ ସାହୁଙ୍କ ନାବ ମଙ୍ଗରେ ବସି ଆସିଥିବା ବର୍ଣ୍ଣନା ଦୃଷ୍ଟିଗୋଚର ହୁଅନ୍ତି । ଏହା ସତ୍ୟ ଯେ ପ୍ରତ୍ୟେକ ଉତ୍କଳୀୟ ନାବିକ ଡଙ୍ଗା ବା ନାଆ ମଙ୍ଗରେ ମା'ଙ୍କ ଆଜ୍ଞା ମାଳା ବାନ୍ଧି ଲାଗି ସିନ୍ଦୂର ଲେପନ କରି ମଙ୍ଗଳାଙ୍କଠାରୁ ଶୁଭମନାସୀ ଜଳଯାତ୍ରା କରିଥାଏ । ବହୁ ଗବେଷକ ମା' ମଙ୍ଗଳାଙ୍କୁ ବୌଦ୍ଧପୂଜିତା ଦେବୀ 'ମା' ତାରା'ଙ୍କ ସାଦୃଶ୍ୟ ବର୍ଣ୍ଣନା କରି ବୌଦ୍ଧ ଅବତାର ଶ୍ରୀଜଗନ୍ନାଥଙ୍କ ଆବିର୍ଭାବକାରିଣୀ ଦେବୀ ରୂପେ ଉପସ୍ଥାପନା କରିଆସିଛନ୍ତି । ସବୁ ଦିଗରୁ ବିଚାର କଲେ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନଙ୍କ କଠୋର ତପସ୍ୟାର ଫଳ ଯୋଗମାୟା ମା' ମଙ୍ଗଳା, ଏହା ଗ୍ରହଣୀୟ । ପୁରୀର ଗବେଷକମାନଙ୍କ ସର୍ବସମ୍ମତ ମତ ଅନୁସାରେ ଶ୍ରୀଜଗନ୍ନାଥଙ୍କ ଚତୁର୍ଦ୍ଧା ମୂର୍ତ୍ତି ନିମନ୍ତେ ଆଦ୍ୟ ଦାରୁଗୁଡ଼ିକ ପ୍ରାଚୀନଦୀରେ ଯୋଗମାୟାଙ୍କ କୃପାରୁ ଇନ୍ଦ୍ରଦ୍ୟୁମ୍ନଙ୍କୁ ଦୃଷ୍ଟିଗୋଚର ହୋଇଥିଲେ । ସ୍ୱୟଂ ଦେବଶିଳ୍ପୀ ବିଶ୍ୱକର୍ମା ପରମବ୍ରହ୍ମଙ୍କ ନିର୍ଦ୍ଦେଶରେ ବ୍ରହ୍ମ ସନ୍ନିବିଷ୍ଟ ଆଦ୍ୟ ଚତୁର୍ଦ୍ଧାମୂର୍ତ୍ତି ମର୍ତ୍ତ୍ୟ ବୈକୁଣ୍ଠପୁରୀର ଯଜ୍ଞବେଦୀରେ ନିର୍ମାଣ କରିଥିଲେ । କାହିଁ କେତେ କାଳରୁ ନବକଳେବର ପଡ଼ିଲେ ଚାରିବାଡ଼ର ସେବକମାନେ ବନଯାଗ ସଂକଳ୍ପରେ ଆସି ମଙ୍ଗଳାଙ୍କ କୃପା କାମନା କରିଥାନ୍ତି । ମା'ଙ୍କ ନିର୍ଦ୍ଦେଶରେ ଚାରିବାଡ଼ର ଅଧିଆ ପଡ଼ିଥିବା ସେବକମାନଙ୍କୁ ଦିବ୍ୟଦାରୁ ସ୍ୱପ୍ନରେ ଦେଖା ଦିଅନ୍ତି । ଏ ବିଜ୍ଞାନ ଯୁଗରେ ସମଗ୍ର ବିଶ୍ୱରେ ଏହା ଏକ ଦୁର୍ଲ୍ଲଭ ଅନୁଭୂତି ।

ଆସନ୍ତୁ, କୃପାମୟୀଙ୍କର ସ୍ୱରୂପ ବର୍ଣ୍ଣନା କରିବା । ଆମ୍ଭେ ଆଗରୁ କହି ରଖିଛୁଁ ମା' ମଙ୍ଗଳା ନିଜ ଇଚ୍ଛାରେ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନଙ୍କ

କଠୋର ତପସ୍ୟାରେ ଜଗତର କଲ୍ୟାଣ ନିମନ୍ତେ ଦାରୁବ୍ରହ୍ମଙ୍କ ଆବିର୍ଭାବର କାରଣ ହୋଇ ଆବିର୍ଭୂତା ହୋଇଛନ୍ତି । ଏପରି ଭବ୍ୟମୂର୍ତ୍ତି ସମଗ୍ର ବିଶ୍ୱରେ ଦୁର୍ଲ୍ଲଭ । ମା' ମଙ୍ଗଳାଙ୍କ ପ୍ରସିଦ୍ଧ ଝାମୁଯାତ୍ରା ସମୟରେ ଦିବ୍ୟ ସୁବାସିତ ଜଳରେ ସ୍ନାନପରେ ମା'ଙ୍କର ଜାଜୁଲ୍ୟମାନ ରୂପ ଯେଉଁମାନେ ଦର୍ଶନ କରିଛନ୍ତି, ସେମାନେ ପ୍ରକୃତରେ ଭାଗ୍ୟବାନ୍ । ଏହି ଆବିର୍ଭାବ ଦିବସରେ ମା'ଙ୍କ ଶରୀରରୁ ଯେଉଁ ଶ୍ରମଝାଳ ନିର୍ଗତ ହୋଇଥାଏ, ତାହା ସେବକମାନେ ବାରମ୍ବାର ପାଟକନାରେ ପୋଛି ଚିପୁଡ଼ିବା ଦୃଶ୍ୟ ଏ ଅଧମ ଲେଖକ ସ୍ୱଚକ୍ଷୁରେ ଦର୍ଶନ କରିବା ସୌଭାଗ୍ୟ ଲାଭ କରିଛି । ପୁରାଣରେ ମା'ଙ୍କ ଭବ୍ୟରୂପର ବର୍ଣ୍ଣନା ନିମ୍ନରେ ପ୍ରଦତ୍ତ ହେଲା ।

ପ୍ରାଚୀ ପୂର୍ବ ତଟେ ପୟୋଧିନିକଟେ ପାଥୋଜୋ ପୁଷ୍ପେଷ୍ଟିତାଂ
ମାଳା ସଂଖ୍ୟା, ପୁର୍ଣ୍ଣ ଶଶାଙ୍କ, ପଦ୍ମ କଳିକା ନକ୍ଷେତ୍ର ମାଳା ଧାରାଂ
ଭୁଜବାହୁ ଚତୁଃଷ୍ଟେୟନ ସଂହିତା ନାନା ବିଭୂଷ୍ଟ ଜ୍ୱାଳାଂ
ଶାନ୍ତାଂ ସର୍ବ ବର ପ୍ରଦାଂଚ କୁଶଲାଂ ଧାୟେତ୍ ସର୍ବମଙ୍ଗଳା ।

ଏହି ବର୍ଣ୍ଣନାରୁ ମା' ପଦ୍ମାସିନା, ମାଳା, ପୁର୍ଣ୍ଣ ଶଶାଙ୍କ, ପଦ୍ମ କଳିକା ଧାରିଣୀ, ନକ୍ଷେତ୍ରମାଳା ଭୂଷିତା ଓ ଅଭୟମୁଦ୍ରା ପ୍ରଦର୍ଶିତ କରୁଥିବା ସହ ଭକ୍ତମାନଙ୍କର କାମନା ପୂର୍ଣ୍ଣ କରି ଜୀବନର ପ୍ରକୃତ ପଥ ପ୍ରଦର୍ଶିତ କରିଥାନ୍ତି । ମା'ଙ୍କ ସ୍ୱରୂପ ଦର୍ଶନରେ ଭକ୍ତ ଏହା ହିଁ ଦର୍ଶନକରି କୃତାର୍ଥ ହୋଇଥାଏ ।

ମା' ମଙ୍ଗଳାଙ୍କ ସ୍ୱରୂପକୁ ଆବରଣ କରିଛନ୍ତି ୪୫ ଫୁଟ ଉଚ୍ଚତା ବିଶିଷ୍ଟ ଏକ ଭବ୍ୟ ମନ୍ଦିର । ସମସ୍ତ ହିନ୍ଦୁ ମନ୍ଦିରପରି ମନ୍ଦିରରେ ଜଗମୋହନ, ମୁଖଶାଳା ଓ ନାଟ୍ୟମଣ୍ଡପ ବିଦ୍ୟମାନ । ଜଗମୋହନ ପଶ୍ଚିମ କାନ୍ଥକୁ ଲାଗି ମା'ଙ୍କର ଏକ ଦିବ୍ୟ ବିଶ୍ରାମଶିଳା ଦୃଷ୍ଟିଗୋଚର ହୁଅନ୍ତି । ମା' ମଙ୍ଗଳା ପ୍ରତ୍ୟହ ରାତ୍ର ଭ୍ରମଣରେ ଯିବାବେଳେ ନିଜର ସାମୂହିକ ବିଶ୍ରାମ ନିମନ୍ତେ ଶିଳାଟି ଉଦ୍ଦିଷ୍ଟ । ଭକ୍ତମାନେ ଶିଳାଟିକୁ ସ୍ୱତନ୍ତ୍ର ମାନ୍ୟତା ପ୍ରଦାନ କରନ୍ତି । ମା'ଙ୍କର ଶିଳାରେ ଉପବେଶନର ସମସ୍ତ ଦିବ୍ୟ ଲକ୍ଷଣ ଭକ୍ତମାନେ ଦେଖିବାକୁ ପାଇଥାନ୍ତି । ମା'ଙ୍କର ପ୍ରସାଦ ପାଇଁ ସ୍ୱତନ୍ତ୍ର ରୋଷଶାଳା, ରୋଷକୂପ, ଆନନ୍ଦ ବଜାର ମନ୍ଦିର ବେଢ଼ା ମଧରେ ଅବସ୍ଥିତ । ମା'ଙ୍କ ଦକ୍ଷିଣ ଦିଗରେ ପତିତପାବନ ମନ୍ଦିର ଓ ଉତ୍ତର ଦିଗରେ କାକଟପୁର ଗ୍ରାମେଶ୍ୱରୀ ମା' କାକଟେଇଙ୍କ ମନ୍ଦିର ଅବସ୍ଥିତ । ମନ୍ଦିରର ସ୍ନାନବେଦୀ ମନ୍ଦିର ପାଚେରୀର ଐଶାନ୍ୟ କୋଣରେ ଅବସ୍ଥିତ । ମା' ମଙ୍ଗଳା ମନ୍ଦିରର ପାର୍ଶ୍ୱଦେବତା ହେଲେ ସ୍ୱୟଂ ମାଧବ, ଶ୍ରୀଗଣେଶ ଓ ଶଙ୍କର ଭଗବାନ । ଏପରି ପାର୍ଶ୍ୱ ଦେବତା କୌଣସି ମନ୍ଦିରରେ ଦୃଷ୍ଟିଗୋଚର ହୁଅନ୍ତି ନାହିଁ । ତେଣୁ ମା'ଙ୍କୁ ତ୍ରିଦେବ ପୂଜିତା ରୂପେ ବର୍ଣ୍ଣନା କରାଯାଇଛି । ମା'ଙ୍କ ପାଦଦେଶରେ ତ୍ରିମୂର୍ତ୍ତିର ଦୃଶ୍ୟ ଏହାର ଜ୍ୱଳନ୍ତ ନିଦର୍ଶନ ।

ସମସ୍ତ ଦେବୀପୀଠ ପରି ମା' ମଙ୍ଗଳାଙ୍କ ପୀଠରେ ପବିତ୍ର ଶାରଦୀୟ ପୂଜା ମହୋତ୍ସବ ଷୋଡ଼ଶ ଉପଚାରରେ ପାଳିତ ହୋଇଥାଏ । ପବିତ୍ର ମୂଳାଷ୍ଟମୀଠାରୁ ମହାଷ୍ଟମୀ ପର୍ଯ୍ୟନ୍ତ ଷୋଡ଼ଶ ଦିବସ ବ୍ୟାପି ଏହି ପୂଜାର୍ଚ୍ଚନା ପାଇଁ ମନ୍ଦିର ପୂଜାପଣ୍ଡା ମା'ଙ୍କ ସମ୍ମୁଖରେ ସଂକଳ୍ପ କରିଥାଆନ୍ତି । ଏହି ସଂକଳ୍ପର ଏକ ବିଶେଷ ତାତ୍ପର୍ଯ୍ୟ ରହିଅଛି । ପୂଜା ନିମନ୍ତେ ସଂକଳ୍ପିତ ପୂଜକ ପରିବାର କିମ୍ବା କୁଟୁମ୍ବରେ କୌଣସି ଅଶୌଚ ନିମନ୍ତେ ଭାଗୀଦାର ନହୋଇ ସଂକଳ୍ପିତ ପୂଜାର ପୂର୍ଣ୍ଣତା ଘଟାଇଥାନ୍ତି ।

ମୂଳାଷ୍ଟମୀ ମା'ଙ୍କ ଶାରଦୀୟ ପୂଜାର ଆଦ୍ୟ ଦିବସ । ଏହି ଦିବସର ପ୍ରାତଃ ସମୟରୁ ସଂକଳ୍ପିତ ପୂଜା ପଣ୍ଡା ୧୦୦୮ କୁମ୍ଭ ବରଣ ସହ ମା'ଙ୍କ ଶ୍ରୀଅଙ୍ଗକୁ ୧୦୮ ପବିତ୍ର ଜଳ ଘଟରେ ଅଗୁର ଚନ୍ଦନାଦି ଦିବ୍ୟ ବସ୍ତୁ ମିଶ୍ରିତ କରାଇ ସ୍ନାନ କରାଇଥାନ୍ତି । ପରେ ପରେ ମା'ଙ୍କ ଶ୍ରୀଅଙ୍ଗ ପାଟ କନାରେ ପୋଛାଯାଇ ଭବ୍ୟ ଶୃଙ୍ଗାର କରାଯାଏ । ଭକ୍ତମାନଙ୍କ ନିମନ୍ତେ ଏ ଦୃଶ୍ୟ ଶରୀରରେ ଶିହରଣ ଆଣି ଦେଇଥାଏ । ଅନ୍ୟ ଦିବସମାନଙ୍କରେ ମା'ଙ୍କୁ ଗନ୍ଧ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟାଦି ପଞ୍ଚ ଉପଚାରରେ ପୂଜା କରାଯାଉଥିବା ସ୍ଥଳେ ସଂକଳ୍ପିତ ଶାରଦୀୟ ପୂଜା ଷୋଡ଼ଶ ଉପଚାରରେ ସଂପନ୍ନ ହୋଇଥାଏ । ଆଶ୍ରିତ ଭକ୍ତମାନଙ୍କୁ ମହିଷାସୁରରୂପୀ ଦୁଷ୍ଟ ଦାନବମାନଙ୍କ କବଳରୁ ସଦାସର୍ବଦା ସୁରକ୍ଷା ପ୍ରଦାନର ପ୍ରତିଶ୍ରୁତିର ଅନ୍ୟ ରୂପ ଶାରଦୀୟ ଦେବୀ ପୂଜା । ମୂଳାଷ୍ଟମୀଠାରୁ ମହାଳୟା ଅମାବାସ୍ୟା ପର୍ଯ୍ୟନ୍ତ ଧ୍ୟାନମଗ୍ନା ଦେବୀଙ୍କୁ ପୂଜା ଉପଚାରଦ୍ୱାରା ଜାଗ୍ରତ କରାଯାଏ । ପ୍ରତିପଦଠାରୁ ଚତୁର୍ଥୀ ପର୍ଯ୍ୟନ୍ତ ମା' ଜାଗ୍ରତ ହୋଇ ନକ୍ଷତ୍ରମଣ୍ଡିତା ହୋଇ ଦୁଷ୍ଟ ଦାନବର ଗତିବିଧି ଲକ୍ଷ୍ୟ କରନ୍ତି । ଶୁକ୍ଳ ପଞ୍ଚମୀଦିନ ମା' ତୀର କମାଣଦ୍ୱାରା ଭୂଷିତା ହୋଇ ପାର୍ଶ୍ୱ ଅନୁଚର ଗହଣରେ ଦୁଷ୍ଟ ମହିଷାସୁର ବିରୋଧରେ ଯୁଦ୍ଧ ଘୋଷଣା କରନ୍ତି । ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କର ରଘୁନନ୍ଦନ ବେଶ ପରି ଏହା ମା'ଙ୍କର ରଘୁନାଥ ବେଶ ରୂପେ କଥିତ । ମହାଷଷ୍ଠୀରେ ମା' ମହାକାତ୍ୟାୟନୀ ବେଶ (କାତିଖର୍ପର ବେଶ), ମହାସପ୍ତମୀରେ ପ୍ରସିଦ୍ଧ ସିଂହବାହିନୀ ବେଶ ଓ ମହାଷ୍ଟମୀରେ ମା' ମହିଷା ମର୍ଦ୍ଦିନୀ ବେଶ ଧାରଣ କରି ମଧରାତ୍ରରେ ମହିଷାସୁର ବଧର କାରଣ ହୋଇଥାନ୍ତି । ଏହିଠାରେ ମା'ଙ୍କର ଷୋଡ଼ଶ ଦିବସ ପୂଜା ପୂର୍ଣ୍ଣାଙ୍ଗ ହୋଇଥାଏ ।

ମହାନବମୀ ଦିନ ମା'ଙ୍କର ଶାନ୍ତିପୂଜା, ପୂଜାପଣ୍ଡାଙ୍କଦ୍ୱାରା ପୁନଃ ସଂକଳ୍ପିତ ହୋଇ ଆରମ୍ଭ ହୋଇଥାଏ । ଏ ଦିବସଟି ମା'ଙ୍କର ବିଶ୍ରାମ ଦିବସ ରୂପେ ପରିଚିତ । ବିଜୟା ଦଶମୀ ପୂଜାର ଏକ ସ୍ୱତନ୍ତ୍ରତା ମା' ମଙ୍ଗଳାଙ୍କ ପୀଠରେ ପରିଲକ୍ଷିତ ହୋଇଥାଏ । ପ୍ରାତଃ କାଳରୁ ଭବ୍ୟ ଶୃଙ୍ଗାର, ଯୋଡ଼ି ନାଗରା, ଯୋଡ଼ି ମହୁରୀସହ ପୂଜାର୍ଚ୍ଚନା ମନ୍ଦିରରେ ଲାଗି ରହିଥାଏ । ସନ୍ଧ୍ୟା ଆଳତିପରେ ମା' ମଙ୍ଗଳାଙ୍କ ଚଳନ୍ତି ବିଗ୍ରହ, କନକଦୁର୍ଗା, ଚନ୍ଦ୍ରଶେଖରଙ୍କୁ ସୁଶୋଭିତ ବିମାନରେ ବସାଇ ପୁରାଣ ବର୍ଣ୍ଣିତ 'ସମେଶ୍ୱର' ଶିବ ମନ୍ଦିରକୁ ଏକ ଭବ୍ୟ ଶୋଭାଯାତ୍ରାରେ ନିଆଯାଇଥାଏ । ସେଠାରେ ସୁଶୋଭିତ ମଣ୍ଡପରେ ଭବାନୀଶଙ୍କରଙ୍କର ପୂଜାର୍ଚ୍ଚନା ଲୀଳା ସମାପ୍ତ ହୋଇଥାଏ । ରାତ୍ର ୯ ଘଟିକା ସମୟରେ ବିଗ୍ରହମାନେ ପୁନଃ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରନ୍ତି । ବିଗ୍ରହମାନଙ୍କ ସ୍ୱସ୍ଥାନ ଅବସ୍ଥାନ ପରେ ମା' ମଙ୍ଗଳାଙ୍କ ଧୂପ ଉଠେ, ପଣାଲାଗି ହୁଏ ଓ ବଡ଼ସିଂହାର ସମାପ୍ତ ହୋଇ ଶ୍ରୀମନ୍ଦିର ପହଡ଼ପଡ଼େ । ଆସନ୍ତୁ, ମା' ମଙ୍ଗଳାଙ୍କ ଏହି ପବିତ୍ର ଶାରଦୀୟ ପୂଜା ଉତ୍ସବ ଅବସରରେ ପବିତ୍ର ଋଷିବାକ୍ୟରେ ମା'ଙ୍କଠାରୁ ଦେଶ, ଜାତି, ଜଗତ ତଥା ନିଜ ପରିବାର ନିମନ୍ତେ ମଙ୍ଗଳ କାମନା କରିବା ।

ଜଗତ୍ ଜନନୀ ଶଙ୍କରୀ ପରମାଦ୍ୟାଭୂତା
ତ୍ୱମେବ ମାତଃ ଭବାନୀ ପରମାଦ୍ୟାରୂପା
ଜ୍ଞାନାଦି ଦାତ୍ରୀ ଜନନୀ ପରମ ପବିତ୍ରା
ମଙ୍ଗଳଂ ନାମ ମଙ୍ଗଳା ଶରଣଂ ପ୍ରପଦ୍ୟେ ।
(ପୋଥି ତିଳକରତ୍ନ)

ପ୍ରୀତୀ ବିହାର
କାକଟପୁର, ପୁରୀ-୭୫୨୧୦୮



# ଦଶଭୁଜା

ଦିଲ୍ଲୀପ କୁମାର ବେହୁରା

ମା'ଲୋ ବଗଳାମୁଖୀ  ଧୂମାବତୀ, ଭଗବତୀ,
ମାତଙ୍ଗୀ ରୂପରେ ଲୀଳା କରୁ ତୁ ବସି
ଶ୍ୟାମାକାଳୀ, ଦୁର୍ଗାମାତା  ଜଗଦମ୍ବା, ଛିନ୍ନମସ୍ତା
ପାର୍ବତୀ, ଗୌରୀ, ତାରିଣୀ, ପୌର୍ଣ୍ଣମାସୀ
ପୁଣି ବନଦୁର୍ଗା ତୁ ହୋଇ
କନକଦୁର୍ଗା, ଭବାନୀ ପୂଜା ତୁ ପାଇ ।

ଅମ୍ବା, ଅମ୍ବିକା, କପାଳୀ  ଚିତ୍ରୁପି, ଦକ୍ଷିଣକାଳୀ
ନବଯୌବନା, ରବଳା, ପର୍ଣ୍ଣ, ଶାମ୍ଭବୀ
ହାରାବଳୀ, ରାଜେଶ୍ୱରୀ  ସାବିତ୍ରୀ, ଭୁବନେଶ୍ୱରୀ
ଶୁଭାଙ୍କରୀ, କାତ୍ୟାୟନୀ, ଉମା, ଭୈରବୀ
ପରଦେବତା, ଚନ୍ଦ୍ରମଉଳୀ
ହୈମବତୀ, ଶିବା, ରତ୍ନ କଙ୍କଣଧାରୀ ।

ମହାକାଳୀ, ହରଚଣ୍ଡୀ  ପ୍ରଗଳା, ଶିଖରଚଣ୍ଡୀ
ଭଟ୍ଟାରିକା, ମହାମାୟୀ, ଚାମୁଣ୍ଡେଶ୍ୱରୀ
ଉଗ୍ରତାରା, ନାରାୟଣୀ  ବିରଜା ତାରାତାରିଣୀ
ମାଟିଆ ମଙ୍ଗଳା, ତାରା, ସମଲେଶ୍ୱରୀ
ରାମଚଣ୍ଡୀ, ପଞ୍ଚୁବରାହୀ
ଯୁଗେ ଯୁଗେ ପାପୀନାଶି ଜଗିଛୁ ମହୀ ।

ଭଦ୍ରକାଳୀ, ତ୍ରିନୟନୀ  ତ୍ରିପୁରାସୁନ୍ଦରୀ ପୁଣି
ବୈଜୟନ୍ତ ରାହାରୀ, ଲଳିତା, ମଙ୍ଗଳା
କାଳୀ, ବିମଳା, ସର୍ବାଣୀ,  ଚର୍ଚ୍ଚିକା, ହିଙ୍ଗୁଳା ପୁଣି
ମାହେଶ୍ୱରୀ, ମୃଡ଼ାନୀ, ଜୟନ୍ତୀ, ଶାରଳା
କେତେନାମ ରହିଅଛି ତୋର
ଦଶଭୁଜା ମାଆ ଜଗତକୁ ଉଦ୍ଧାର ।

ଘର ନଂ-୯/୧, ଏଫ୍-ଟାଇପ୍
ୟୁନିଟ୍-୯ ଫ୍ଲାଟ୍, ଭୋଇନଗର
ଭୁବନେଶ୍ୱର-୨୨



# ଶ୍ରୀକ୍ଷେତ୍ରରେ ଶାରଦୀୟ ଦୁର୍ଗୋତ୍ସବ

ପଦ୍ମନାଭ ମହାପାତ୍ର

**ଶା**କ୍ତ ଓ ବୈଷ୍ଣବ ପରମ୍ପରାର ସମନ୍ୱୟ ଶ୍ରୀକ୍ଷେତ୍ରର ବୈଶିଷ୍ଟ୍ୟ । ଏଠାରେ ମହାଦେବୀ ବିମଳା ଭୈରବୀ ଏବଂ ଶ୍ରୀଜଗନ୍ନାଥ ଭୈରବ । ଏହି ତତ୍ତ୍ୱ ଶୁଣିବାବେଳେ ସାଧାରଣ ଭାବେ ଦୁଇଟି ପ୍ରଶ୍ନ ମନକୁ ଆସେ । ପ୍ରଥମ ପ୍ରଶ୍ନ - ଶ୍ରୀ ବିମଳା ତ ଭୈରବୀ, ତାଙ୍କର ଅନ୍ୟନାମ ସବୁ ମହାମାୟା, ଗୌରୀ, ସତୀ ଓ ପାର୍ବତୀ - ସେ ତ ସ୍ୱୟଂ ଦୁର୍ଗା ଓ ସେ ମାୟାବୀଜରେ ଆରାଧିତ - ତାଙ୍କର ମାଧବ ବା ବିଷ୍ଣୁ ବା ପୁରୁଷୋତ୍ତମ ଜଗନ୍ନାଥଙ୍କ ସହ କିଭଳି ସମ୍ପର୍କ ? ତତ୍‌ପରବର୍ତ୍ତୀ ପ୍ରଶ୍ନଟି ହେଲା - ଭୈରବ ଶବ୍ଦର ଅର୍ଥ 'ଭୀଷଣ' ଏବଂ ସେ ଶିବଙ୍କର ଅଷ୍ଟରୁଦ୍ର ରୂପ ମଧ୍ୟରୁ ଅନ୍ୟତମ, ସେ ଶୈବ ତନ୍ତ୍ର ବିଧିରେ ଆରାଧିତ - ଶ୍ରୀକ୍ଷେତ୍ରସ୍ଥିତ ମହାବିଷ୍ଣୁ ଶ୍ରୀଜଗନ୍ନାଥଙ୍କୁ ଶିବ ବା ଭୈରବ ଭାବରେ ପୂଜାର୍ଚ୍ଚନା କରାଯିବା କିଭଳି ବିଧିସଙ୍ଗତ ?

**ଶ୍ରୀକ୍ଷେତ୍ରରେ ଶାକ୍ତ ବୈଷ୍ଣବ ପରମ୍ପରାର କ୍ରମ -** ପୁରାଣ ବର୍ଣ୍ଣନା ଅନୁସାରେ ଭଗବାନ ଶଙ୍କର ମହାରୁଦ୍ରରୂପ ଧାରଣ କରି ନିଜର ପ୍ରିୟପତ୍ନୀ ସତୀଙ୍କର ଶବକୁ ସ୍କନ୍ଧରେ ବହନ କରି ସାରା ପୃଥିବୀ ପରିକ୍ରମା କରୁଥିବା ସମୟରେ ଭଗବାନ ବିଷ୍ଣୁଙ୍କର ଚକ୍ରାୟୁଧଦ୍ୱାରା ଛିନ୍ନ ଭିନ୍ନ ହୋଇ ତାଙ୍କର ବିଭିନ୍ନ ଅଙ୍ଗ ଯେଉଁ ଯେଉଁ ସ୍ଥାନମାନଙ୍କରେ ପତିତ ହେଲା, ସେହି ସ୍ଥାନମାନଙ୍କରେ ସ୍ୱୟଂ ମହାଶକ୍ତି ଗୋଟିଏ ଗୋଟିଏ ଭୈରବୀ ରୂପରେ ଏବଂ ତାଙ୍କୁ ରକ୍ଷାକରିବା ପାଇଁ ଶିବ ଭିନ୍ନ ଭିନ୍ନ ରୂପରେ ଅବସ୍ଥାନ କଲେ । ସେହିସବୁ ପୀଠର ସଂଖ୍ୟା ୧୦୮ ଏବଂ ସେହି ସିଦ୍ଧପୀଠ ମଧ୍ୟରେ 'ବିମଳା ପୁରୁଷୋତ୍ତମେ' କଥା ମତ୍ସ୍ୟପୁରାଣ (୧୩.୩୫ ଶ୍ଳୋକ) ଓ ଦେବୀ ଭାଗବତରେ (ସପ୍ତମ ସ୍କନ୍ଧ, ୩୦ ଅଧ୍ୟାୟ) ସ୍ପଷ୍ଟଭାବରେ ଉଲ୍ଲେଖ ରହିଛି । ମା' ବିମଳାଙ୍କର ପୀଠ ହେଉଛି ପାଦ ପୀଠ, ଜିହ୍ୱା ପୀଠ ଓ କୁଣପ ପୀଠ । କେହି କେହି ଏହାକୁ ଜିହ୍ୱା ଜାନୁ ଓ ପାଦପୀଠ ଭାବେ ମଧ୍ୟ ଉପସ୍ଥାପନ କରନ୍ତି । ଏହିସବୁ ପୁରାଣ ବର୍ଣ୍ଣିତ ପୁରୁଷୋତ୍ତମ ଶବ୍ଦଟି ପୁରୁଷୋତ୍ତମ କ୍ଷେତ୍ର ଏବଂ କ୍ଷେତ୍ରସ୍ଥିତ ଭୈରବଙ୍କୁ ଶିବ ସ୍ୱରୂପ ଜଗନ୍ନାଥ ବୋଲି ପ୍ରତିପାଦନ କରୁଅଛି ।

ତନ୍ତ୍ରଶାସ୍ତ୍ରରେ ଦେବ ଦେବ ଶିବଙ୍କୁ 'ଜଗନ୍ନାଥ' ନାମରେ ବର୍ଣ୍ଣନା କରାଯାଇଥିବା କଥା ବହୁକ୍ଷେତ୍ରରେ ଦେଖାଯାଏ, ତହିଁର ଏକ ଉଦାହରଣ ସ୍ୱରୂପ 'ମୁଣ୍ଡମାଳା ତନ୍ତ୍ର'ରେ (ଅଧ୍ୟାୟ ୧- ଶ୍ଳୋକ ୨/୩) ଦେବୀ ପ୍ରକାଶ କରନ୍ତି -

'ଦେବ ଦେବ ମହାଦେବ ସୃଷ୍ଟି ସ୍ଥିତ୍ୟନ୍ତ କାରକ
ନୀଳକଣ୍ଠ ଜଗନ୍ନାଥ ପ୍ରଭୋ ଶଙ୍କର ଭୋ ହର !
ନମସ୍ତୁଭ୍ୟଂ ଜଗନ୍ନାଥ ମମନାଥାମରପ୍ରଭୋ
ଶରଣାଗତ ଦୀନାର୍ତ୍ତ ପରିତ୍ରାଣ ପରାୟଣ ।'

ଏହି ମୁଣ୍ଡମାଳାତନ୍ତ୍ର ବାମାଚାର ପ୍ରତିପାଦକ ଶିବପାର୍ବତୀ ସମ୍ବାଦାତ୍ମକ ଏକ ଗ୍ରନ୍ଥ । ଏଠାରେ ଦୁର୍ଗାଙ୍କର ପ୍ରାଣପ୍ରିୟ ମହାଦେବ ସ୍ୱରୂପୀ ଜଗନ୍ନାଥ ଶ୍ରୀକ୍ଷେତ୍ରସ୍ଥିତ କୌଣସି ପ୍ରାଚୀନ ଶିବ ହିଁ ହୋଇପାରନ୍ତି । ପରବର୍ତ୍ତୀ କାଳରେ ଶ୍ରୀକ୍ଷେତ୍ରରେ ଭୈରବ ଉପାସନା ପରମ୍ପରାର ଅବକ୍ଷୟରେ ଶ୍ରୀଜଗନ୍ନାଥ ଭୈରବ ଭାବରେ ବିବେଚିତ ହୋଇ ଆସୁଅଛନ୍ତି । ଏହି ପ୍ରସଙ୍ଗ ପ୍ରବନ୍ଧର ଶେଷାର୍ଦ୍ଧରେ ଉଲ୍ଲେଖ କରାଯାଇଛି ।

ଶ୍ରୀକ୍ଷେତ୍ର ପ୍ରଥମତଃ ଏକ ଶାକ୍ତ କ୍ଷେତ୍ର, ଶ୍ରୀ ଶଙ୍କରାଚାର୍ଯ୍ୟ ଅଷ୍ଟମ ଶତାବ୍ଦୀରେ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କୁ ଶିବ ଭାବରେ ଆରାଧନା କରୁଥିଲେ । ଏହା ପୂର୍ବରୁ ଶାକ୍ତ ବିଧିରେ ଶ୍ରୀମନ୍ଦିରରେ ଶ୍ରୀମହାଲକ୍ଷ୍ମୀ, ଶ୍ରୀମହାକାଳୀ ଓ ଶ୍ରୀମହାସରସ୍ୱତୀ ଏକତ୍ର ଆରାଧିତା ହେଉଥିଲେ । ପରିଦୃଶ୍ୟମାନ ଶ୍ରୀମନ୍ଦିରର ନିର୍ମାଣ କାଳରେ ଶ୍ରୀମହାଲକ୍ଷ୍ମୀ ଏବଂ ଶ୍ରୀମହାସରସ୍ୱତୀଙ୍କର ମନ୍ଦିର ପୃଥକ୍ ଭାବରେ ନିର୍ମିତ ହେବାରୁ ଶ୍ରୀମହାଲକ୍ଷ୍ମୀ ପୂର୍ବୋକ୍ତ ନାମରେ ପୂଜା ପାଉଥିବାବେଳେ ଶ୍ରୀମହାସରସ୍ୱତୀ ଶ୍ରୀବିମଳାଦେବୀ ନାମରେ ମାୟାବୀଜରେ ଆରାଧିତା ହେଉଅଛନ୍ତି । ଶ୍ରୀମହାକାଳୀ ଶ୍ରୀଦକ୍ଷିଣକାଳୀକା ନାମରେ ଶ୍ରୀମନ୍ଦିର ବେଢ଼ା ବାହାରେ ଅନ୍ୟ ଏକ ମନ୍ଦିରରେ ସ୍ଥାନିତ ହୋଇଛନ୍ତି ।

କଙ୍ଗୋଦ ରାଜ୍ୟାନ୍ତର୍ଗତ ନୀଳାଚଳ କ୍ଷେତ୍ରରେ ଶୈଳୋଦ୍ଭବ ବଂଶୀୟ ଶାସନ କାଳରେ (୫୭୫-୭୩୫ ଖ୍ରୀ:ଅ:)

ଆଦ୍ୟବିଷ୍ଣୁ ମାଧବ ବିଗ୍ରହଙ୍କର ଆରାଧନାର ପ୍ରଶସ୍ତି ଘଟିଥିଲା । 'ବ୍ରହ୍ମବୈବର୍ତ୍ତ ପୁରାଣ' ମାଧବଙ୍କର ବ୍ୟାଖ୍ୟା କରିବାକୁ ଯାଇ କହିଛନ୍ତି - ମୂଳ ଆଦ୍ୟାଶକ୍ତି ମହାଲକ୍ଷ୍ମୀ, ବେଦମାତା, ସରସ୍ୱତୀ, ରାଧା, ବସୁନ୍ଧରା, ଗଙ୍ଗା ଆଦି ସମସ୍ତ ଶକ୍ତିମାନଙ୍କର ସେ ସ୍ୱାମୀ, ତେଣୁ ତାଙ୍କର ନାମ ମାଧବ (ମା'ଙ୍କର ଧବ) । ଆଶ୍ୱିନ ଗୁଣ୍ଡିଚାରେ ଦୁର୍ଗାଙ୍କ ସହିତ, ଶରତ କାଳରେ ଲକ୍ଷ୍ମୀଙ୍କ ସହିତ, ନବଦିନରେ ଶ୍ରୀଙ୍କ ସହିତ ଏବଂ ତତ୍ତ୍ୱରେ ରାଧାଙ୍କ ସହିତ ଉପାସିତ ନିର୍ଗୁଣାତ୍ମକ ପ୍ରଭୁ ହିଁ ମାଧବ । ସେ ଧର୍ମ, ଅର୍ଥ, କାମ ଓ ମୋକ୍ଷର ଅଧୀଶ୍ୱର । ଦାରୁମାଧବ ଗଣଦେବତା ମଙ୍ଗଳାୟତନ ମୂର୍ତ୍ତି, ସେ ସମସ୍ତ ମାଙ୍ଗଳିକ କାର୍ଯ୍ୟରେ ଅଗ୍ରପୂଜ୍ୟ ଏବଂ ଗୁପ୍ତ ଭାବରେ ରତ୍ନସିଂହାସନ ଉପରେ ସେ ନିରବଚ୍ଛିନ୍ନ ଭାବରେ ପୂଜା ପାଉଅଛନ୍ତି । ଏହି ମାଧବ ହିଁ ଶ୍ରୀଜଗନ୍ନାଥଙ୍କର ଆଦ୍ୟରୂପ ।

ଶ୍ରୀମନ୍ଦିରର ଦକ୍ଷିଣ ପଶ୍ଚିମ କୋଣରେ ଶକ୍ତିପୀଠ ଉପରିସ୍ଥ ପ୍ରସ୍ଫୁଟିତ ପଦ୍ମ ଉପରେ କମନୀୟ ମଣି ବିଗ୍ରହ ମା ବିମଳା ଦଣ୍ଡାୟମାନ ଭଙ୍ଗୀରେ ବିରାଜିତା । ଦେବୀ ଚତୁର୍ହସ୍ତା ଏବଂ ତ୍ରିନେତ୍ରା । ଦେବୀଙ୍କର ଦକ୍ଷିଣ ନିମ୍ନ ହସ୍ତ ବରମୁଦ୍ରାଙ୍କିତ ଏବଂ ସେଥିରେ ମାଳାଧାରଣର ଚିହ୍ନ ବିଦ୍ୟମାନ, ଦକ୍ଷିଣ ଉପର ହସ୍ତ ଅଙ୍କୁଶ ଶୋଭିତ ଏବଂ ଅଙ୍କୁଶର ଉପରିଭାଗ ସର୍ପମସ୍ତକ ପରି ଭ୍ରମ ଜନ୍ମାଉଅଛି । ବାମ ଉପରେ ହସ୍ତରେ ନାଗପାଶ ଧରି ଥିବାର ସମ୍ଭାବନା କିନ୍ତୁ ନାଗର ମସ୍ତକ ମନୁଷ୍ୟ ମସ୍ତକର ଭ୍ରମ ଜନ୍ମାଉଅଛି, ବାମ ତଳ ହସ୍ତ ଅଭୟ ମୁଦ୍ରା ଶୋଭିତ ଥିଲେ ମଧ ହସ୍ତ ଉପରେ ଏକ ସୁବର୍ଣ୍ଣ ଓଲଟ ଫରୁଆ କୌଣସି ଏକ ପାତ୍ର ଉପରେ ଖଞ୍ଜାଯାଇଥିବା ପରି ବୋଧ ହେଉଅଛି । ଏ ସବୁ ଦୃଷ୍ଟିରୁ ଦେବୀ ବର, ପାଶ, ଅଙ୍କୁଶ ଓ ଅଭୟ ମୁଦ୍ରାରେ ଶୋଭିତ ଥିବାର ସମ୍ଭାବନା । ଦେବୀଙ୍କର ଦକ୍ଷିଣପାର୍ଶ୍ୱରେ ମାୟା ଓ ବାମ ପାର୍ଶ୍ୱରେ ଛାୟାଦେବୀ ବିରାଜିତା ।

**ଶାକ୍ତ ଶାରଦୀୟ ପୂଜା :** ଶ୍ରୀକ୍ଷେତ୍ରରେ ଶାରଦୀୟ ଗୁପ୍ତ ଗୁଣ୍ଡିଚା ଯାତ୍ରାର ଆରମ୍ଭକାଳ ନିରୂପଣ କରିବାକୁ ହେଲେ ଶ୍ରୀବିମଳା ଓ ଶ୍ରୀମାଧବଙ୍କର ଏହି କ୍ଷେତ୍ରରେ ପ୍ରକଟର ସମୟ ନିରୂପଣ ଏକାନ୍ତ ଆବଶ୍ୟକ । ଏହା ଏକ ଦୁରୂହ ବ୍ୟାପାର କିନ୍ତୁ ଏହା ଶ୍ରୀଶଙ୍କରାଚାର୍ଯ୍ୟଙ୍କର ପୂର୍ବବର୍ତ୍ତୀ କାଳର । ତେଣୁ ଶାରଦୀୟ ଶାକ୍ତ ଗୁଣ୍ଡିଚା ଯାତ୍ରା ଜଗନ୍ନାଥଙ୍କ ବର୍ତ୍ତମାନର ରଥଯାତ୍ରା ବା ଗୁଣ୍ଡିଚାଯତ୍ରାଠାରୁ ବହୁ ପୁରାତନ ।

**ଆଶ୍ୱିନ କୃଷ୍ଣ ଅଷ୍ଟମୀ, ମୂଳାଷ୍ଟମୀ ଦିନଠାରୁ ଆଶ୍ୱିନ ଶୁକ୍ଳ ଅଷ୍ଟମୀ, ମହାଷ୍ଟମୀ ପର୍ଯ୍ୟନ୍ତ ଶାକ୍ତ ଶାରଦୀୟ ପୂଜା ଅନୁଷ୍ଠିତ ହୁଏ, ତେବେ ମହାନବମୀ ପୂଜା ମଧ ଏହାର ବର୍ଦ୍ଧିତ ବ୍ୟବସ୍ଥା । ଏହା ତ୍ରିକାଳ ପୂଜା (ସକାଳ, ମଧ୍ୟାହ୍ନ ଏବଂ ସନ୍ଧ୍ୟା) ଏବଂ ଏଥିପାଇଁ ତିନିଗୋଟି ସଂକଳ୍ପ କରାଯାଏ,** ମୂଳାଷ୍ଟମୀରୁ ମହାଷ୍ଟମୀ ପୂଜା ପାଇଁ ଗୋଟିଏ ସଂକଳ୍ପ, ସପ୍ତମୀ, ଅଷ୍ଟମୀ ଓ ନବମୀ ପୂଜା ପାଇଁ ଗୋଟିଏ ସଂକଳ୍ପ ଏବଂ ଅଷ୍ଟମୀ ଦିନ ଅଷ୍ଟମୀ ଓ ନବମୀ ପୂଜା ପାଇଁ ଅନ୍ୟ ଏକ ସଂକଳ୍ପ, ଶେଷ ଦୁଇଟି ସଂକଳ୍ପ ଅତିରିକ୍ତ ମହାପୂଜା ପାଇଁ ଉଦ୍ଦିଷ୍ଟ । ବର୍ଷର ଅନ୍ୟ ସମସ୍ତ ଦିନରେ ଶ୍ରୀଜଗନ୍ନାଥଙ୍କୁ ଷୋଡ଼ଶ ଉପଚାରରେ ତୁଳସୀ ପଡ଼ି ହେଉଥିବା ନୈବେଦ୍ୟ ମା' ବିମଳାଙ୍କୁ କେବଳ ସମର୍ପଣ କରାଯାଉଥିବା ବେଳେ ଏହି ନିର୍ଦ୍ଦିଷ୍ଟ ୧୬ ଦିନ ତାହାକୁ ବିମଳାଙ୍କଠାରେ ପୁନର୍ବାର ଷୋଡ଼ଶ ଉପଚାରରେ ବେଲପତ୍ର ପକାଇ ନୈବେଦ୍ୟ କରାଯାଏ । ଏହା ଶ୍ରୀକ୍ଷେତ୍ରରେ ଶାକ୍ତ ବୈଷ୍ଣବ ପୂଜା ବିଧାନର ଏକ ସମନ୍ୱିତ ପରମ୍ପରା । ଏହି ଦିନମାନଙ୍କରେ ପ୍ରଶାସନ ତରଫରୁ କିଛି ଅଧିକ ଭୋଗର ବ୍ୟବସ୍ଥା କରାଯାଇଥାଏ । ଶେଷ ତିନିଦିନ ଅର୍ଥାତ୍ ସପ୍ତମୀ, ଅଷ୍ଟମୀ ଓ ନବମୀରେ ଅସ୍ଥାୟୀ ରୋଷଘରେ ତିଆରି ହୋଇ ଖେଚେଡ଼ି, କ୍ଷିରୀ, ପଖାଳ, ଭଜା ଓ ମାଛ ତରକାରୀ ଶ୍ରୀଜୀଉଙ୍କ ପହୁଡ଼ ପରେ ଓ ଦେବୀଙ୍କ ସନ୍ଧ୍ୟା ଧୂପ ପରେ ଭୋଗ ଲଗାଯାଏ ।

**ଦେବୀଙ୍କ ଷୋଳପୂଜାରେ ବିବିଧ ବେଶ ବ୍ୟବସ୍ଥା -** ବନଦୁର୍ଗା, ବେଶ, ଭୁବନେଶ୍ୱରୀ ବେଶ, ନାରାୟଣୀ ବେଶ, ବଗଳା ବେଶ, ରାଜରାଜେଶ୍ୱରୀ ବେଶ, ହରଚଣ୍ଡୀ ବେଶ ଓ ସିଂହବାହିନୀ ବେଶ । ଦେବୀ ଷୋଳପୂଜାରେ ପରିଧାନ କରୁଥିବା ବିଭିନ୍ନ ସ୍ୱର୍ଣ୍ଣାଭରଣ - ତ୍ରିମୁଣ୍ଡିଆ କମରପଟି-୧, ଝୋବା ଗଣ୍ଡି-୪, ୫୭ କଡ଼ି ବିଶିଷ୍ଟ ସୁଉକି ମାଳି-୧, ଚମ୍ପାକଡ଼ି ମାଳି-୧, ସାନମୁଣ୍ଡ ମାଳି-୧, ଚାଳିଶ ମୁଣ୍ଡ ବିଶିଷ୍ଟ କୁରୁଜାତକ ମାଳି-୧, ୨୭ ମୁଣ୍ଡ ବିଶିଷ୍ଟ ବଡ଼ ମୁଣ୍ଡ ମାଳି-୧, ନୋଥ-୧, ଅଷ୍ଟରତ୍ନ ଗୁଆ-୧, ଉପଚାର-୧, ୧୬ଟି ସେବତୀ ଯୁକ୍ତ ସେବତୀ ହାର-୧, ପଦ୍ମହାର-୫, ରୂପା ପଦ୍ମହାର-୧ ।

**ଶ୍ରୀଦୁର୍ଗାମାଧବ ଉପାସନା :** ମା' ବିମଳାଙ୍କର ଷୋଳପୂଜାର ଅନନ୍ୟ ପରିକଳ୍ପନା ହେଉଛି ଶ୍ରୀଦୁର୍ଗାମାଧବ ଉପାସନା । ଏହି ପୂଜାରେ ଶ୍ରୀବିମଳାଙ୍କର ଚଳନ୍ତି ପ୍ରତିମା କନକଦୁର୍ଗା ଶ୍ରୀମନ୍ଦିରର ଭଣ୍ଡାର ଗୃହରୁ ଏବଂ ଶ୍ରୀମାଧବ ରତ୍ନ ସିଂହାସନ ଉପରୁ ଆସି ବିମଳାଙ୍କ ମନ୍ଦିରସ୍ଥିତ ଖଟ ଉପରେ ଏକତ୍ର ରୁନ୍ଧା ହୋଇ ବସି ଭକ୍ତମାନଙ୍କୁ ଦର୍ଶନ ଦିଅନ୍ତି । ବିମଳା ଠାକୁରାଣୀଙ୍କଠାରେ ତିନି ଧୂପ ବଢ଼ିବା ପରେ ଏବଂ ମନ୍ଦିର ଗର୍ଭ ଗୃହରେ ରାତ୍ର ଚନ୍ଦନଲାଗି ଶେଷ ହେବା ପରେ ସ୍ୱ ସ୍ୱ ସ୍ଥାନକୁ ପ୍ରତ୍ୟାବର୍ତ୍ତନ କରନ୍ତି । ଏହି ବିଧିର ଏକ ଅନନ୍ୟ ସ୍ୱାତନ୍ତ୍ର୍ୟ ହେଲା - ଷୋଳପୂଜାର ପ୍ରଥମ ଆଠଦିନ ଶ୍ରୀଦୁର୍ଗାମାଧବ ଶ୍ରୀବିମଳାଙ୍କ ମନ୍ଦିରରେ ଉପବେଶନ କରୁଥିବାବେଳେ ଶେଷ ଆଠଦିନ ରୁନ୍ଧାବସ୍ଥାରେ ରଥାକୃତି ବିମାନରେ

ବସି ଦୋଳମଣ୍ଡପ ସାହିସ୍ଥିତ ଶ୍ରୀନାରାୟଣୀଙ୍କ ମନ୍ଦିରକୁ ବିଜେ କରି ସେଠାରେ ଖଟ ଉପରେ ଜଳଲାଗି, ବନ୍ଦାପନା, ଭୋଗଲାଗି ହୋଇ ଶ୍ରୀମନ୍ଦିରର ରାତ୍ର ଚନ୍ଦନଲାଗି ପରେ ସ୍ୱସ୍ଥାନକୁ ଫେରି ଆସନ୍ତି । ଏହାର ଅନ୍ୟନାମ ଶାକ୍ତ ଗୁଣ୍ଡିଚା ଓ ଗୁପ୍ତ ଗୁଣ୍ଡିଚା । ଏହିଠାରେ ଜନମାନସରେ ସଂଶୟ ଜାଗେ - ଲକ୍ଷ୍ମୀପତି ବିଷ୍ଣୁଙ୍କ ସହିତ ଶିବପତ୍ନୀ ଦୁର୍ଗା କିଭଳି ଏକତ୍ର ରୁନ୍ଧା ହୁଅନ୍ତି । ଶ୍ରୀକ୍ଷେତ୍ରରେ ହରି ଓ ହର ଅଭିନ୍ନ, ସେ ହରିହର ପୁରୁଷୋତ୍ତମ, ବିଷ୍ଣୁଙ୍କର ଶରୀର - ମସ୍ତକରେ ଅନନ୍ତ - ହୃଦସ୍ଥଳରେ ଜଗଜ୍ଜନନୀ - ସେ ଲକ୍ଷ୍ମୀନୃସିଂହ, ସେ ଅଦ୍ୱିତୀୟ ଏକକ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର, ଶୈବଶାକ୍ତ ବୈଷ୍ଣବ ଉପାସନାର ସମନ୍ୱିତ ବିଗ୍ରହ । ତେଣୁ ଏଭଳି ଏକ ପାରମ୍ପରିକ ବିଧାନ ଶ୍ରୀକ୍ଷେତ୍ରରେ ଶ୍ରୀଦୁର୍ଗାମାଧବଙ୍କର ଏକ ଅନନ୍ୟ 'ଭ୍ରାମଣୀ' ।

**ଶ୍ରୀକ୍ଷେତ୍ରରେ ଅନୁସୃତ ଶକ୍ତି ପରମ୍ପରାର କ୍ରମ -** ଶକ୍ତିମୟୀ ଦେବୀଙ୍କର ଆରାଧନା ଶୈଳୀ ପ୍ରାୟତଃ ତନ୍ତ୍ର ଶାସ୍ତ୍ର ସମ୍ମତ । ତନ୍ତ୍ର ଶାସ୍ତ୍ରର ଅନ୍ୟନାମ ଆଗମ । 'ଆଗତଂ ଶିବବକ୍ତ୍ରାଦ୍ ଗତଂ ତୁ ଗିରିଜା ମୁଖେ, ମତଂ ଚ ବାସୁଦେବସ୍ୟ ତସ୍ମାଦାଗମ ଉଚ୍ୟତେ ।' ଶଙ୍କରଙ୍କର ମୁଖପଦ୍ମରୁ ନିସୃତ ହୋଇ ଗିରିଜାଙ୍କ କର୍ଣ୍ଣ ମଧ୍ୟରେ ପ୍ରବେଶ କରୁଥିବାରୁ ଏବଂ ଏହି ମତ ନାରାୟଣ ବାସୁଦେବଙ୍କର ଅଭିମତ ହୋଇଥିବାରୁ ଏହାକୁ ଆଗମ କୁହାଯାଏ । 'ଆଗମ'ର ଅନ୍ୟ ଏକ ଅର୍ଥ ହେଉଛି 'ଆ ସମନ୍ତାଦ୍ ଭାବେନ ଗମୟତୀତି ଆଗମଃ ।' ଯେଉଁ ବିଜ୍ଞାନ ଆମକୁ ସମସ୍ତ ଭେଦଭାବରୁ ବିରତ କରାଇ, ଜଡ଼ତାକୁ ଦୂରୀଭୂତ କରି, ସର୍ବୋତ୍କୃଷ୍ଟ ଗନ୍ତବ୍ୟ ବିନ୍ଦୁକୁ ନେଇଯାଏ, ତାହାର ନାମ ଆଗମ ।

ଆଚାର ଓ ବିଚାର ଦୃଷ୍ଟିରୁ ତନ୍ତ୍ର ଦୁଇ ପ୍ରକାର - ଯଥା- ବେଦାନୁକୂଳ ଏବଂ ବେଦ ପ୍ରତିକୂଳ । ବେଦାନକୂଳ ତନ୍ତ୍ର ପୁଣି ତିନି ଭାଗରେ ବିଭକ୍ତ - (୧) ବୈଷ୍ଣବାଗମ, (୨) ଶୈବାଗମ, (୩) ଶାକ୍ତାଗମ । ଶକ୍ତି ଆରାଧନାର ମାର୍ଗ ଶାକ୍ତାଗମ ପୁନଶ୍ଚ ଦୁଇ ପ୍ରକାରର, ତହିଁର ଭେଦ ହେଉଛି ଦକ୍ଷିଣାଚାର ଓ ବାମାଚାର । ଏ ମଧ୍ୟରୁ ବାମାଚାର ବିଧିବେଦ ପ୍ରତିକୂଳ, ତେଣୁ ଶ୍ରୀକ୍ଷେତ୍ରରେ ତାହା ଗ୍ରହଣୀୟ ହୋଇପାରିନାହିଁ । ତନ୍ତ୍ରଶାସ୍ତ୍ରରେ ଶାକ୍ତ ତାନ୍ତ୍ରିକର ଦୈନନ୍ଦିନ ଧ୍ୟାନ, କର୍ମ ଓ ଆଚରଣ ବିଧିର ବର୍ଣ୍ଣନା ସହ ଶକ୍ତି ପୂଜାର ନିମ୍ନଲିଖିତ କ୍ରମ ନିର୍ଦ୍ଦିଷ୍ଟ କରାଯାଇଅଛି । ଯଥା- ସଂକଳ୍ପ, ଦେବୀ ଗାୟତ୍ରୀ, ସାମାନ୍ୟାର୍ଘ୍ୟ ସଂସ୍କାର, ଆସନ ଶୁଦ୍ଧି, ପ୍ରଣବ ନ୍ୟାସ, ଭୂତ ଶୁଦ୍ଧି, ପ୍ରାଣ ପ୍ରତିଷ୍ଠା, ମାତୃକା ନ୍ୟାସ, ବର୍ହିମାତୃକା ନ୍ୟାସ, ଶ୍ରୀକଣ୍ଠବିନ୍ୟାସ, କଳାନ୍ୟାସ, ଷୋଢ଼ାନ୍ୟାସ, ସପ୍ତପଦ ନ୍ୟାସ, ଅକ୍ଷର ନ୍ୟାସ, ବର୍ଣ୍ଣ ନ୍ୟାସ, ତତ୍ତ୍ୱ ନ୍ୟାସ, ବୀଜ ନ୍ୟାସ, ବ୍ୟାପକ ନ୍ୟାସ, ପୀଠ ନ୍ୟାସ, ଘଟସ୍ଥାପନ ବିଧି, ମହାକାଳୀ ପୂଜାରେ - କୃଷ୍ଣ ଶାପ ବିମୋଚନ ବିଧି, ପଞ୍ଚରତ୍ନ ପୂଜା, ଆନନ୍ଦ ଭୈରବ ପୂଜା, ଅକଥାଦି ନ୍ୟାସ, ସ୍ୱପ୍ନାବତୀ ପୂଜା, ଗାୟତ୍ରୀ ପୂଜା, ପାତ୍ର ସ୍ଥାପନ ବିଧି, ଷୋଡ଼ଶ କଳା ପୂଜା, ବ୍ରହ୍ମା ପୂଜା, ବିଷ୍ଣୁ ପୂଜା, ଲକ୍ଷ୍ମୀ ପୂଜା, ତ୍ର୍ୟମ୍ବକ ପୂଜା, ଅମ୍ବିକା ପୂଜା, ଶକ୍ତି ସଂସ୍କାର, ନ୍ୟାସ ଜାଲ, ବଟୁକ ସଂସ୍କାର, ପୂର୍ଣ୍ଣା ସଂସ୍କାର, ତର୍ପଣ, ବିନ୍ଦୁ ସ୍ୱୀକାର । ବଳି ବିଧାନ, ଉପଚାର ପ୍ରଦାନ, ଆବରଣ ପୂଜା, ମହାକାଳୀଙ୍କୁ ବଳିଦାନ ଇତ୍ୟାଦି ଶକ୍ତି ପୂଜନର ସମସ୍ତ କ୍ରମ ଏବଂ ବିଧି ବ୍ୟବସ୍ଥା ପ୍ରାଞ୍ଜଳ ଭାବେ ଉପସ୍ଥାପନ କରାଯାଇଅଛି ।

**ଶ୍ରୀକ୍ଷେତ୍ରର କ୍ଷେତ୍ରେଶ୍ୱରୀ ବିମଳା ଏବଂ କ୍ଷେତ୍ରେଶ୍ୱର କ୍ଷେତ୍ରପାଳେଶ୍ୱର -** ଯଯାତି କେଶରୀଙ୍କ ପୂର୍ବରୁ ବୌଦ୍ଧ ବଜ୍ରଯାନର ପ୍ରଭାବରେ ଶ୍ରୀ ବିମଳା ଦେବୀ ଭୈରବୀ ରୂପରେ ଶ୍ରୀକ୍ଷେତ୍ରରେ କ୍ଷେତ୍ରେଶ୍ୱରୀ ଭାବରେ ପୂଜା ପାଇବା ଫଳରେ ତତ୍ରତ୍ୟ କ୍ଷେତ୍ରେଶ୍ୱର ଭୈରବଙ୍କର ସ୍ଥିତି ଆବଶ୍ୟକ ହେଲା । ଶ୍ରୀଜଗନ୍ନାଥଙ୍କୁ 'ଜଗନ୍ନାଥସ୍ତୁ ଭୈରବ' ଆଖ୍ୟା ଦେଲେ ମଧ୍ୟ କେହି ତାଙ୍କୁ କ୍ଷେତ୍ରେଶ୍ୱର ବା କ୍ଷେତ୍ରପାଳ ଭାବରେ ଉପସ୍ଥାପିତ କରି ନାହାନ୍ତି । ତେବେ ସେହି କ୍ଷେତ୍ରେଶ୍ୱର ଭୈରବ ଏବେ କେଉଁଠାରେ ? ଏହି ପ୍ରଶ୍ନର ଉତ୍ତର ଖୋଜିବାକୁ ଯିବାବେଳେ ମୁକ୍ତିମଣ୍ଡପର ପଶ୍ଚାଦ୍‌ଭାଗରେ ଦକ୍ଷିଣାଭିମୁଖୀ ଶିବ ମନ୍ଦିରକୁ ଆମକୁ ଯିବାକୁ ପଡ଼ିବ, ସେହି ଶିବଙ୍କ ନାମ ଶ୍ରୀକ୍ଷେତ୍ରପାଳ, ସେ ଶ୍ରୀକ୍ଷେତ୍ରର ରକ୍ଷକ, ସେ ଶ୍ରୀକ୍ଷେତ୍ରେଶ୍ୱର । ତାଙ୍କ ମନ୍ଦିରରେ ନନ୍ଦୀ, ଭୃକୁଟୀ, ବୃଷଭ ବା କୀର୍ତ୍ତିମୁଖ କେହି ନାହାନ୍ତି । ତାଙ୍କ ମନ୍ଦିରରେ କୀର୍ତ୍ତିମୁଖଙ୍କ ସ୍ଥାନରେ ମା' ମହାଲକ୍ଷ୍ମୀ ଏବଂ ଦୁଇ ପାର୍ଶ୍ୱରେ ଜୟ ଓ ବିଜୟ । ତେଣୁ ବର୍ତ୍ତମାନର ଶ୍ରୀମନ୍ଦିର ନିର୍ମାଣ ପୂର୍ବରୁ ଏହି ମନ୍ଦିର କ୍ଷେତ୍ରପାଳ ଭୈରବଙ୍କର ଦକ୍ଷିଣାଭିମୁଖୀ ମନ୍ଦିର ଥିଲା, କାଳର କବଳରେ ଭୈରବ ଭୈରବୀ ଉପାସନାର ମହତ୍ୱ ହ୍ରାସ ପାଇ ବର୍ତ୍ତମାନ ଶ୍ରୀବିମଳା ଦେବୀଙ୍କୁ ଭୈରବୀ ଏବଂ ଶ୍ରୀଜଗନ୍ନାଥଙ୍କୁ ଭୈରବ ଆଖ୍ୟା ଦିଆଯାଇଅଛି ।

**ଶ୍ରୀକ୍ଷେତ୍ରରେ ଶାରଦୀୟ ଦୁର୍ଗୋତ୍ସବରେ ଦୁର୍ଗାମାଧବ ଉପାସନା ଏକ ଅନନ୍ୟ ପରିକଳ୍ପନା ।** ଏହି ପାବନ କ୍ଷେତ୍ରରେ ସତ୍ୟ, ଦୟା, କ୍ଷମାର ଅବତାର ରାଜରାଜେଶ୍ୱରୀ କ୍ଷେତ୍ରେଶ୍ୱରୀ ମା' ବିମଳାଙ୍କ ସମ୍ମୁଖରେ ପବିତ୍ର ଦଶହରାର ବିଜୟ ଦିବସରେ କାମ, କ୍ରୋଧ, ମୋହ, ମାୟା, ଈର୍ଷା ଓ ଅସୂୟା ଆଦି ମାନବିକ ଦୋଷ ଦୁର୍ବଳତାକୁ ଅର୍ପଣ କରି ଦେଇ, ତାଙ୍କ ପଦାରବିନ୍ଦରେ ଶରଣ ନେଇ, ପାପତାପ ଭରା ସଂସାରରୁ ତ୍ରାହି ନିମନ୍ତେ ଭକ୍ତ ପ୍ରାର୍ଥନା କରେ - 'ତ୍ରାହିମାଂ ବିମଳେ ସଦା ସୁଖକରୀ ଶ୍ରୀକ୍ଷେତ୍ରରାଜେଶ୍ୱରୀ ।'

ଶ୍ରୀମନ୍ଦିର ପୁରୋହିତ
ପ୍ରତିହାରୀ ଲେନ୍, ମାଟିମଣ୍ଡପ ସାହି, ପୁରୀ




# ସୁଭଦ୍ରା ହିଁ ଦୁର୍ଗା

ଡକ୍ଟର ଜନ୍ମେଜୟ ଚୌଧୁରୀ

**ବୌ**ଦ୍ଧମାନଙ୍କ 'ତାରାତନ୍ତ୍ର'ରେ ବୁଦ୍ଧଙ୍କୁ 'ମହାଭୈରବ' ଏବଂ 'ବିଷ୍ଣୁ' ଭାବରେ ବର୍ଣ୍ଣନା କରାଯାଇଛି । ତାରା ହେଉଛନ୍ତି ବୁଦ୍ଧଙ୍କର ଶକ୍ତି । ସୁତରାଂ ଓଡ଼ିଶାର ତତ୍କାଳୀନ ତାନ୍ତ୍ରିକମାନେ ବୁଦ୍ଧଙ୍କ ସହିତ ଭୈରବଙ୍କୁ ଏବଂ ତାରାଙ୍କ ସହିତ ଶକ୍ତି ସ୍ୱରୂପିଣୀ ସ୍ତମ୍ଭେଶ୍ୱରୀଙ୍କୁ ଗ୍ରହଣ କରି ସେହି ମିଶ୍ରିତ ପଦ୍ଧତିରେ ତାଙ୍କର ଉପାସନା କରୁଥିଲେ । ଓଡ଼ିଶାରେ 'ବଜ୍ରଯାନ' ତଥା 'ତାରାତନ୍ତ୍ର'କୁ ଆଧାର କରି ଶିବ ଓ ଶକ୍ତିର ଏକତ୍ୱ ପ୍ରତିପାଦିତ ହୋଇ ସେଥିରୁ ବଜ୍ର ସ୍ୱରୂପିଣୀ ବିଗ୍ରହଙ୍କ ଉଦ୍‌ଭାବନା ଏବଂ ପ୍ରାଚୀନ କାଳରୁ ଆରଣ୍ୟକମାନଙ୍କ ପ୍ରତିଷ୍ଠିତ ଦେବୀ 'ସ୍ତମ୍ଭେଶ୍ୱରୀ'ଙ୍କ ଉପାସନା ପ୍ରବର୍ତ୍ତିତ ହେଲା । ଭୌମକର ରାଜବଂଶର ରାଜାମାନେ ଅଷ୍ଟମ ଶତାବ୍ଦୀରେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇ ଓଡ଼ିଶାର ଉପକୂଳ ଅଞ୍ଚଳରେ ବୌଦ୍ଧଧର୍ମର ବିକାଶ ସାଧନ କରିଥିଲେ । କିନ୍ତୁ ତାଙ୍କ ଅଧୀନରେ ଅନେକ ବିଜ୍ଞ ପଣ୍ଡିତ ରାଜସଭା ମଣ୍ଡନ କରି ଧର୍ମ ଚର୍ଚ୍ଚାରେ ରାଜାମାନଙ୍କୁ ପ୍ରଭାବିତ କରିବା ଫଳରେ ଖ୍ରୀ:୯ମ ଶତାବ୍ଦୀରେ ମହାଯାନୀ ବୌଦ୍ଧମାନଙ୍କ 'ତନ୍ତ୍ରଯାନ' ଏବଂ ବ୍ରାହ୍ମଣମାନଙ୍କ ଶକ୍ତି ଉପାସନା ସମ୍ମିଳିତ ହୋଇ ଏକ ନୂତନ ଧର୍ମର ଅଭ୍ୟୁଦୟ ହେଲା । ତାହାର ଫଳ ସ୍ୱରୂପ ବୌଦ୍ଧ ଧର୍ମାନ୍ତର୍ଗତ ତାରାଙ୍କୁ ଦୁର୍ଗା ବା ଶକ୍ତି ସ୍ୱରୂପିଣୀ ଦେବୀଙ୍କୁ ବିଭିନ୍ନ ନାମରେ ପରିଚିତ କରାଗଲା । ତାନ୍ତ୍ରିକ ବ୍ରାହ୍ମଣ ସମ୍ପ୍ରଦାୟ ସେହି ଧର୍ମ ଗ୍ରହଣ କଲେ ।

ଖ୍ରୀ:୪ର୍ଥ ବା ୫ମ ଶତାବ୍ଦୀରୁ ଆରମ୍ଭ କରି ଓଡ଼ିଶାର ସମଗ୍ର ପଶ୍ଚିମାଞ୍ଚଳରେ ସ୍ତମ୍ଭେଶ୍ୱରୀ ଏକ ପ୍ରସିଦ୍ଧ ଦେବୀ ରୂପେ ପୂଜିତା ହେଉଥିଲେ । ଖ୍ରୀ:୧୦ମ ଏବଂ ୧୧ଶ ଶତାବ୍ଦୀରେ ଦେବୀ ରୂପିଣୀ ସ୍ତମ୍ଭେଶ୍ୱରୀଙ୍କ ମନ୍ଦିରଟି ସୋମବଂଶୀ ରାଜାମାନଙ୍କ ରାଜଧାନୀ ସୁବର୍ଣ୍ଣପୁରଠାରେ ତେଲ ଓ ମହାନଦୀର ସଙ୍ଗମସ୍ଥଳରେ ସ୍ଥାପିତ ହୋଇଥିଲା । ପରବର୍ତ୍ତୀ କାଳରେ ସୋମବଂଶୀୟ ରାଜାମାନେ ଏବଂ ଭଞ୍ଜବଂଶୀୟ ରାଜାମାନେ ମଧ୍ୟ ସ୍ତମ୍ଭେଶ୍ୱରୀଙ୍କୁ ଇଷ୍ଟଦେବୀ ରୂପେ ଆରାଧନା କଲେ । ଅତି ପ୍ରାଚୀନକାଳରୁ ମଧ୍ୟ ଓଡ଼ିଶାର ଘଞ୍ଚ ଜଙ୍ଗଲ ମଧ୍ୟରେ ବାସ କରିଥିବା ଆଦିବାସୀମାନେ ଏକ କାଷ୍ଠ ସ୍ତମ୍ଭରେ ମନୁଷ୍ୟକୁ ବାନ୍ଧି ତାଙ୍କ ଦେବତାଙ୍କ ଉଦ୍ଦେଶ୍ୟରେ ନରବଳି ଦେଉଥିଲେ । ଏହି ଯୂପସ୍ତମ୍ଭକୁ 'ଗୁପ୍ତଯୁଗ'ରେ ଇଷ୍ଟଦେବୀ ରୂପେ ଗ୍ରହଣ କରାଗଲା । ଏହି ଗୁପ୍ତଯୁଗର ବ୍ରାହ୍ମଣ ପଣ୍ଡିତମାନେ ସେହି ସ୍ତମ୍ଭାକୃତି ଯୂପସ୍ତମ୍ଭକୁ ବିଶିଷ୍ଟା ଦେବୀ 'ସ୍ତମ୍ଭେଶ୍ୱରୀ' ଭାବରେ ଗ୍ରହଣ କଲେ । ବାସ୍ତବରେ, ସ୍ତମ୍ଭାକାରରେ ଏକ ପ୍ରସ୍ତର ବା କାଷ୍ଠ ନିର୍ମିତ ଦେବୀଙ୍କୁ ଉତ୍କଳର ତାନ୍ତ୍ରିକମାନେ ଉପାସନା କରୁଥିଲେ । ଓଡ଼ିଶା ବ୍ୟତୀତ ଭାରତର କୌଣସି ସ୍ଥାନରେ ସ୍ତମ୍ଭେଶ୍ୱରୀ ଉପାସିତ ହେବାର ସୂଚନା ନାହିଁ । ଏହି ଦୃଷ୍ଟିକୋଣରୁ ଦେଖିଲେ ଓଡ଼ିଶାରେ ଶ୍ରୀମନ୍ଦିରରେ ଦେବୀ ସୁଭଦ୍ରା ସ୍ତମ୍ଭାକୃତି ଅଟନ୍ତି । ଖ୍ରୀଷ୍ଟ ତ୍ରୟୋଦଶ ଶତାବ୍ଦୀ ପରେ ଶ୍ରୀମନ୍ଦିରରେ ଯେତେବେଳେ ପ୍ରସ୍ତର ନିର୍ମିତ ହସ୍ତ ପଦଯୁକ୍ତ ବିଗ୍ରହଙ୍କ ପରିବର୍ତ୍ତେ ଦାରୁମୂର୍ତ୍ତି ପ୍ରତିଷ୍ଠିତ ହେଲେ, ସେତେବେଳେ 'ସ୍ତମ୍ଭେଶ୍ୱରୀ' ଉପାସନାକୁ ଲକ୍ଷ୍ୟ କରି ଦେବଦେବୀଙ୍କ ମୂର୍ତ୍ତି ହସ୍ତପଦ ବିହୀନ କରି ଗଠନ ହୋଇଥିଲା ଓ ଦେବୀ ସୁଭଦ୍ରା ସ୍ତମ୍ଭାକୃତି ସଦୃଶା ହୋଇଥିଲେ । ବୌଦ୍ଧଧର୍ମର ବିକାଶ ବେଳେ ତାନ୍ତ୍ରିକ ବିଧିରେ ଏସବୁ ଦେବଦେବୀଙ୍କର ପୂଜା ସମାହିତ ହେଉଥିଲା । ମାତ୍ର ପରେ ସେହି ପଦ୍ଧତି ସଂଶୋଧିତ ଆକାରରେ ତାନ୍ତ୍ରିକ-ଶୈବ ଓ ତାନ୍ତ୍ରିକ-ବୈଷ୍ଣବ ଧର୍ମର ଅଭ୍ୟୁଦୟ କରାଇଲା । ଏ ସମୟରେ 'ଭାଗବତ ପୁରାଣ'କୁ ଭିତ୍ତିକରି ବିଷ୍ଣୁ ମାଧବଙ୍କ ସ୍ଥାନରେ କୃଷ୍ଣ ବାସୁଦେବ, ଶିବ ଭୈରବଙ୍କ ସ୍ଥାନରେ ଶଙ୍କର୍ଷଣ ବଳରାମ ଏବଂ ସ୍ତମ୍ଭେଶ୍ୱରୀଙ୍କ ସ୍ଥାନରେ ସୁଭଦ୍ରାଙ୍କୁ ଓଡ଼ିଶାର ଉପକୂଳ ଅଞ୍ଚଳରେ ପ୍ରତିଷ୍ଠିତ କରାଯାଇଥିଲା ।

ଓଡ଼ିଶା ବ୍ୟତୀତ ଭାରତର କୌଣସି ସ୍ଥାନରେ ସ୍ତମ୍ଭେଶ୍ୱରୀ ଉପାସିତ ହେବାର ସୂଚନା ନାହିଁ । ଏହି ଦୃଷ୍ଟିକୋଣରୁ ଦେଖିଲେ ଓଡ଼ିଶାରେ ଶ୍ରୀମନ୍ଦିରରେ ଦେବୀ ସୁଭଦ୍ରା ସ୍ତମ୍ଭାକୃତି ଅଟନ୍ତି ।

ବରାହ ମିହିର ସୁଭଦ୍ରାଙ୍କୁ ଏକାନଂଶା ନାମରେ ଅଭିହିତ କରି ତାଙ୍କୁ ଦ୍ୱିଭୁଜା ଏବଂ ଚତୁର୍ଭୁଜା ଦେବୀ ଭାବରେ ଗ୍ରହଣ କରି ତାଙ୍କର ସ୍ଥିତି କୃଷ୍ଣ ଓ ବଳରାମଙ୍କ ମଧ୍ୟରେ ବୋଲି ମୂର୍ତ୍ତିତତ୍ତ୍ୱ ଦୃଷ୍ଟିକୋଣରୁ ବ୍ୟାଖ୍ୟା କରିଥିଲେ । ଏହି ଦୃଷ୍ଟିକୋଣରୁ ଦେବୀ ସୁଭଦ୍ରାଙ୍କର ଶ୍ରୀମନ୍ଦିରରେ ଆସ୍ଥାନ ବୋଲି ଅନୁମାନ କରାଯାଏ । ଖ୍ରୀ:୧୩ଶ ଶତାବ୍ଦୀ ଶେଷରେ ମହାରାଜା ନରସିଂହ ଦେବଙ୍କ ସମୟରେ ଯେତେବେଳେ କୌଣସି ବିଶିଷ୍ଟ କାରଣରୁ ସେହି ମୂର୍ତ୍ତିମାନଙ୍କ ପ୍ରସ୍ତର ରୂପ ପରିବର୍ତ୍ତେ ଦାରୁରେ ନିର୍ମିତ ହେଲେ, ସେତେବେଳେ ଆଦିବାସୀ ଶବରମାନଙ୍କ ପୂଜିତ ଦେବଦେବୀଙ୍କ ମୂର୍ତ୍ତି ଅନୁରୂପରେ ସୁଭଦ୍ରାଙ୍କୁ ଦେବୀ ସ୍ତମ୍ଭେଶ୍ୱରୀଙ୍କ ପ୍ରାଚୀନ ରୂପ ଦିଆଗଲା । ସେ ଦୁର୍ଗାରୂପିଣୀ ଦେବୀ ହୋଇଥିଲେ ମଧ୍ୟ ବିଷ୍ଣୁ ମନ୍ଦିରରେ ରହି ତାନ୍ତ୍ରିକ ଉପାସନାର ବିଧିବିଧାନରୁ ସ୍ୱତନ୍ତ୍ର ହୋଇଛନ୍ତି । ଶ୍ରୀମନ୍ଦିର ରତ୍ନସିଂହାସନରେ ଦେବୀ ସୁଭଦ୍ରାଙ୍କର 'ଭୁବନେଶ୍ୱର' ମନ୍ତ୍ରରେ ପୂଜାକାର୍ଯ୍ୟ ହୋଇଥାଏ । ମାତ୍ର ଅନ୍ୟ ସମସ୍ତ ତାନ୍ତ୍ରିକ କର୍ମମାନ ମା' ବିମଳାଙ୍କ ମନ୍ଦିରରେ ଅନୁଷ୍ଠିତ ହୁଏ । କାରଣ ସୁଭଦ୍ରାଙ୍କ ଉଦ୍ଦେଶ୍ୟରେ ତାନ୍ତ୍ରିକ କର୍ମ ରତ୍ନସିଂହାସନରେ ଶ୍ରୀଜଗନ୍ନାଥଙ୍କ ନିକଟରେ ସମାପନ ହୁଏ ନାହିଁ । ଏଠାରେ (ରତ୍ନସିଂହାସନରେ) ଦେବୀ ସୁଭଦ୍ରାଙ୍କୁ ଭୁବନେଶ୍ୱରୀ ମନ୍ତ୍ରରେ ତାଙ୍କ ପୂଜାବିଧିର ନିର୍ଣ୍ଣୟ କରାଯାଇଛି । ସ୍ନାନ ପୂର୍ଣ୍ଣିମା ଦିନ ସ୍ନାନବେଦୀରେ ମଧ୍ୟ (ଜ୍ୟେଷ୍ଠ ପୂର୍ଣ୍ଣମୀ ଦିନ) ଦେବସ୍ନାନ ନୀତି ପରେ ଦେବୀଙ୍କୁ ପୁଷ୍ପାଞ୍ଜଳି ଦେଲାବେଳେ 'ସପ୍ତଶତ-ଚଣ୍ଡୀ'ରୁ କେତୋଟି ବନ୍ଦନା ଶ୍ଳୋକ ପାଠ କରାଯାଏ । ଯଥା-

ସର୍ବ ମଙ୍ଗଳେ ମାଙ୍ଗଲ୍ୟେ ଶିବେ ସର୍ବାର୍ଥ ସାଧିକେ ।
ଶରଣ୍ୟେ ତ୍ର୍ୟମ୍ବକେ ଗୌରୀ ନାରାୟଣୀ ନମୋସ୍ତୁତେ ।।

ସୁଭଦ୍ରାଙ୍କ ପୂଜାରେ ମଧ୍ୟ 'ଦେବୀସୁକ୍ତ' ପଠନ କରାଯାଏ । ଖ୍ରୀ:୧୫ଶ ଶତାବ୍ଦୀ କିମ୍ବା ତାର ପରବର୍ତ୍ତୀ ସମୟରେ ଶ୍ରୀଜଗନ୍ନାଥଙ୍କୁ ଭୈରବ ରୂପେ କଳ୍ପନା କରାଯାଇ ତାଙ୍କର ଭୈରବୀ ଶକ୍ତି ରୂପରେ ବିମଳାଙ୍କୁ ଉପସ୍ଥାପିତ କରାଗଲା । ତେଣୁ କେତେକ ଗ୍ରନ୍ଥରେ ବର୍ଣ୍ଣିତ ଅଛି -

'ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବମ୍ ।'

'ଉତ୍କଳେଷୁ ବିମଳା ଶକ୍ତି ଜଗନ୍ନାଥସ୍ତୁ ଭୈରବଃ ।'

ତାନ୍ତ୍ରିକ ମତରେ ଶ୍ରୀଜଗନ୍ନାଥ ହେଉଛନ୍ତି 'ଭୈରବ' ଏବଂ ବିମଳା ତାଙ୍କର ଶକ୍ତି ଭୈରବୀ । ଏହି ବିଧିରୁ ତାନ୍ତ୍ରିକ 'କୌଳାଚାର' ତଥା ଶୌଚାଶୌଚରହିତ ତାନ୍ତ୍ରିକ ପଦ୍ଧତି ଶ୍ରୀମନ୍ଦିରରେ ପ୍ରଚଳିତ ହୋଇଥିବା ସମ୍ଭବ । ଶାକ୍ତମାନଙ୍କ ମତାନୁସାରେ ବିମଳା ହିଁ ଶ୍ରୀଜଗନ୍ନାଥଙ୍କର ଶକ୍ତି । କିନ୍ତୁ ବୈଷ୍ଣବ ମତରେ ଦେବୀ ସୁଭଦ୍ରା ହିଁ ଆଦ୍ୟାଶକ୍ତି । ଶ୍ରୀଜଗନ୍ନାଥ ଦେବୀ ସ୍ୱରୂପିଣୀ ସୁଭଦ୍ରାଙ୍କ ପତି ଭାବରେ କେତେକ ଗ୍ରନ୍ଥରେ ଏପରି ଲେଖାଅଛି -

'ସୁଭଦ୍ରା ପ୍ରାଣନାଥସ୍ୟ ଜଗନ୍ନାଥସ୍ୟ ମଙ୍ଗଳମ୍ ।'

ଏହି ବର୍ଣ୍ଣନା ପରବର୍ତ୍ତୀ କାଳରେ ହୋଇଥିଲେ ମଧ୍ୟ ଦେବୀ ସୁଭଦ୍ରାଙ୍କ ସ୍ଥିତିକୁ ଶ୍ରୀମନ୍ଦିରରେ ବୈଷ୍ଣବୀୟ ମାତୃକା ରୂପେ କଳ୍ପିତ ହୋଇଅଛି । ତାଙ୍କର ପୂଜା ମନ୍ତ୍ର ମଧ୍ୟ 'ଭୁବନେଶ୍ୱରୀ ମନ୍ତ୍ର' ଏକାକ୍ଷରୀ (ହ୍ରୀଂ) ଅଟେ । ଠିକ୍ ଏହି ଏକାକ୍ଷରୀ-ମନ୍ତ୍ରରେ ଦେବୀ ବିମଳାଙ୍କ ପୂଜା ମଧ୍ୟ ସମାହିତ ହୁଏ । ଅର୍ଥାତ୍ ସୃଷ୍ଟି, ସ୍ଥିତି ଓ ପ୍ରଳୟ ପାଇଁ ଯେଉଁ ତିନୋଟି ଶକ୍ତି ବିଦ୍ୟମାନ, ସେଥି ମଧ୍ୟରୁ 'ସୃଷ୍ଟି'ର କାରଣ ସ୍ୱରୂପା ଦେବୀ ସୁଭଦ୍ରାଙ୍କୁ ପ୍ରତିଷ୍ଠା କରାଯାଇଛି ।

ଶ୍ରୀଜଗନ୍ନାଥ, ବଳଭଦ୍ର ଓ ଦେବୀ ସୁଭଦ୍ରା 'ତ୍ରିଗୁଣ' ସ୍ୱରୂପୀ ଅର୍ଥାତ୍, ସତ୍ତ୍ୱ, ରଜ ଓ ତମ ଗୁଣ ପ୍ରତୀକ ଯଥା- ରଜଗୁଣସମ୍ପନ୍ନା ଦେବୀ ସୁଭଦ୍ରା ସୃଷ୍ଟିର ଜନ୍ମଦାତ୍ରୀ, ସତ୍ତ୍ୱଗୁଣଯୁକ୍ତ ଶ୍ରୀଜଗନ୍ନାଥ ସୃଷ୍ଟିର ସଂରକ୍ଷକ ଓ ତମଗୁଣଯୁକ୍ତ ରୁଦ୍ର ଶ୍ରୀବଳରାମ ସୃଷ୍ଟିର ସଂହାରକ ରୂପେ ଅବତୀର୍ଣ୍ଣ । ମହାଭାରତୋକ୍ତ କୃଷ୍ଣ ଓ ସୁଭଦ୍ରା ଭ୍ରାତା ଭଗ୍ନି ହୋଇଥିବାରୁ ଏବଂ ସୁଭଦ୍ରା ମଧ୍ୟମ ପାଣ୍ଡବ ଅର୍ଜୁନଙ୍କ ଗୃହିଣୀ ରୂପେ ମହାଭାରତରେ ଏକ ଆଖ୍ୟାନରେ ବର୍ଣ୍ଣିତ ହୋଇଥିବାରୁ, ତାଙ୍କୁ ଶ୍ରୀଜଗନ୍ନାଥଙ୍କ ପତ୍ନୀ ଆଖ୍ୟା ଦେବା ଆଦୌ ଯୁକ୍ତି ସଙ୍ଗତ ନୁହେଁ । ଯେଉଁ ତିନିମୂର୍ତ୍ତି ପୂର୍ବେ ଶିବ (ଭୈରବ), ବିଷ୍ଣୁ (ନୀଳମାଧବ) ଓ ଦୁର୍ଗା (ସ୍ତମ୍ଭେଶ୍ୱରୀ)ଙ୍କୁ ଭଞ୍ଜରାଜାମାନେ ମହାନଦୀ କୂଳରେ ଖ୍ରୀ:୯ମ ଶତକରେ ଆରାଧନା କରୁଥିଲେ, ସେହି ଦେବଦେବୀ ତ୍ରୟୋଙ୍କୁ ମହାରାଜା ଅନଙ୍ଗଭୀମ ଦେବ ଆରାଧନା କରି ନିଜକୁ ପୁରୁଷୋତ୍ତମ ପୁତ୍ର, ରୁଦ୍ର ପୁତ୍ର ଓ ଦୁର୍ଗାପୁତ୍ର ବୋଲି ଅଭିଲେଖମାନଙ୍କରେ ଉଲ୍ଲେଖ କରିଥିଲେ । **ସୁତରାଂ ସୁଭଦ୍ରାଙ୍କୁ ସେ ଦୁର୍ଗା ରୂପେ ଗ୍ରହଣ କରିଥିଲେ । ଶ୍ରୀମନ୍ଦିରରେ ପ୍ରତିଷ୍ଠିତା ଦେବୀ ସୁଭଦ୍ରା ବାସ୍ତବରେ ବିଶ୍ୱ ଜନନୀ-ଆଦ୍ୟା ପ୍ରକୃତି ସ୍ୱରୂପିଣୀ ରୂପେ ଚିହ୍ନିତ ହୋଇଥିଲେ ।** ତେଣୁ ତାଙ୍କର ପୂଜାରେ 'ଭୁବନେଶ୍ୱର' ମନ୍ତ୍ର ବ୍ୟବହୃତ ହୁଏ । କିନ୍ତୁ ପରେ ବୈଷ୍ଣବୀୟ ତନ୍ତ୍ରର ପ୍ରସାର ଯୋଗୁଁ ମା' ବିମଳାଙ୍କ ଉପାସନା ଦେବୀ ଦୁର୍ଗା ବା ସୁଭଦ୍ରାଙ୍କ ସ୍ଥାନ ଅଧିକାର କଲା ବୋଲି କୁହାଯାଏ ।

ଅଧ୍ୟାପକ, ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ
କାଇପଦର, ଖୋର୍ଦ୍ଧା

# ବିରଜା ଦେବୀଙ୍କ ଶାରଦୀୟ ଦୁର୍ଗାପୂଜା

ଗିରିଧାରୀ ସ୍ୱାଇଁ

**ଜ**ଗତ ଜନନୀ ମା' ବିରଜା ଯାଜପୁରର ଅଧିଷ୍ଠାତ୍ରୀ ଦେବୀ । ବିରଜା କ୍ଷେତ୍ରରେ ଶାରଦୀୟ ଦୁର୍ଗାପୂଜା ସର୍ବପ୍ରାଚୀନ । ଆଶ୍ୱିନ ମାସ ଶାରଦୀୟ ଦୁର୍ଗା ପୂଜା ଅବକାଶରେ ମହିଷମର୍ଦ୍ଦିନୀ ମା' ବିରଜାଙ୍କ ଷୋଡ଼ଶ ଦିବସୀୟ ପୂଜା ଜିତାଷ୍ଟମୀଠାରୁ 'ଶକ୍ତି ପଲ୍ଲବ' ତନ୍ତ୍ର ବିଧିରେ ଅନୁଷ୍ଠିତ ହୁଏ । ବିରଜାଙ୍କ ପୂଜକମାନେ ପାଳିକରି ଷୋଡ଼ଶ ପୂଜା ସମାହିତ କରନ୍ତି । ପାଣିଗ୍ରାହୀ ସଂଜ୍ଞାଧାରୀ ବ୍ରାହ୍ମଣମାନେ ନୈବେଦ୍ୟ ପାଇଁ ଅନ୍ନ ବ୍ୟଞ୍ଜନ ପ୍ରସ୍ତୁତ କରନ୍ତି । ପାଣି ପୂଜକମାନେ ପୂଜା ସାମଗ୍ରୀ ଯୋଗାଇ ଥାଆନ୍ତି । ପଟ୍ଟପୁରୋଧା ମହାଶୟଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପୂଜାର୍ଚ୍ଚନା ସୂଚାରୁରୂପେ ସଂପାଦିତ ହୁଏ । ଜିତାଷ୍ଟମୀ ବା ଜିମୁତ ବାହନ ପୂଜାଦିନ ରାତିରେ ଗଣପତି ଘଟ ସହିତ ଦଶଟି ଘଟ କଳସ ମା'ଙ୍କ ସମ୍ମୁଖସ୍ଥ ହୋମକୁଣ୍ଡର ଦକ୍ଷିଣ ଦିଗରେ ବସାଯାଏ । ନଅଟି ଘଟରେ ବନଦୁର୍ଗାଙ୍କୁ ଷୋଡ଼ଶ ଉପଚାରେ ପୂଜା କରାଯାଏ । ଅଷ୍ଟମୀଠାରୁ ମହାଳୟା ପର୍ଯ୍ୟନ୍ତ ପ୍ରତିଦିନ ସକାଳ ଓ ରାତିରେ ଏହି ପୂଜା ଅନୁଷ୍ଠିତ ହୁଏ ।



**ବିରଜାଙ୍କ ମହାହୋମ :** ପୌରାଣିକ ତଥ୍ୟାନୁଯାୟୀ ବ୍ରହ୍ମାଙ୍କ ଯଜ୍ଞ କୁଣ୍ଡରୁ ବିରଜାଙ୍କ ଉତ୍ପତ୍ତି । ତେଣୁ ଏହା ଯଜ୍ଞପୁର ନାମରେ ବିଦିତ । ବୈଦିକ ଯୁଗରୁ ଯାଜପୁର ଏକ ମହାନ୍ ତୀର୍ଥସ୍ଥଳୀ ରୂପେ ସ୍ୱୀକୃତ ଲାଭ କରିଛି । ଏଠାକାର ବୈତରଣୀ ତୀର୍ଥରେ ମୁନିଋଷିମାନେ ଯାଗଯଜ୍ଞ କରୁଥିଲେ । ପ୍ରାୟ ୧୦୨୫ ଖ୍ରୀ:ଅ: ବେଳକୁ ସୋମବଂଶୀ ସମ୍ରାଟ ଦ୍ୱିତୀୟ ଯଯାତି (ଚଣ୍ଡୀହର) ବୈତରଣୀ କୂଳରେ ଦଶାଶ୍ୱମେଧ ଯଜ୍ଞାନୁଷ୍ଠାନ କରିଥିଲେ । ତା'ପରଠାରୁ ଯାଜପୁର ଯଜ୍ଞପୁର ନାମରେ ଖ୍ୟାତ । ମା'ଙ୍କ ଶାରଦୀୟ ପୂଜା ଅବସରରେ ଶୁକ୍ଳ ପଞ୍ଚମୀଠାରୁ ହୋମ କାର୍ଯ୍ୟ ଆରମ୍ଭ ହୁଏ । ଅଗ୍ନି ସଂସ୍କାର ବିଧାନରେ ବିଭିନ୍ନ ଦିଗରେ ପାଞ୍ଚଟି କଳସ ସ୍ଥାପନ କରାଯାଇ ଗଣପତି, ବ୍ରହ୍ମା, ବିଷ୍ଣୁ, ଶିବ ଓ ଅନନ୍ତ (ବାସୁକୀ)ଙ୍କୁ ପୂଜା କରାଯାଏ । ଏହି ହୋମ ମହାଷ୍ଟମୀ ପର୍ଯ୍ୟନ୍ତ କରାଯାଇ ଏକ ହଜାର ଆହୂତି ଦେବାର ବିଧି ଅଛି । ମହାଷ୍ଟମୀ ଦିନ ନିଶାର୍ଦ୍ଧରେ ପୂଜା ଶେଷ କରାଯାଇ ଅନ୍ୟ ଏକ ଘଟ ସ୍ଥାପନ କରାଯାଏ । ତା'ପରେ ଚାମୁଣ୍ଡା ପୂଜା କରାଯାଇ ଶେଷରେ ହୋମର ପୂର୍ଣ୍ଣାହୂତି ଦିଆଯାଏ ।

**ମା' ବିରଜାଙ୍କ ରଥଯାତ୍ରା :** ଆଶ୍ୱିନ ଶୁକ୍ଳ ପ୍ରତିପଦ ଦିନ ରଥ ପ୍ରତିଷ୍ଠା ପର୍ବ ଅନୁଷ୍ଠିତ ହୁଏ । ମହା ପାର୍ବଣରେ ମା'ଙ୍କୁ ସୁସଜ୍ଜିତ ରଥରେ ପରିକ୍ରମଣ କରାଯାଏ । ତା' ପୂର୍ବରୁ ଦେବୀଙ୍କ ରୌପ୍ୟ ଆଶାଦଣ୍ଡ ରଥ ମଣ୍ଡପକୁ ବିଜେ କରନ୍ତି ।

ସେଠାରେ ଗଣପତି ଓ ଦଶଦିଗପାଳଙ୍କ କଳସ ସ୍ଥାପନ କରାଯାଇ ପୂଜା କରାଯାଇଥାଏ । ଏହି ରଥର ନାମ ସିଂହଧ୍ୱଜ । ନବ ଦିବସ ବ୍ୟାପି ପ୍ରତିଦିନ ଅପରାହ୍ନରେ ଏହା ମନ୍ଦିର ପରିକ୍ରମଣ କରେ । ଏହାକୁ କୃଷ୍ଣ, ଲୋହିତ, ଶ୍ୱେତବସ୍ତ୍ର ଆଭରଣରେ ସୁସଜ୍ଜିତ କରାଯାଏ । ରଥର ଉଚ୍ଚତା ୪୫ ହାତ ୧୨ ଆଙ୍ଗୁଳି । ରଥର ସାରଥୀ ଚତୁର୍ମୁଖ ବ୍ରହ୍ମା, ରଥ ରଜ୍ଜୁର ନାମ ସ୍ୱର୍ଣ୍ଣ ଚୂଡ଼ ଓ ଶଙ୍ଖ ଚୂଡ଼ । ଏଥିରେ ଦୁଇଟି ଅଶ୍ୱ ଧାବମାନ ମୁଦ୍ରାରେ ସୁସଜ୍ଜିତ । ଏହି ଦିବ୍ୟ ରଥରେ ରଥାରୂଢ଼ ହୋଇ ମା' ନଅ ଥର ବେଢ଼ା ପରିକ୍ରମଣ

କରନ୍ତି । ରଥଯାତ୍ରା ଦେଖିବାକୁ ଏଠାରେ ବହୁ ଜନସମାଗମ ହୁଏ ।

**ଲାଖ ବିନ୍ଧା ଓ ମହିଷବଳି :** ବିରଜା ମନ୍ଦିର ଅନତିଦୂରରେ ଲାଖବିନ୍ଧା ପଡ଼ିଆ । ମହାନବମୀ ଦିନ ନିଶାର୍ଦ୍ଧରେ ମା'ଙ୍କୁ ରଥରୁ ଅବତରଣ କରାଯାଇ ସେଠାକୁ ନିଆଯାଏ । ସେଠାରେ ପୂଜକ ଚାରି ଦିଗକୁ ଚାରିଟି ଶର ମାରନ୍ତି । ତାହାକୁ ଲାଖ ବିନ୍ଧା କୁହାଯାଏ । ସମ୍ଭବତଃ ଯଯାତି କେଶରୀ ଦେବୀଙ୍କୁ ଆବାହନ କରି ଏଠାରେ ଲକ୍ଷ୍ୟ ଭେଦ ପରୀକ୍ଷା କରୁଥିଲେ । ପରବର୍ତ୍ତୀ କାଳରେ ଏହା ଦେବୀ ପୂଜା ସହିତ ସଂଯୁକ୍ତ କରାଯାଇଛି । ଲାଖ ବିନ୍ଧା ପରେ ଦେବୀଙ୍କୁ ମନ୍ଦିରକୁ ନିଆଯାଇ ମହିଷବଳି ପାଇଁ ପ୍ରସ୍ତୁତି ଚାଲେ । ପୂଜାର୍ଚ୍ଚନା ପରେ ଘାତକ ଗୋଟିଏ ଶାଣିତ ଭୈରବରେ (ଖଣ୍ଡା) ମହିଷକୁ ବଳି ଦିଏ । ବଳି ପରେ ଦେବୀଙ୍କୁ ସୁବାସିତ ପଣା ଲାଗି ହୁଏ । ଏହି ଦିନ ଦେବୀ ମହିଷାସୁରକୁ ଶୂଳବିଦ୍ଧ କରିଥିଲେ । ଏହାର ସ୍ମାରକୀ ସ୍ୱରୂପ ଏହି ନାରକୀୟ ବଳି ପ୍ରଥା ଏବେ ବି ଦେବୀ ପୀଠରେ ପ୍ରଚଳିତ । କେବଳ ଯାଜପୁର କାହିଁକି ଭାରତର ବହୁ ଶକ୍ତି ପୀଠରେ ଏହି ନାରକୀୟ ବଳି ପ୍ରଥା ଏବେ ବି ସଦର୍ପେ, ସଗୌରବେ ଚାଲିଛି । ଆମେ ସମସ୍ତେ ଆପଣା ଆପଣା ସ୍ୱାର୍ଥରେ ବନ୍ଧା । ମା' କ'ଣ କେବେ ପୁଅର ରକ୍ତ ଚାହେଁ ? ଆମ ମନରୁ ଏ ବିକାର କେବେ ହଟିବ କେଜାଣି ?

କୁଆଁସରପୁର
ଦେବୀଦ୍ୱାର, ଯାଜପୁର

---

# ସ୍ୱାଧୀନତା ସଂଗ୍ରାମୀଙ୍କୁ ସ୍ୱାସ୍ଥ୍ୟ ସୁବିଧା ଯୋଗାଇବାକୁ ନୂତନ ଯୋଜନା କାର୍ଯ୍ୟକାରୀ କରାଯିବ : ସ୍ୱାସ୍ଥ୍ୟ ମନ୍ତ୍ରୀ

ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଅଧିକ ସ୍ୱାସ୍ଥ୍ୟ ସୁବିଧା ଯୋଗାଇ ଦେବା ନେଇ ଗତ ତା.୨୬.୦୮.୦୯ରିଖରେ ଏକ ବୈଠକ ଅନୁଷ୍ଠିତ ହୋଇଥିଲା । ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ତଥା ସାଧାରଣ ଅଭିଯୋଗ ଓ ପେନସନ ପ୍ରଶାସନ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ଆଚାର୍ଯ୍ୟଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଉକ୍ତ ବୈଠକରେ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଭବାନୀ ଚରଣ ପଟ୍ଟନାୟକ ଏବଂ ଶ୍ରୀ ଶ୍ରୀଧର ଦାସ ଯୋଗ ଦେଇ ରାଜ୍ୟ ସରକାରଙ୍କପକ୍ଷରୁ ସ୍ୱାଧୀନତା ସଂଗ୍ରାମମାନଙ୍କୁ ସୁବିଧା ଯୋଗାଇ ଦିଆଯିବା ସଂପର୍କରେ ଆଲୋଚନା କରିଥିଲେ । ରାଜ୍ୟ ସରକାରଙ୍କପକ୍ଷରୁ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସ୍ୱାସ୍ଥ୍ୟସେବା ଯୋଗାଇ ଦେବା ନେଇ ବିଭିନ୍ନ ସମୟରେ ପଦକ୍ଷେପ ନିଆଯାଇଛି । ହେଲେ ତାହା ଯଥେଷ୍ଟ ନୁହେଁ ବୋଲି ଦର୍ଶାଇ ଅଧିକ ସୁବିଧା ଯୋଗାଇ ଦେବାକୁ ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରାଯାଇଥିଲା ।

ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସ୍ୱାସ୍ଥ୍ୟସେବା ସୁବିଧା ଯୋଗାଇ ଦେବା କ୍ଷେତ୍ରରେ ଖୁବ୍ ଶୀଘ୍ର ଏକ ନୂତନ ଯୋଜନା କାର୍ଯ୍ୟକାରୀ ହେବାକୁ ଯାଉଛି ବୋଲି ସ୍ୱାସ୍ଥ୍ୟ ମନ୍ତ୍ରୀ ଶ୍ରୀ ଆଚାର୍ଯ୍ୟ ପ୍ରକାଶ କରିଥିଲେ । ସେ କହିଥିଲେ ଯେ ରାଜ୍ୟ ସରକାର ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସମ୍ମାନ ଜଣାଇ ଏହି ପଦକ୍ଷେପ ଗ୍ରହଣ କରିବାକୁ ଯାଉଛନ୍ତି । ଏହି ଯୋଜନା କାର୍ଯ୍ୟକାରୀ କରାଗଲା ବେଳେ ସେମାନେ ଦେଇଥିବା ପ୍ରସ୍ତାବକୁ ମଧ୍ୟ ବିଚାରକୁ ନିଆଯିବ । ଏହି ଯୋଜନାରେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ମାଗଣାରେ ଚିକିତ୍ସା, ଡାକ୍ତରଖାନାକୁ ଯାତାୟତ ଖର୍ଚ୍ଚ, ମାଗଣାରେ ଔଷଧ ଏବଂ ପରୀକ୍ଷାନିରୀକ୍ଷା କରାଯିବ । ଆଶାକର୍ମୀମାନେ ମଧ୍ୟ ସେମାନଙ୍କୁ ଡାକ୍ତରଖାନାକୁ ନେବା ଆଣିବା କରିବେ ଓ ସେଥିପାଇଁ ସେମାନଙ୍କୁ ମଧ୍ୟ ଆର୍ଥିକ ପ୍ରୋତ୍ସାହନ ଦିଆଯିବା ଭଳି ବ୍ୟବସ୍ଥା ସଂପର୍କରେ ଚିନ୍ତା କରାଯାଉଛି ବୋଲି ମନ୍ତ୍ରୀ ଶ୍ରୀ ଆଚାର୍ଯ୍ୟ କହିଥିଲେ । ଉକ୍ତ ବୈଠକରେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ କମିଶନର ତଥା ଶାସନ ସଚିବ ଶ୍ରୀମତୀ ଅନୁ ଗର୍ଗ ମଧ୍ୟ ଉପସ୍ଥିତ ଥିଲେ ।

# ମା' ଭଗବତୀଙ୍କ ଦଶହରା ପର୍ବ

ଶିବ ସୁନ୍ଦର ପଟ୍ଟନାୟକ

**ଭା**ରତରେ ଯେତେ ଶକ୍ତିପୀଠ ଅଛି ତନ୍ମଧ୍ୟରୁ ବାଣପୁରର ଭଗବତୀ ପୀଠ ଅନ୍ୟତମ ଅଟେ। ଏହା ଏକ ତନ୍ତ୍ରପୀଠ ଅଟେ । ଏହି ପୀଠରେ ବସି ଶାସ୍ତ୍ରବିଧି ମୁତାବକ ପଞ୍ଚୋପଚାର ବା ଷୋଡ଼ଶ ଉପଚାରରେ ସମ୍ପୂର୍ଣ୍ଣ ପୂଜା କରି ମା' ଭଗବତୀଙ୍କୁ ପ୍ରସନ୍ନ କରାଇ ପାରିଲେ ସେ ସିଦ୍ଧିପ୍ରଦା ହୋଇଥାନ୍ତି । ଏହାଛଡ଼ା ଭକ୍ତ ବିକଳ ବା ଭକ୍ତିଭାବରେ ଡାକିଲେ ସେମାନେ ଯେଉଁଠାରେ ଥାଆନ୍ତୁ ନା କାହିଁକି ମା' ପ୍ରତ୍ୟେକ ବ୍ୟକ୍ତିର ମଙ୍ଗଳ କରାଇଥାନ୍ତି । (ସମାଜରେ କେତେକ ନାସ୍ତିକ ଶ୍ରେଣୀର ଲୋକେ ଅଛନ୍ତି ଯେଉଁମାନେ ମା'ଙ୍କ ମହିମା ବିଷୟରେ ଅନଭିଜ୍ଞ ଥାଇ ବିଭିନ୍ନ ଯୁକ୍ତି କରନ୍ତି ଏବଂ ମା'ଙ୍କ ରୀତିନୀତିରେ ବିଭ୍ରାଟ ସୃଷ୍ଟି କରି ଥାଆନ୍ତି। ସେହି ନାସ୍ତିକ ବ୍ୟକ୍ତିମାନେ ମା' ଭଗବତୀଙ୍କ ପୀଠକୁ ଗଲେ ମା'ଙ୍କ ମହିମା ଉପଲବ୍ଧି କରିପାରିବେ)




ପୁରାଣ ବର୍ଣ୍ଣିତ ଦକ୍ଷ ପ୍ରଜାପତି ଯଜ୍ଞରେ ଶିବଙ୍କ ପତ୍ନୀ ମା' ସତୀ ଯଜ୍ଞକୁଣ୍ଡରେ ଝାସ ଦେଇ ମୃତ୍ୟୁ ବରଣ କଲାପରେ ଏହି ମୃତ ଶରୀରକୁ ଧରି ଶିବ ତାଣ୍ଡବ ନୃତ୍ୟ କରିବାରୁ ବିଶ୍ୱ ମଣ୍ଡଳ ଧ୍ୱଂସ ହୋଇଯିବା ଆଶଙ୍କାରେ ଦେବତାମାନେ ବିଷ୍ଣୁଙ୍କୁ ପ୍ରାର୍ଥନା କରିବାରୁ ସେ ସୁଦର୍ଶନ ଚକ୍ର ପଠାଇ ସତୀଙ୍କ ମୃତ ଶରୀରକୁ ଖଣ୍ଡବିଖଣ୍ଡିତ କରି ଦେଇଥିଲେ। ସତୀଙ୍କ ଶରୀରର ଖଣ୍ଡିତ ଅଂଶ ଭାରତର ବିଭିନ୍ନ ସ୍ଥାନରେ ପଡ଼ିବା ସଂଗେ ସଂଗେ ଖୋର୍ଦ୍ଧା ଜିଲ୍ଲା ବାଣପୁରଠାରେ ଶାଳିଆ ନଦୀର ଅନତି ଦୂରରେ ଏକ ଶାଖାନଦୀ ସାପୁଆ କୂଳରେ ବାଣପୁର ମା' ଭଗବତୀ ପୀଠରେ ମଧ ତାହା ପଡ଼ିଥିଲା । କାଳକ୍ରମେ ସେଠାରେ ଏକ ତନ୍ତ୍ର ଚକ୍ର ବସାଯାଇ ଦେବୀ ପୀଠ କରାଯାଇଥିଲା । ମା' ଭାଗବତୀଙ୍କ ବର୍ତ୍ତମାନର ମନ୍ଦିର, ବାଣପୁରରର ତତ୍କାଳୀନ ରାଜା ଜଗନ୍ନାଥ ହରିଚନ୍ଦନ ଭ୍ରମରବର ରାୟଙ୍କଦ୍ୱାରା ଗଢ଼ା ଯାଇଥିଲା। ତାଙ୍କର ଶାସନ କାଳ ୧୬୫୭ରୁ ୧୭୩୬ ମଧ୍ୟରେ ହୋଇଥିଲା । ସୌଭାଗ୍ୟକ୍ରମେ ସେହି ବାଣପୁରଠାରେ ମା' ସତୀଙ୍କ ପିତା ଦକ୍ଷେଶ୍ୱର ପ୍ରଜାପତିଙ୍କ ସୁରମ୍ୟ ମନ୍ଦିର ଯାହାର ଗାତ୍ରରେ ବୁଦ୍ଧଦେବ ପାର୍ଶ୍ୱଦେବତା ରୂପେ ବିଦ୍ୟମାନ ଅଛନ୍ତି ଏବଂ ଦକ୍ଷଯଜ୍ଞ କୁଣ୍ଡର ଅବଶିଷ୍ଟାଂଶ ଏକ ବାଙ୍ଗି ବା ଚବକା ରୂପେ ତାହାଙ୍କ ବେଢ଼ା ମଧ୍ୟରେ ଅବସ୍ଥିତ। ଉଲ୍ଲେଖଯୋଗ୍ୟ ଯେ ମା' ଭଗବତୀ ଯୋଗମାୟା ହେଲେ ତାଙ୍କର ଇଷ୍ଟଦେବ ପ୍ରଭୁ ଜଗନ୍ନାଥ ଶ୍ରୀପତିତପାବନ ରୂପେ ମା' ଭଗବତୀ ମନ୍ଦିରର ପାର୍ଶ୍ୱରେ ଏକ ମନ୍ଦିରରେ ବିରାଜ ମାନ ଅଛନ୍ତି ।

ମା' ଭଗବତୀଙ୍କର ଛତିଶା ନିଯୋଗ ସେବାୟତ ବିଧି ଅଛି । ଠାକୁରାଣୀଙ୍କର ଚାଷଜମି, ଘରଭଡ଼ା, ନଡ଼ିଆ ଓ କେତକୀ ଫୁଲ ବିକ୍ରି, ଅମଣୋହୀ, ମୁଆଁଘର ନିଲାମ ଓ ଦୀପ ନିଲାମରୁ ଏବଂ ପିଠାପଣା ଓ ଅନ୍ନଭୋଗ ଏବଂ ଦଶହରା ସମୟରେ ବୋଦାମାଂସ ନିଲାମ ଲବ୍ଧ ଅର୍ଥରୁ ମା'ଙ୍କର ରୀତିନୀତି ଚାଲେ । ଖୋର୍ଦ୍ଧା କେନ୍ଦ୍ର ସମବାୟ ବ୍ୟାଙ୍କ ଆନୁକୂଲ୍ୟରେ ଏକ ହୁଣ୍ଡୀ ବସାଯାଇ କିଛି ଦାନ ମିଳେ । ମା' ଭଗବତୀ, ଶ୍ରୀଦକ୍ଷେଶ୍ୱର ପ୍ରଜାପତି ଓ ମା' ବିରଜାଇଙ୍କ ପୂଜାବିଧି ଶୃଙ୍ଖଳାର ସହ ପରିଚାଳନା ନିମନ୍ତେ ଏକ ଟ୍ରଷ୍ଟବୋର୍ଡ଼ ଅଛି ଏବଂ ଏକ କାର୍ଯ୍ୟକାରୀ ଅଧିକାରୀ ଅଛନ୍ତି।

ମନ୍ଦିରର ଗର୍ଭଗୃହରେ ମା'ଭଗବତୀଙ୍କ ଶାନ୍ତ ମଣି ବିଗ୍ରହ ଅଷ୍ଟଭୁଜା ମୂର୍ତ୍ତି ଅବସ୍ଥିତ । ମା' ଭଗବତୀଙ୍କ ଡାହାଣ ଚାରିହାତରେ ତ୍ରିଶୂଳ, ଅଙ୍କୁଶ, ଚକ୍ର ଓ ଖଡ୍ଗ ଏବଂ ବାମ ଚାରିହାତରେ ସର୍ପ, ଶଙ୍ଖ, ଧନୁଶର ଓ ଢ଼ାଲ ଧରିଥିବା ଦଣ୍ଡାୟାନ ମୂର୍ତ୍ତି ଏବଂ ଶାଢ଼ୀ ବୀରାନାରୀ ପରି ଫେରିକାଛ। ପାଦଠାରୁ ଅଣ୍ଟା ପର୍ଯ୍ୟନ୍ତ ଘୋଡ଼ାଯାଇ ଅଛି । ଦେହ ଓ ହସ୍ତ ମଧ ବସ୍ତ୍ରାବୃତ ହୋଇଅଛି । ପୀଠସ୍ଥଳୀରେ ମା' ଭଗବତୀ ଦୀର୍ଘ ଜିହ୍ଵା ବାହାର କରିଥିଲେ ହେଁ ତାଙ୍କର ମୁଖ ଗୋଲାକାର ଅଟେ । ଭକ୍ତ ନିର୍ଭୟରେ ତାଙ୍କୁ ବହୁ ଫଳପ୍ରାପ୍ତି ନିମନ୍ତେ କାମନା କରିପାରିବା ମାତ୍ର ମୁଖ୍ୟ ମନ୍ଦିରର ପାଶ୍ଚାତ ଭାଗରେ ଏକ ଅଷ୍ଟଭୂଜା ମହିଷାସୁର ମର୍ଦ୍ଦିନୀ ଦୁର୍ଗା ମୂର୍ତ୍ତିଙ୍କ ମନ୍ଦିର ଅଛି ।

ମା' ଭଗବତୀଙ୍କର ମୁଆଁ, ଖଇ, ଖଜା, ସରପୁଳି, କାନ୍ତି, ବରା, ମାଠପୁଳି କାକରା ଓ ଏଣ୍ଡୁରୀ ଇତ୍ୟାଦି ବିଭିନ୍ନ ପ୍ରକାର ନିସଙ୍ଖୁଡ଼ି ଭୋଗ ହେଉଅଛି ଏବଂ ପ୍ରାତଃ ସ୍ନାନ ପରେ ପ୍ରଥମେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମନୋହର ମହାପ୍ରସାଦ ଭୋଗ ଲଗାଯାଏ । ସଙ୍ଖୁଡ଼ି ଭୋଗରେ ଖେଚୁଡ଼ି, ଅନ୍ନ, ଡାଲି, ଖିରି , ବ୍ୟତୀତ ମାଛ ମହୁର, ମାଛ ଭଜା, ମାଛ ବଳି ଭୋଗ (ପୋଡ଼ା) ଗୁଣ୍ଡମାଛ ଭଜା ଓ ଦହି ପଖାଳ ଭୋଗ ଲଗାଯାଏ। ଏପରିକି ସୁରା ଅର୍ପଣ କରାଯାଏ ।

ଉଲ୍ଲେଖଯୋଗ୍ୟ ଯେ, ମା' ଭଗବତୀଙ୍କ କାଠି ଠାକୁରାଣୀ ଓ ମା' ବିରଜାଇଙ୍କ କାଠି ଠାକୁରାଣୀ ଆଶ୍ଵିନ ଅମାବାସ୍ୟା ରାତିରେ ବାଣପୁର ବଜାରରେ ମିଳିତ ହୋଇଥାନ୍ତି । ତାହାକୁ ଭେଟ ଉତ୍ସବ ବା ଭେଟ ଅମାବାସ୍ୟା କହନ୍ତି ।

ମା' ଭଗବତୀଙ୍କ ବିଜେ ପ୍ରତିମା ରୂପେ କାଠି ଠାକୁରାଣୀ ବସ୍ତ୍ରାବୃତ ଓ ପୁଷ୍ପମଣ୍ଡିତ ହୋଇ ବିଭିନ୍ନ ଜାନିଜାତକୁ ଯାଆନ୍ତି ବା ମୁଖ୍ୟ ମନ୍ଦିରକୁ ଆସନ୍ତି । ସାଧାରଣତଃ କାଠି ଦିଅଁ ଶ୍ରୀ ଦକ୍ଷେଶ୍ଵର ପ୍ରଜାପତିଙ୍କ ମନ୍ଦିରରେ ଥାଆନ୍ତି ଓ ବିରାଜାଇଙ୍କ କାଠି ଠାକୁରାଣୀ ମା' ଭଗବତୀଙ୍କ ମନ୍ଦିରରେ ଥାଆନ୍ତି ।

ମା' ଭଗବତୀଙ୍କର ଅନେକ ପର୍ବ ଓ ଜାନିଯାତ ଥିଲେ ହେଁ ଏହି ଲେଖାରେ ଦଶହରା ପର୍ବ ବିଷୟରେ ବର୍ଣ୍ଣନା କରାଯାଉଅଛି।

ଭାଦ୍ରବ ଶୁକ୍ଳ ସପ୍ତମୀ ତିଥିଠାରୁ ସେହି ପୀଠରେ ଦୁର୍ଗାପୂଜା ଉତ୍ସବ ଆରମ୍ଭ ହୋଇଥାଏ। ସେଦିନ ମା' ଭଗବତୀଙ୍କର କାଠି ଠାକୁରାଣୀ ପାଣିତୋଳା ପାଇଁ ଓ ମା' କାଳିଜାଇଙ୍କୁ ନିମନ୍ତ୍ରଣ କରିବା ପାଇଁ ଚିଲିକା ମଧ୍ୟକୁ ନୌକାରେ ଯାତ୍ରା କରନ୍ତି । **ଚିଲିକାରେ ମା' ଭଗବତୀଙ୍କର ଆଜ୍ଞାମାଳ ଭସାଯାଏ । ସେହି ମାଳ ଭାସି ଭାସି କାଳିଜାଇ ପାହାଡ଼ ଆଡ଼କୁ ଯାଏ ଏବଂ ମା' କାଳିଜାଇଙ୍କର ଆଜ୍ଞାମାଳ ମଧ ସେହି କାଳିଜାଇ ପାହାଡ଼ କୂଳରୁ ଭସାଇ ଦିଆଯାଏ । ଏହି ଉଭୟ ଆଜ୍ଞାମାଳ ମିଳିତ ହୋଇ ମା' ଭଗବତୀଙ୍କ ନୌକା ଆଡ଼କୁ ଆସନ୍ତି । ମା' ଭଗବତୀଙ୍କ ସେବାୟତମାନେ ଉଭୟ ଆଜ୍ଞାମାଳ ଧରି ମା' ଭଗବତୀଙ୍କ ମନ୍ଦିରକୁ ଆସନ୍ତି ।** ଏହାପରେ ମା' ଭଗବତୀଙ୍କ କନକ ଦୁର୍ଗା ମୂର୍ତ୍ତିଙ୍କ ଶୟନ ପର୍ବ ଭାଦ୍ରବ ଶୁକ୍ଳ ଶ୍ରୀରାଧାଷ୍ଟମୀଠାରୁ ଆରମ୍ଭ ହୁଏ ଏବଂ ଭାଦ୍ରବ ଶୁକ୍ଳ ତ୍ରୟୋଦଶୀ ତୀଥିରେ ଦକ୍ଷିଣ ଦିଗକୁ ପାର୍ଶ୍ଵ ପରିବର୍ତ୍ତନ କରାଯାଏ। ଆଶ୍ଵିନ କୃଷ୍ଣ ଅଷ୍ଟମୀରେ (ମୂଳାଷ୍ଟମୀ) କନକଦୁର୍ଗାଙ୍କୁ ଜାଗରଣ କରାଯାଏ ଏବଂ ସହସ୍ର କୁମ୍ଭ ବରଣ କରାଯାଏ। ସେହିଦିନଠାରୁ ମା' ଭଗବତୀଙ୍କର ବିଜେ ପ୍ରତିମା କାଠି ଠାକୁରାଣୀଙ୍କର ଷୋଡ଼ଶ ପୂଜା ଆରମ୍ଭ ହୁଏ। ସେହି ଉତ୍ସବରେ ମା' ଭଗବତୀଙ୍କର ଅନ୍ୟ ଚାରି ଭଉଣୀ- ବିରିଜାଇ, ସିଦ୍ଧେଶ୍ଵରୀ ବା ସିଦ୍ଧାଶ୍ଵରୀ, ନାରାୟଣୀ ଓ କାଳିଜାଇଙ୍କୁ ନିମନ୍ତ୍ରଣ କରାଯାଏ ।

ମା' ଭଗବତୀଙ୍କର ଷୋଡ଼ଶ ପୂଜା ଦଶହରା ଉତ୍ସବ ତିନୋଟି ଶ୍ରେଣୀରେ ହୁଏ ଯଥା:- ଭିତର ପୂଜା, ବାହାର ପୂଜା ଓ ସନ୍ଧି ପୂଜା ।

**ଭିତର ପୂଜା:** ମା' ଭଗବତୀଙ୍କ ମନ୍ଦିରରେ ମୂଳାଷ୍ଟମୀ (ଆଶ୍ଵିନ କୃଷ୍ଣ ଅଷ୍ଟମୀ)ଠାରୁ ଆଶ୍ଵିନ ଅମାବାସ୍ୟା ପର୍ଯ୍ୟନ୍ତ ଆଠଦିନ ପୂଜା କରାଯାଏ ଏବଂ ବଳିଜେନା ନାଟ ମଧ ହୋଇଥାଏ। ସେହି ପୂଜା ପାଇଁ ମା' ଭଗବତୀଙ୍କ ବିଜେ ପ୍ରତିମା କାଠି ଠାକୁରାଣୀ ପ୍ରତ୍ୟହ ନିଜ ପିତ୍ରାଳୟ ଶ୍ରୀ ଦକ୍ଷେଶ୍ଵର ପ୍ରଜାପତି ମନ୍ଦିରରୁ ନିଜ ମନ୍ଦିରକୁ ସନ୍ଧ୍ୟାବେଳେ ଆସନ୍ତି ଏବଂ ପୂଜା ପରେ ଅର୍ଦ୍ଧରାତ୍ରରେ ପିତ୍ରାଳୟକୁ ଫେରିଯାଆନ୍ତି। ସେହି ନୀତି ଆଶ୍ଵିନ ଅମାବାସ୍ୟା ପର୍ଯ୍ୟନ୍ତ ଚାଲେ।

ଉଲ୍ଲେଖଯୋଗ୍ୟ ଯେ, ମା' ଭଗବତୀଙ୍କ କାଠି ଠାକୁରାଣୀ ଓ ମା' ବିରଜାଇଙ୍କ କାଠି ଠାକୁରାଣୀ ଆଶ୍ଵିନ ଅମାବାସ୍ୟା ରାତିରେ ବାଣପୁର ବଜାରରେ ମିଳିତ ହୋଇଥାନ୍ତି । ତାହାକୁ ଭେଟ ଉତ୍ସବ ବା ଭେଟ ଅମାବାସ୍ୟା କହନ୍ତି ।

**ବାହାର ପୂଜା:** ଆଶ୍ଵିନ ଶୁକ୍ଳ ପ୍ରତିପଦାଠାରୁ ମହାଷ୍ଟମୀ (ଆଶ୍ଵିନ ଶୁକ୍ଳ ଅଷ୍ଟମୀ) ପର୍ଯ୍ୟନ୍ତ ଶ୍ରୀ ଦକ୍ଷେଶ୍ଵର ପ୍ରଜାପତିଙ୍କ ମନ୍ଦିର ସମ୍ମୁଖସ୍ଥ ମା' ଭଗବତୀଙ୍କ ସାତ ବଖରା ଘରେ ମା' ଭଗବତୀ ଓ ତାଙ୍କ ଅନ୍ୟ ପାଞ୍ଚ ଭଉଣୀଙ୍କୁ ପୂଜା କରାଯାଏ । ଯେହେତୁ ତାହା ମା' ଭଗବତୀଙ୍କ ମନ୍ଦିର ବାହାରେ ହେଉଥାଏ ତେଣୁ ସେହି ପୂଜାକୁ ବାହାର ପୂଜା କୁହାଯାଏ ।

**ସନ୍ଧିପୂଜା:** ସେହି ପୂଜା ଆଶ୍ୱିନ ଶୁକ୍ଳ ନବମୀ ତିଥିରେ କରାଯାଏ । ସେହି ଦିନ ମା' ଭଗବତୀ ମନ୍ଦିରରେ ନବ କଳସ ସ୍ଥାପନ କରାଯାଏ । ସପ୍ତସତୀ ଚଣ୍ଡୀ ପାଠ କରାଯାଇ ହୋମ ବଳିଦାନ ଇତ୍ୟାଦି ଦେଇ ଷୋଡ଼ଶ ଉପଚାର ପୂଜା କରାଯାଏ । ସେହି ପୂଜା ବିଧି ପାଇଁ ସ୍ୱତନ୍ତ୍ର ଭାବେ ଚଣ୍ଡୀ ଉପାସକ ପୂଜକ ବରଣ କରାଯାଏ ।

**ବଳି:** ଆଶ୍ୱିନ ଶୁକ୍ଳ ଅଷ୍ଟମୀ ଓ ନବମୀ ତିଥିରେ ବୋଦା ବଳି ଦିଆଯାଏ । ନବମୀ ଦିନ ମଧ୍ୟ ଏକ ମହିଷ ବଳି ଦିଆଯାଏ । ବଳିଦିଆଯିବା ପାଇଁ ଶ୍ରୀ ଦକ୍ଷେଶ୍ୱର ଭଗବତୀ ଏଣ୍ଡାମେଣ୍ଟ ତରଫରୁ କୌଣସି ବୋଦା କିଣାଯାଏ ନାହିଁ । ଅଭିଳାଷୀ ଭକ୍ତମାନେ ନିଜର ମାନସିକ ପୂରଣ ନିମନ୍ତେ ମା' ଭଗବତୀଙ୍କୁ ବୋଦା ଯାଚଙ୍ଗା କରିଥାନ୍ତି, ଯାହାକୁ ଉତ୍ସବର ପନ୍ଦର ଦିନ ପୂର୍ବରୁ ଦେଇଥାନ୍ତି । ପାରିକୁଦ ରାଜା ମଧ୍ୟ ଚାରୋଟି ବୋଦା ଓ ଏକ ମହିଷ ଦେଇଥାନ୍ତି । ବୋଦାକୁ ଚରାଇବା ପାଇଁ ରଘୁନାଥପୁର ସାହିର ହରିଜନ ବ୍ୟକ୍ତି ଜାଗିରୀ ଜମି ପାଇ ଅଛନ୍ତି । ସେ ବୋଦା ଚରାଇଥାନ୍ତି । ତାହା ଜାତି ଜାତି ମଧ୍ୟରେ ସମନ୍ୱୟ ଭାବର ପ୍ରତୀକ । ଯୋଗମାୟା ମା' ଭଗବତୀଙ୍କ ଇଷ୍ଟଦେବ ପ୍ରଭୁ ଶ୍ରୀଜଗନ୍ନାଥ ମଧ୍ୟ ସବର୍ଣ୍ଣ ଅସବର୍ଣ୍ଣ ବାଛବିଚାର କରନ୍ତି ନାହିଁ । ବଳି ପକାଇବା ପାଇଁ ଭୀମପୁର ଗ୍ରାମର ଏକ ଛେଦକାର ନିଯୁକ୍ତ ଅଛନ୍ତି ଯେ କି, ବଂଶ ପରମ୍ପରା ଅନୁସାରେ ଠାକୁରାଣୀଙ୍କ ସମ୍ମୁଖରେ ବଳି ପକାଇବା ପାଇଁ ଜାଗିରୀ ଜମି ପ୍ରାପ୍ତ ହୋଇଅଛନ୍ତି । ବଳି ଦେବାପାଇଁ ମୁଖ୍ୟ ମନ୍ଦିର ସମ୍ମୁଖରେ ଏକ ଜୁପକାଠି ପୋତା ଯାଇଅଛି, ଯାହାର ଅଗ୍ର ଭାଗରେ ବୋଦାର ବେକ ରହେ ଓ ଛେଦକାର ମୁଣ୍ଡ ଛେଦନ କରେ । ସେହି ମୁଣ୍ଡତଳେ ପଡ଼ିବା ପୂର୍ବରୁ ପାଳିଆ ମାଳୀ ଏକ ଥାଳିରେ ମୁଣ୍ଡନେଇ ମନ୍ଦିର ମଧ୍ୟରେ ଜମା କରେ ଓ ବୋଦାର ଗଣ୍ଡିଟି ଆଡ଼େଇ ଦିଆଯାଏ । ବିଶେଷ ଜାଣିବାର କଥା ଯେ ବୋଦାକୁ କିଏ ଭିଡ଼ି ଭିଡ଼ି ଜୁପକାଠି ନିକଟକୁ ଆଣେ ନାହିଁ । ଯେଉଁ ବୋଦା ବେକରେ ମନ୍ଦାର ମାଳ ପିନ୍ଧାଯାଇ ପାଣି ଛଡ଼ାଯାଏ, ସେ ସ୍ୱତଃପ୍ରବୃତ ଭାବେ ଜୁପକାଠି ନିକଟକୁ ଚାଲିଆସେ। ଏହା ଦେଖିବାର କଥା ଏବଂ ଏହା ଦେଖିଲେ ମା' ଭଗବତୀଙ୍କ ପ୍ରତି ବିଶ୍ୱାସ ଦୃଢ଼ୀଭୂତ ହୋଇଯିବ। ବୋଦାମାନଙ୍କର ମୁଣ୍ଡଗୁଡ଼ିକ ଠାକୁରାଣୀଙ୍କୁ ଭୋଗ ଦିଆଯାଏ। ସେହିପରି ମଇଁଷି ମୁଣ୍ଡ କଟାଯାଇ ଭୋଗ ଦିଆଯାଏ।

**ନରବଳି :** ମା' ଭଗବତୀଙ୍କଙ୍କର ଆହୁରି ଏକ ବିଶେଷ ବଳି ଅଛି ତାହା ହେଉଛି ନରବଳି । ଏହି ନରବଳି ପଡ଼ିବା ପାଇଁ ବାଲୁଗାଁ ନିକଟସ୍ଥ ସିଂହେଶ୍ୱର ଗ୍ରାମର ଏକ ଖଣ୍ଡାଏତ (ଜେନା) ପରିବାର ଜାଗିରୀ ଜମି ପାଇଅଛନ୍ତି । ବଂଶ ପରମ୍ପରା ଅନୁସାରେ ସେ ବଳିଜେନା ରୂପେ ଖ୍ୟାତ । ସେହି ବଳିଜେନା, ଆଶ୍ୱିନକୃଷ୍ଣ ମୂଳାଷ୍ଟମୀଠାରୁ ଉପବାସ ଓ ହବିଷାନ୍ନ ଖାଇ ସାତ ବଖରା ଘରେ ରହିଥାନ୍ତି ଓ ଠାକୁରାଣୀଙ୍କୁ ଦର୍ଶନ କରୁଥାନ୍ତି ଏବଂ ବିଭିନ୍ନ ଉତ୍ସବରେ ଯୋଗ ଦେଉଥାନ୍ତି । ମା' ଭଗବତୀଙ୍କ କାଠି ଠାକୁରାଣୀ ଦକ୍ଷେଶ୍ୱର ପ୍ରଜାପତି ମନ୍ଦିରରୁ ମା' ଭଗବତୀଙ୍କ ମନ୍ଦିରକୁ ଯାଉଥାନ୍ତି। ନବମୀ ତିଥିରେ ଯେବେ ସପ୍ତଚଣ୍ଡୀ ପାଠ ଓ ଅନ୍ୟାନ୍ୟ ମନ୍ତ୍ର ଉଚ୍ଚାରଣ ପୁରୋହିତ କରୁଥାନ୍ତି ବଳିଜେନା ସେଠାରେ ବସିଥାନ୍ତି । ତାଙ୍କୁ ପୁରୋହିତ ମନ୍ତ୍ର ପାଣିଦ୍ୱାରା ମା' ଭଗବତୀଙ୍କୁ ଉତ୍ସର୍ଗ କରୁଥାନ୍ତି ଏବଂ ଆସ୍ତେ ଆସ୍ତେ ବଳିଜେନାଙ୍କ ମୁଣ୍ଡ ନଇଁ ଯାଏ ଓ ସେ ଟଳିପଡ଼ନ୍ତି ଏବଂ ଜୀବନୀ ଶକ୍ତି ହରାଇ ବସନ୍ତି । ତାଙ୍କୁ ସେହି ରାତ୍ରିରେ ଟେକି ନେଇ ସାତ ବଖରା ଘରେ ରଖନ୍ତି । ପରଦିନ ସକାଳୁ ମନ୍ଦିର ପରିଷ୍କାର ହେଲାପରେ ବଳି ଜେନାଙ୍କୁ ମା'ଙ୍କ ପାଦୁକା ପାଣି ଛିଞ୍ଚି ମା ଭଗବତୀଙ୍କ ପଶ୍ଚାତ୍ ଦିଗରେ ଥିବା ପ୍ରତୀକ ମୂର୍ତ୍ତି ପାଖରେ ରଖାଯାଏ । ପରେ ସେ ଚେତା ପାଆନ୍ତି।

ଦଶହରା ଦିନ ମା' ଭଗବତୀଙ୍କ ମନ୍ଦିରକୁ କାଠିଠାକୁରାଣୀ ଯାଇ ରାତ୍ରିରେ ଦକ୍ଷେଶ୍ୱର ପ୍ରଜାପତି ମନ୍ଦିରକୁ ଫେରିଆସନ୍ତି ଏବଂ ବାଟରେ ରଘୁନାଥ ଦେବଙ୍କ ମନ୍ଦିର ନିକଟରେ ଦଶହରା ଭୋଗ ଖାଆନ୍ତି ।

ଦଶହରା ଉତ୍ସବ ସରିଲା ପରେ ବଳିଜେନା ନିଜ ଗାଁକୁ ଫେରିଯାଏ । ନିଜ ଦ୍ୱାର ସାମନାରେ ବନ୍ଧା ହୋଇଥିବା ଏକ ବୋଦା ଛେଦନ କରି ଜଳକବାଟି ଦେଇ ନିଜ ସ୍ତ୍ରୀ ମଥାରେ ରକ୍ତକୁ ସିନ୍ଦୂର ପରି ପିନ୍ଧାଇ ହାତରେ ଶଙ୍ଖା ଲଗାଇ ଦିଅନ୍ତି ।

ବଳିଜେନାର ଜୀବନୀ ଶକ୍ତି ଅଛି କି ନାହିଁ ଏହା ପ୍ରମାଣ କରିବାକୁ ଇଂରେଜ ସେନାପତି ଡାକ୍ତରଦ୍ୱାରା ପରୀକ୍ଷା କରି ମୃତ ବୋଲି ସ୍ୱୀକାର କରିଥିଲେ । କିନ୍ତୁ ଖବର ଆସିଲା ଯେ, ସେନାପତିଙ୍କ ପୁତ୍ରର ମୃତ୍ୟୁ ହୋଇଅଛି। ସେଟଲମେଣ୍ଟ ଅଫିସର ଟେଲର ସାହେବ ମା'ଙ୍କ ସମ୍ପତ୍ତି ବାଜ୍ୟାପ୍ତି କରିବାକୁ ବସିଥିବା ବେଳେ ରାତ୍ରରେ ଭୟଙ୍କର ଦୃଶ୍ୟ ଦେଖି ସମ୍ପତ୍ତିରେ ହସ୍ତକ୍ଷେପ କରିନଥିଲେ ।

କେତେକ ନାସ୍ତିକ ବ୍ୟକ୍ତିମାନେ ମା' ଭଗବତୀଙ୍କ ପୀଠରେ ବଳିପ୍ରଥା ବନ୍ଦ କରିଦେବାକୁ ଚାହୁଁ ଅଛନ୍ତି । ଏଥିପାଇଁ ବିଭିନ୍ନ ସମୟରେ ଆନ୍ଦୋଳନ କରି ଆସୁଅଛନ୍ତି । ଏପରିକି, ମହାମାନ୍ୟ ଓଡ଼ିଶା ହାଇକୋର୍ଟରେ ମୋକଦ୍ଦମା କରିଥିଲେ । ମହାମାନ୍ୟ ହାଇକୋର୍ଟ ହିନ୍ଦୁ ଲୋକମାନଙ୍କ ଧର୍ମଭାବ ରୀତିନୀତିରେ ବାଧା

ସୃଷ୍ଟି କରିବାକୁ ଚାହିଁ ନାହାନ୍ତି ଏବଂ ଏ ବାବଦରେ ଜିଲ୍ଲାପାଳ ଲୋକମାନଙ୍କ ସହ ପରାମର୍ଶ କରିବାକୁ ନିର୍ଦ୍ଦେଶ ଦେବାରେ ଲୋକମାନେ ସେହି ବଳିପ୍ରଥା ବନ୍ଦ ନ କରିବାକୁ ଇଚ୍ଛା ପ୍ରକାଶ କରି ଥିଲେ ।

ଏହି ଉକ୍ତି ଯୁକ୍ତିଯୁକ୍ତ ନୁହେଁ । ଧର୍ମ କାର୍ଯ୍ୟ ପାଇଁ ଅଶ୍ୱକୁ ମଧ ବଳି ଦିଆଯାଏ । ଯଯାତି ମହାରାଜଙ୍କର ଯାଜପୁରଠାରେ ଦଶାଶ୍ୱମେଧ ଯଜ୍ଞ କଥା ଆମେ ଇତିହାସରୁ ଜାଣୁଅଛେ । ଜଗନ୍ନାଥ ଦାସ କୃତ ଶ୍ରୀମଦ୍ ଭାଗବତରେ ଶ୍ରୀକୃଷ୍ଣ ଅମ୍ବିକାଙ୍କୁ କହିଛନ୍ତି-

'ମଞ୍ଜେ ହୋଇବୁ ତୁ ଯେ ଜାତା
ଜଗତେ ହୋଇବୁ ତୁ ବିଖ୍ୟାତା
ସର୍ବେ କରିବେ ତୋତେ ପୂଜା
ଅନେକ ଦେବେ ବଳି ଭୋଜା।।'
(ଶ୍ରୀମଦ୍ ଭାଗବତ ସ୍କନ୍ଦ -୧୦।୩।୧୦)

ଆମ ଓଡ଼ିଶାର ବ୍ୟକ୍ତିମାନେ ସାଧାରଣତଃ ମାଂସାସୀ ବା ଆମିଷ ଭୋଜୀ ଅଟନ୍ତି । ତାଛଡ଼ା ବାଣପୁର ଚିଲିକା ନିକଟରେ ଅବସ୍ଥିତ। ଚିଲିକା କୂଳବର୍ତ୍ତୀ ଜନସାଧାରଣ ମତ୍ସଭୋଜୀ ଅଟନ୍ତି। ଉତ୍କଳର ଏକ ଅଂଶ ପୁରାଣ ବର୍ଣ୍ଣିତ ମତ୍ସଦେଶ ଅଟେ ଯାହାର ମହାରାଜା ବିରାଟ ଥିଲେ। ମହାଭାରତରେ ବର୍ଣ୍ଣିତ ଅଛି ଯେ, ଭୀଷ୍ମ ପିତାମହ କହିଥିଲେ ଯେ ସେ ଉତ୍କଳର ଏକ ଜାତିସ୍ମର ବ୍ରାହ୍ମଣଙ୍କୁ ଦେଖିଥିଲେ ଯିଏ ତାଙ୍କୁ କହିଥିଲେ ଯେ ଉତ୍କଳର ବ୍ରାହ୍ମଣ କୃଷ୍ଣକାୟ ଓ ସେମାନେ ଆମିଷ ଭୋଜନ କରନ୍ତି ।

ପଣ୍ଡିତ ଗୋଦାବରୀଶ ମିଶ୍ର ବାଣପୁର ବାସିନ୍ଦାମାନଙ୍କର ଦିଗଦର୍ଶକ ଥିଲେ । ସେ ବଳିପ୍ରଥା ବନ୍ଦ ବିରୋଧରେ କହିଥିଲେ - 'ରେଳଗାଡ଼ି ତା ପଇରେ ଯାଉଅଛି। ତୁମେ ବାଧା ସୃଷ୍ଟି କରିବାକୁ କିଏ ? ଯଦି ରେଳ ପଇରେ ବେକ ଦେଖାଇବ ନିଜର ମୃତ୍ୟୁ ହେବ ।'

ଆଇନଜୀବୀ
କାରଗାରପଥ, କୋର୍ଦ୍ଧା

---



# ଅଜିତ କୁମାର ତ୍ରିପାଠୀ ରାଜ୍ୟର ନୂତନ ନିର୍ବାଚନ କମିଶନର

ଶ୍ରୀ ଅଜିତ କୁମାର ତ୍ରିପାଠୀ ରାଜ୍ୟର ନୂତନ ନିର୍ବାଚନ କମିଶନର ଭାବେ ଗତ ତା.୧୦.୦୯.୦୯ରିଖରେ ଦାୟିତ୍ୱ ଗ୍ରହଣ କରିଛନ୍ତି । ରାଜ୍ୟ ନିର୍ବାଚନ କମିଶନର ଦାୟିତ୍ୱରେ ଥିବା ଶ୍ରୀ ସଞ୍ଜୀବ ଚନ୍ଦ୍ର ହୋତାଙ୍କର କାର୍ଯ୍ୟକାଳ ଶେଷ ହୋଇଛି ।

ଶ୍ରୀ ହୋତା ରାଜ୍ୟ ସରକାରଙ୍କର ବିଭିନ୍ନ ପଦ ପଦବୀରେ କାର୍ଯ୍ୟ କରି ରାଜସ୍ୱ ପର୍ଷଦ ସଭ୍ୟ ଭାବେ ତା.୩୦.୦୯.୨୦୦୪ରେ ଅବସର ଗ୍ରହଣ କରିବା ପରେ ତା.୦୧.୧୦.୨୦୦୪ରିଖରେ ରାଜ୍ୟର ନିର୍ବାଚନ କମିଶନର ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ । ତାଙ୍କର କାର୍ଯ୍ୟକାଳ ମଧ୍ୟରେ ସେ ବିଧାନସଭା ଓ ଲୋକସଭା ସୀମା ପୁନଃ-ନିର୍ଦ୍ଧାରଣ ପାଇଁ ଗଠିତ ପରିସୀମା ନିର୍ଦ୍ଧାରଣ କମିଶନର ସଦସ୍ୟ ରହିଥିଲେ ।

୧୯୭୩ ବ୍ୟାଚର ଆଇ.ଏ.ଏସ୍. ଶ୍ରୀ ତ୍ରିପାଠୀ ରାଜ୍ୟ ସରକାରଙ୍କର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ପଦପଦବୀରେ କାର୍ଯ୍ୟ କରି ରାଜ୍ୟ ମୁଖ୍ୟ ଶାସନ ସଚିବ ଭାବେ ଗତ ଅଗଷ୍ଟ ମାସ ୩୧ ତାରିଖ ଦିନ ଅବସର ଗ୍ରହଣ କରିଥିଲେ । ଏହା ପରେ ଗତ ସେପ୍ଟେମ୍ବର ୧୦ ତାରିଖରେ ସେ ଶ୍ରୀ ହୋତାଙ୍କଠାରୁ ଦାୟିତ୍ୱ ଗ୍ରହଣ କରି ରାଜ୍ୟର ନୂତନ ନିର୍ବାଚନ କମିଶନର ହୋଇଛନ୍ତି । ଶ୍ରୀ ତ୍ରିପାଠୀ ଜଣେ ଦକ୍ଷ ପ୍ରଶାସକ, ସୁଲେଖକ ଓ ଜୟଦେବଙ୍କ ଉପରେ ଗବେଷଣା କାର୍ଯ୍ୟଲାଗି ସୁପରିଚିତ ।

ଶ୍ରୀ ତ୍ରିପାଠୀ ତାଙ୍କର ନୂତନ ଦାୟିତ୍ୱ ଗ୍ରହଣ କରିବା ସମୟରେ ସୂଚନା ଓ ଲୋକ ସଂପର୍କ ବିଭାଗ କମିଶନର ତଥା ଶାସନ ସଚିବ ଶ୍ରୀ ରବିନ୍ଦ୍ରନାଥ ଦାଶ, ରାଜ୍ୟ ନିର୍ବାଚନ କମିଶନଙ୍କ ସଚିବ ଶ୍ରୀ ଫକୀରଚରଣ ଶତପଥୀ ଓ ରାଜ୍ୟ ନିର୍ବାଚନ କମିଶନ ସ୍ୱତନ୍ତ୍ର ସଚିବ ଶ୍ରୀ ଗଙ୍ଗାଧର ସାହୁ ଉପସ୍ଥିତ ଥିଲେ ।

# ବଡ଼ମ୍ବାଗଡ଼ର ଅଧିଷ୍ଠାତ୍ରୀ ଦେବୀ ଭଟ୍ଟାରିକା

ଉର୍ମିଳା ମିଶ୍ର

**ମା'** ଭଟ୍ଟାରିକା ହିଁ ଆଦ୍ୟା । ସେ ତ୍ରିପୁର ମୋହିନୀ ଜଗଦମ୍ବା ଯୋଗେଶ୍ୱରୀ, ଯୋଗମାୟା । ସେ ରାଜରାଜେଶ୍ୱରୀ ମା' ଅପର୍ଣ୍ଣା । ତାଙ୍କର ଆଦିଅନ୍ତ ନାହିଁ । ସେ ଅବିନାଶିନୀ ମହାମାୟା । ସେ ସୃଷ୍ଟି, ସ୍ଥିତି ପ୍ରଳୟାଧିକାରିଣୀ । ଅମୃତମୟୀ ପ୍ରକୃତି ସ୍ୱରୂପିଣୀ ମା' ଜଗଜ୍ଜନନୀ ।



ରାଜରାଜେଶ୍ୱରୀ ଅଧିଷ୍ଠାତ୍ରୀ ଦେବୀ ଜଗଜ୍ଜନନୀ ମା' ଭଟ୍ଟାରିକାଙ୍କ ମୂଳମନ୍ଦିର ଜଣେ କନ୍ଧ ନିର୍ମାଣ କରିଥିଲେ । ଶଉରୁଣୀର କଥିତ ମୁତାବକ, ୧୩୦୫ରୁ ୧୩୨୭ ମସିହା ରାଜତ୍ୱ କାଳ ମଧ୍ୟରେ ରାଜା ହଟ କିଶୋର ଦେବୀ ଭଟ୍ଟାରିକା ଓ ଖାରଡ଼ର ଅଧିଷ୍ଠାତ୍ରୀ ଦେବୀ ମା' ମହାକାଳୀଙ୍କୁ ପ୍ରଥମେ ପୂଜା କରିଥିଲେ ।

ମା' ଭଟ୍ଟାରିକାଙ୍କର ଗୋଟିଏ ନାମ ବୃହଦମ୍ବା । ତେଣୁ ରାଜା ଦେବୀଙ୍କ ନାମାନୁସାରେ ସେହି ରାଜ୍ୟର ନାମ ବୃହଦମ୍ବା ରଖିଥିଲେ । କାଳକ୍ରମେ ତାହା ଅପଭ୍ରଂଶ ହୋଇ 'ବଡ଼ମ୍ବା' ହୋଇଅଛି । ରାଜା କାହ୍ନୁଚରଣ ରାଉତ ମା' ଭଟ୍ଟାରିକାଙ୍କର ମୂଳ ମନ୍ଦିରକୁ ଭାଙ୍ଗି ବଡ଼ କରି ନିର୍ମାଣ କରିଥିଲେ । ବର୍ତ୍ତମାନ ପ୍ରାୟ ଦୁଇ ଏକର ସ୍ଥାନ ଉପରେ ଏହି ମହାନ୍ ପବିତ୍ର ମନ୍ଦିର ବିଦ୍ୟମାନ । ଆଉ ଦୁଇ ଏକର ଜାଗା ନଦୀଗର୍ଭରେ ବିଲୀନ । ପାହାଡ଼କୁ ମିଶାଇ ସମୁଦାୟ କ୍ଷେତ୍ରର ଆୟତନ ପ୍ରାୟ ୧୦ ହେକ୍ଟର ହେବ । ମୁଖ୍ୟ ମନ୍ଦିରର ଉଚ୍ଚତା ପ୍ରାୟ ୮୦ ଫୁଟ । ୩୦୦୦ ବର୍ଗଫୁଟ ପରିମିତ ସ୍ଥାନ ଉପରେ ହିଁ ସେହି ମନ୍ଦିର ପ୍ରତିଷ୍ଠିତ । ରାଜା କାହ୍ନୁଚରଣଙ୍କ ସମୟରେ ମୂଳମନ୍ଦିରରେ ବୌଦ୍ଧଯୁଗୀୟ ଭାସ୍କର୍ଯ୍ୟ ଓ କାରୁକାର୍ଯ୍ୟ ଫୁଟି ଉଠିଥିଲା । ମାତ୍ର ଆଜି ତାହା ଅବଲୁପ୍ତ । ମନ୍ଦିରର ପାଦଦେଶରୁ ନଦୀ ମଧ୍ୟକୁ ଯିବାକୁ, ପଥର ପାବଚ୍ଛମାନ ନିର୍ମିତ । ସେହି ପାବଚ୍ଛଗୁଡ଼ିକରେ ମଧ୍ୟ ବହୁ କାରୁକାର୍ଯ୍ୟ ଖୋଦିତ ହୋଇଅଛି । ତାହାକୁ ଦେଖିଲେ ଅତୀତର ପଥର କାରିଗରମାନଙ୍କର ଅନେକ ନମୁନା ମିଳିପାରିବ । ବର୍ତ୍ତମାନ କିନ୍ତୁ ଏହି ପାବଚ୍ଛଗୁଡ଼ିକ ଉପରେ ସିମେଣ୍ଟ ପଲସ୍ତରା କରାଯାଇଛି । ଆହୁରି ଅନେକ ପାବଚ୍ଛ ମଧ୍ୟ ନଦୀ ଗର୍ଭରେ ପୋତି ହୋଇଯାଇଛି । ମହାନଦୀର ଜଳସ୍ରୋତରୁ ପୀଠର ଅବକ୍ଷୟ ରୋକିବା ପାଇଁ ସୁଦୃଢ଼ ପ୍ରାଚୀର ମଧ୍ୟ ନିର୍ମାଣ କରାଯାଇଛି । କିନ୍ତୁ ମନ୍ଦିର ନିର୍ମାଣ କାର୍ଯ୍ୟରେ ସେତେ ଅଗ୍ରଗତି ହୋଇନାହିଁ । ତାହା ଏକ ମହାପର୍ଯ୍ୟଟନ କ୍ଷେତ୍ରର ମର୍ଯ୍ୟାଦା ଲାଭ କରିଥିବାରୁ ପ୍ରତିଦିନ ଶହ ଶହ ପର୍ଯ୍ୟଟକ ମା'ଙ୍କ ଦର୍ଶନ ନିମନ୍ତେ ଆସିଥାନ୍ତି ।

ସେହି କ୍ଷେତ୍ରକୁ ପର୍ଶୁରାମ ପୀଠ ମଧ୍ୟ କୁହାଯାଏ । ପୁରାକାଳରେ ଯମଦଗ୍ନି ନାମରେ ଜଣେ ବିଖ୍ୟାତ ମହର୍ଷି ଥିଲେ । ତାଙ୍କ ପତ୍ନୀଙ୍କ ନାମ ରେଣୁକା । ତାଙ୍କର ଚାରି ପୁଅ । ସବାସାନ ପୁଅର ନାମ ଥିଲା ପର୍ଶୁରାମ । ଋଷି ଧ୍ୟାନ ବଳରେ ଅସତୀ ସ୍ତ୍ରୀଙ୍କର ବ୍ୟଭିଚାର ଘଟଣା ଜାଣିପାରି କ୍ରୋଧାନ୍ୱିତ ହୋଇଥିଲେ ଓ ଏହି ଅସତୀ ସ୍ତ୍ରୀକୁ ହତ୍ୟା କରିବା ପାଇଁ ଚାରିପୁଅଙ୍କୁ ଆଦେଶ ଦେଲେ । ମାତ୍ର ବଡ଼ ତିନି ପୁଅ ମା'କୁ ମାରିବା ପାଇଁ ରାଜି ହେଲେ ନାହିଁ । କିନ୍ତୁ ସବା ସାନ ପୁଅ ପିତୃ ଆଦେଶ ପାଳନ କରି କୁଠାର ସାହାଯ୍ୟରେ ମାତାଙ୍କ ଶିରଚ୍ଛେଦନ କରିଥିଲେ ଓ ପିତାଙ୍କର ଗଭୀର ଶ୍ରଦ୍ଧାଭାଜନ ହୋଇ ପିତୃଦତ୍ତ ବରରେ ମାତାଙ୍କୁ ବଞ୍ଚାଇ ପାରିଥିଲେ । ମାତ୍ର ମାତୃହତ୍ୟାର

ମହାପାପ ସ୍ୱରୂପ ରକ୍ତାକ୍ତ କୁଠାରଟି ପର୍ଶୁରାମଙ୍କ ଦକ୍ଷିଣ ହସ୍ତରେ ଲାଗି ରହିଲା । ଶତଚେଷ୍ଟା ସତ୍ୱେ ମଧ୍ୟ ଛାଡ଼ିଲା ନାହିଁ । ଅନେକ ତୀର୍ଥକ୍ଷେତ୍ର ଓ ମହାନ୍ ପବିତ୍ର ଆଶ୍ରମକୁ ଯାଇ ଯେତେ ପ୍ରାର୍ଥନା କଲେବି କୁଠାରଟି ପର୍ଶୁରାମଙ୍କ ହାତରୁ ଛାଡ଼ିଲା ନାହିଁ । କିନ୍ତୁ ସବୁଆଡ଼େ ବୁଲି ବୁଲି ଶେଷରେ ଭଟ୍ଟାରିକା ଦେବୀଙ୍କ ପୀଠରେ ପହଞ୍ଚିଲାକ୍ଷଣି ପର୍ଶୁରାମଙ୍କ ହାତରୁ କୁଠାରଟି ତଳେ ପଡ଼ିଗଲା । ଏହି ମହାପବିତ୍ର ପୀଠର ଅଦ୍ଭୁତ ମହିମାରେ ମୁଗ୍ଧ ହୋଇ ପର୍ଶୁରାମ ଧ୍ୟାନସ୍ଥ ହୁଅନ୍ତେ, ଜଗଦମ୍ବା ମହାମାୟା ଭଟ୍ଟାରିକା ତାଙ୍କ ମାନସପଟରେ ଦେଖା ଦେଇ ସଙ୍ଗେ ସଙ୍ଗେ ଅନ୍ତର୍ଦ୍ଧାନ ହୋଇଗଲେ । ତା'ପରେ ପର୍ଶୁରାମ ଶରମୁନରେ ମାଆ ଭଟ୍ଟାରିକାଙ୍କ ମୂର୍ତ୍ତି ପ୍ରସ୍ତରରେ ଖୋଦନ କରି ପୁନଶ୍ଚ ତପସ୍ୟାରେ ମଗ୍ନ ହୋଇଥିଲେ । ଏବେବି ପର୍ଶୁରାମଙ୍କର ତପସ୍ଥଳିରେ ସୁବିଶାଳ ପ୍ରସ୍ତର ଭଟ୍ଟାରିକାଙ୍କ ପୀଠରେ ପଡ଼ି ରହିଛି । ଏଣୁ ମାଆ ଭଟ୍ଟାରିକାଙ୍କ ପୀଠକୁ ପର୍ଶୁରାମ ପୀଠ ମଧ୍ୟ କୁହାଯାଏ ।

ଏବେବି ପର୍ଶୁରାମଙ୍କର ତପସ୍ଥଳିରେ ସୁବିଶାଳ ପ୍ରସ୍ତର ଭଟ୍ଟାରିକାଙ୍କ ପୀଠରେ ପଡ଼ି ରହିଛି । ଏଣୁ ମାଆ ଭଟ୍ଟାରିକାଙ୍କ ପୀଠକୁ ପର୍ଶୁରାମ ପୀଠ ମଧ୍ୟ କୁହାଯାଏ ।

ମହାମାୟା ଦେବୀ ଭଟ୍ଟାରିକାଙ୍କର ପୂଜାବିଧି ମଧ୍ୟ ଅତି ନିଷ୍ଠାର ସହିତ ପାଳନ କରାଯାଇ ଥାଏ । ଦେବୀ ଯୋଗମାୟା ତନ୍ତ୍ର ପୂଜାର ପ୍ରତୀକ । ଦୈନିକ ତାଙ୍କ ପାଇଁ ତିନି ଧୂପ ଓ ପାଞ୍ଚ ଅବକାଶ ଖଞ୍ଜା ।

- ରାତ୍ର ୪ ଘଟିକାରେ ସ୍ନାନ ଅବକାଶ ଓ ମଙ୍ଗଳ ଆଳତୀ ।
- ସକାଳ ୭ ଘଟିକାରେ ବଲ୍ଲଭ ଅବକାଶ ।
- ସକାଳ ୧୦ ଘଟିକାରେ ସକାଳ ଧୂପ । ଏଥିରେ ଦୁଇ ଆଟିକା ଖେଚୁଡ଼ି, ଏଣ୍ଡୁରି ଓ ମାଛ ଭଜା ଭୋଗ କରାଯାଏ ।
- ମଧ୍ୟାହ୍ନ ୧୨ ଘଟିକାରେ ଦ୍ୱିପ୍ରହର ଧୂପ । ଏହି ଅବସରରେ କ୍ଷୀରି ଖେଚୁଡ଼ି ଅନ୍ନ କାକରା ଭୋଗ କରାଯାଇଥାଏ ।
- ଅପରାହ୍ନ ୫ ଘଟିକାରେ ସ୍ନାନ ଅବକାଶ ହୋଇଥାଏ ।
- ସନ୍ଧ୍ୟା ୬ ଘଟିକାରେ ସନ୍ଧ୍ୟା ଅବକାଶ ଓ ଆଳତୀ ହୁଏ । ଏହି ସମୟରେ ୬ ପଟ କାକରା ଭୋଗ କରାଯାଇଥାଏ ।
- ରାତ୍ର ୮ ଘଟିକାରେ ରାତ୍ରି ଧୂପ । ଦୁଇ ଆଟିକା ଦହି-ପଖାଳ ଏଣ୍ଡୁରି ତରକାରୀ ଭୋଗ ହୋଇଥାଏ ।
- ରାତ୍ର ୮ଟା ୩୦ ମିନିଟ୍‌ରେ ଶାନ୍ତିପଣା ଓ ବଡ଼ସିଂହାର ଅବକାଶ ହୋଇଥାଏ ।

ଏହା ବ୍ୟତୀତ ପୂର୍ଣ୍ଣିମା, ଅମାବାସ୍ୟା ତିଥିରେ ବିଶେଷ ଧରଣର ଭୋଗରାଗ ହୋଇଥାଏ । ରାଜା ଫକୀରଚନ୍ଦ୍ର ସେଠାରେ ନବରାତ୍ର ପୂଜା ପ୍ରଚଳନ କରିଥିଲେ । ଚୈତ୍ର ଅମାବାସ୍ୟାଠାରୁ ଶ୍ରୀରାମନବମୀ ପର୍ଯ୍ୟନ୍ତ ତାହା ଚାଲିଥାଏ ।

ଶଶାଙ୍କ ଗ୍ରାମର ମାଳିମାନେ ମା' ଠାକୁରାଣୀଙ୍କର ପୂଜକ । ସେମାନେ ଦେବୀଙ୍କର ପୂଜାବିଧି ଅତି ନିଷ୍ଠାର ସହିତ ଅତି ନିର୍ଭୁଲ ଭାବେ ପାଳନ କରିଥାନ୍ତି । ମହାଷ୍ଟମୀ ଯାତ୍ରା ଦିନ ପୂଜକମାନଙ୍କ ମଧ୍ୟରୁ ଅନେକ ନିର୍ଜଳ ଉପବାସ କରିଥାନ୍ତି ।

ରାଜା ଫକୀରଚନ୍ଦ୍ର, ଦେବୀଙ୍କ କୃପାରୁ ନରସିଂହପୁର ଯୁଦ୍ଧରେ ଜୟଲାଭ କରିଥିଲେ । ସେ ମହାଖୁସିରେ ଆଶ୍ୱିନ ମାସରେ ମହାଷ୍ଟମୀ ଦିନ ଯାତ୍ରାର ଶୁଭାରମ୍ଭ କରିଥିଲେ । ସେହିବର୍ଷଠାରୁ ପ୍ରତିବର୍ଷ ଉକ୍ତ ତିଥିରେ ମାଆ ଭଟ୍ଟାରିକାଙ୍କର ଯାତ୍ରା ହୋଇଆସୁଅଛି । ପ୍ରବାଦ ଅଛି ଯେ, ଦେବୀଙ୍କର ଏକ ପ୍ରକାଣ୍ଡକାୟ କୁମ୍ଭୀର ଥିଲା । ପ୍ରତିବର୍ଷ କୁମ୍ଭୀରଟି କେଉଁଆଡ଼ୁ ଏକ ପିଲାକୁ ପିଠିରେ ବସାଇ ଦେବୀ ମନ୍ଦିର ନିକଟରେ ଥିବା ଶୋଳଗମ୍ଭୀରା ନାମକ ପର୍ବତ ଗୁମ୍ଫାରେ ଛାଡ଼ି ଦେଇ ଯାଉଥିଲା । ମାଆ ଭଟ୍ଟାରିକା ସେହି ମହାଷ୍ଟମୀ ଦିନ ଅନ୍ୟାନ୍ୟ ଭଉଣୀମାନଙ୍କ ସହିତ ତାକୁ ବଳିରୂପେ ଗ୍ରହଣ କରୁଥିଲେ । ସେହି ଯାତ୍ରା ଦେବୀଙ୍କ ପୀଠରେ ଗୋଟିଏ ଦିନ ପାଇଁ ହୁଏ । ସେହି ମହାଷ୍ଟମୀ ଦିନ ଠାକୁରାଣୀ ଉଭା ହୁଅନ୍ତି । ଠାକୁରାଣୀ ଉଭାର ଏକ ବିଶେଷତ୍ୱ ରହିଛି । ସମସ୍ତ ପୂଜକ, କାଳେସୀ ଓ ଢୋଲିଆ ସେଦିନ ଉପବାସରେ ରହିଥାନ୍ତି । ରାତ୍ରରେ ମନ୍ଦିର ମଧ୍ୟରେ ଢୋଲ ରଖି ପୂଜା କରାଯାଏ । ଅନବରତ ମନ୍ତ୍ରପାଠ ଓ ସ୍ତୁତି ପଢ଼ା ଯାଇଥାଏ । ଧୂପଦୀପ ଓ ନୈବେଦ୍ୟର ଗନ୍ଧରେ ଚତୁର୍ଦ୍ଦିଗ ମହକି ଉଠୁଥାଏ । ଦେବୀ ପୂଜାର୍ଚ୍ଚନାରେ ସନ୍ତୁଷ୍ଟ ହେଲେ ଅଢ଼େଇ ପାହାର ବାଜା ଆପେ ଆପେ ବାଜି ଉଠିଥାଏ । ତା' ପରେ ଢୋଲିଆ ବାଜା ବଜାଇଥାଏ ଓ କାଳେଶୀ ଉଭା ହୋଇଥାଏ । ତା' ଦେହରେ ସ୍ୱୟଂ ଠାକୁରାଣୀ ବିରାଜମାନ କରି ମୁଦା ହୁକୁମ ଦେଇଥାନ୍ତି ଓ ରାଜ୍ୟର ଭଲମନ୍ଦ କହିଥାନ୍ତି । ଅଗଣିତ ଭକ୍ତମାନେ ମା'ଙ୍କ ନିକଟରେ ଗୁହାରିଆ ବା ଅଧିଆ ପଡ଼ିଥାନ୍ତି ।

ମାଆ ଭଟ୍ଟାରିକା ହେଉଛନ୍ତି ମହିଷାମର୍ଦ୍ଦିନୀ ଦୁର୍ଗା, ତ୍ରିପୁରା ସୁନ୍ଦରୀ ତେଣୁ ସେ ପଦ୍ମାସନରେ ଅବସ୍ଥିତା । ଅନନ୍ୟ ଅଷ୍ଟକିଳା ହେଉଛି ତାଙ୍କର ବିଭୂତି । ସେ ହେଉଛନ୍ତି ଆଦ୍ୟାଶକ୍ତି । ଦୁର୍ଗାଷ୍ଟମୀରେ ସେ ମୁଣ୍ଡମାଳ ଧାରଣ କରିଥାନ୍ତି । ସକଳ ଦେବାଦେବୀ ସେହିଦିନ ମହାମାୟାଙ୍କୁ ଦର୍ଶନ କରିବା ପାଇଁ ଆସିଥାନ୍ତି । ସେଦିନ ସେ ଶ୍ମଶାନବାସିନୀ ହରିପ୍ରିୟା । ଅନ୍ୟ ସମୟରେ ସେ ପ୍ରସନ୍ନ ବଦନା, ତାଙ୍କ ମଥାରେ ସିନ୍ଦୂର, ଗଳାରେ ରତ୍ନହାର । ପାଦରେ ନୂପୁର ସେ ଅଧିଷ୍ଠାତ୍ରୀ ଦେବୀ ସିଦ୍ଧ ଭଟ୍ଟାରିକା ନାମରେ ହିଁ ବିଖ୍ୟାତ ।

ମହାମାୟା ଦେବୀଙ୍କର ମହିମା ଅସୀମ ଓ ଅଦ୍ଭୁତ । ସେହିଦିନ କେହିମଧ୍ୟ ରିକ୍ତ ହସ୍ତରେ ମା'ଙ୍କ ନିକଟରୁ ଫେରନ୍ତି ନାହିଁ । ସମସ୍ତଙ୍କର ମନସ୍କାମନା ପୂରଣ ହୋଇଥାଏ । ଦେବୀଙ୍କର ଉଭାବେଳର ଦୃଶ୍ୟ ଅତି ଭୟଙ୍କର । ବିରାଟ କଟାରୀ ଓ ବେତଧରି ମୁଣ୍ଡରେ ସିନ୍ଦୂର ଲଗାଇ ବିକଟ କୁହାଟ ଛାଡ଼ି ଅର୍ଦ୍ଧରାତ୍ରରେ ଶୋଳ ଗମ୍ଭୀରାକୁ ଉଠି ଗଲାବେଳେ ଅନେକ ଭୟରେ ଶିହିରି ଉଠିଥାନ୍ତି । ଯାତ୍ରାଦିନ ମା'ଙ୍କ ନିକଟରେ ଅନେକ ଛେଳି ମେଣ୍ଢା ଓ ବୋଦା ବଳି ପକାଯାଇଥାଏ । ହିନ୍ଦୋଳଗଡ଼ର ରାଜା ପ୍ରତିବର୍ଷ ଗୋଟିଏ ପଣ୍ଡା, (ମା'ଙ୍କ ନିକଟରେ ବଳି ପାଇଁ) ପଠାଇଥାନ୍ତି । ଏହି ପଣ୍ଡାବଳିର ଦୃଶ୍ୟ ଅତ୍ୟନ୍ତ ହୃଦୟ ବିଦାରକ । ଦେବୀଙ୍କ ପ୍ରାଙ୍ଗଣ ପଶୁମାନଙ୍କ ରକ୍ତରେ ହିଁ ପ୍ଲାବିତ ହୋଇଯାଏ । ରକ୍ତର ଧାର ବୋହି ପାହାଚରେ ଗଡ଼ି ନଦୀଜଳକୁ ମଧ୍ୟ ଲାଲ କରିପକାଏ । ବହୁ ପ୍ରାଚୀନ କାଳରୁ ଏହି ଜଘନ୍ୟ ନାରକୀୟ ଘୃଣ୍ୟବଳି ପ୍ରଥା ପ୍ରଚଳିତ । ପୋଲିସ୍ ପହରା ଓ କଡ଼ା ନିରାପତ୍ତା ମଧ୍ୟରେ ହିଁ ଏହି କାର୍ଯ୍ୟ ଚାଲିଥାଏ । ୧୯୭୫ ମସିହାରେ ତତ୍କାଳୀନ ତହସିଲଦାର ଶ୍ରୀ ରମେଶ ଚନ୍ଦ୍ର ମିଶ୍ର ସେହି ଜଘନ୍ୟ ପଣ୍ଡାବଳି ପ୍ରଥା ଉଠାଇ ଦେଇଥିଲେ ।

ସେହି ଯାତ୍ରାରେ ହଜାର ହଜାର ନରନାରୀ ରୁଣ୍ଡ ହୋଇଥାନ୍ତି । ସବୁ ପ୍ରକାର ଦୋକାନ ବଜାର ମଧ୍ୟ ବସିଥାଏ । ଶଶାଙ୍କ ଗ୍ରାମଠାରୁ ଦେବୀଙ୍କ ପୀଠଯାଏଁ ଭୀଷଣ ଲୋକାରଣ୍ୟ ହୋଇଯାଏ ।

ମାଆ ଭଟ୍ଟାରିକା ହେଉଛନ୍ତି ମହିଷାମର୍ଦ୍ଦିନୀ ଦୁର୍ଗା, ତ୍ରିପୁରା ସୁନ୍ଦରୀ ତେଣୁ ସେ ପଦ୍ମାସନରେ ଅବସ୍ଥିତା । ଅନନ୍ୟ ଅଷ୍ଟକିଳା ହେଉଛି ତାଙ୍କର ବିଭୂତି । ସେ ହେଉଛନ୍ତି ଆଦ୍ୟାଶକ୍ତି । ଦୁର୍ଗାଷ୍ଟମୀରେ ସେ ମୁଣ୍ଡମାଳ ଧାରଣ କରିଥାନ୍ତି । ସକଳ ଦେବାଦେବୀ ସେହିଦିନ ମହାମାୟାଙ୍କୁ ଦର୍ଶନ କରିବା ପାଇଁ ଆସିଥାନ୍ତି । ସେଦିନ ସେ ଶ୍ମଶାନବାସିନୀ ହରିପ୍ରିୟା । ଅନ୍ୟ ସମୟରେ ସେ ପ୍ରସନ୍ନ ବଦନା, ତାଙ୍କ ମଥାରେ ସିନ୍ଦୂର, ଗଳାରେ ରତ୍ନହାର । ପାଦରେ ନୂପୁର ସେ ଅଧିଷ୍ଠାତ୍ରୀ ଦେବୀ ସିଦ୍ଧ ଭଟ୍ଟାରିକା ନାମରେ ହିଁ ବିଖ୍ୟାତ ।

ଧାୟେ ସୁବର୍ଣ୍ଣ ବର୍ଣ୍ଣଭାଂ ତ୍ରିନେତ୍ରାଂ ଚାରୁହାସିନାଂ
ସର୍ବଲକ୍ଷଣ ସମ୍ପୂର୍ଣ୍ଣା ମର୍ଦ୍ଧେନ୍ଦୁ କୃତ ଶେଖରାଂ
ଚତୁର୍ଭୁଜାଂ ଶଙ୍ଖଚକ୍ର ଧରାଂ ବାଳା ସ୍ୱରୂପିଣୀଂ
ଉଦ୍ୟତ୍ରିଶୂଳ ନିର୍ଭିନ୍ନ ମହିଷାଂ ସିଂହବାହିନୀଂ ।
ପ୍ରସନ୍ନଂ ବଦନାଂ ଶୁଭ୍ରା ସିନ୍ଦୂରାଙ୍କିତ ଭାଲ୍ଲିକାଂ
ତ୍ରିପୁରାଭଟ୍ଟାରିକା ଦେବୀ ରତ୍ନହାର ବିଭୂଷିତାଂ
ନବଧା ଦିବ୍ୟ ରୂପାଞ୍ଚ ବିଭୂତି ଭସ୍ମଧାରିଣୀଂ
ମହାମୂର୍ତ୍ତି ପ୍ରଦାଂ ଦୁର୍ଗାଂ ପଦ୍ମନାଳ ସୁଶୋଭିତାଂ ॥

ମାଆ ଭଟ୍ଟାରିକା ହେଉଛନ୍ତି ଯୁଗେଯୁଗେ କଲ୍ୟାଣମୟୀ କରୁଣାମୟୀ ଓ ମମତାମୟୀ । ପର୍ଯ୍ୟଟନ ଓ ସଂସ୍କୃତି ମନ୍ତ୍ରୀ ଶ୍ରୀ ଦେବୀ ପ୍ରସାଦ ମିଶ୍ରଙ୍କଠାରୁ ଜଣାଯାଇଛି ଯେ ଭଟ୍ଟାରିକା ପୀଠରେ ପ୍ରାୟ ବର୍ଷେ ହେଲା ପର୍ଯ୍ୟଟନ ବିଭାଗ ପକ୍ଷରୁ ଏକ ଭଜନ ମଣ୍ଡପ ତିଆରି ହୋଇ ମନ୍ଦିର ପରିସରରେ ପଥର ବସାଯାଇଛି । ପାହାଡ଼ ଉପରକୁ ଯିବାକୁ ପାବଚ୍ଛ କରାଯିବା ସହିତ ସେଠାରେ ଏକ ପାନ୍ଥଶାଳା ଓ ପିକ୍‌ନିକ୍ ସ୍ଥାନ ନିର୍ମାଣର ଯୋଜନା ରହିଛି । କୋଟିଏ ପଚାଶଲକ୍ଷ ଟଙ୍କା ବ୍ୟୟରେ ଭଟ୍ଟାରିକାକୁ ପର୍ଯ୍ୟଟନ ପୀଠ ଦୃଷ୍ଟିରୁ ସମୃଦ୍ଧ କରାଯିବ ବୋଲି ସେ କହିଛନ୍ତି ।

ମହୁଲିଆ
ବଡ଼ମ୍ବା, କଟକ



# ଶ୍ରୀମନ୍ଦିରରେ ନେପାଳ ନରପତିଙ୍କ ସ୍ୱତନ୍ତ୍ର ସମ୍ମାନ

ଜଗନ୍ନାଥ ମହାନ୍ତି

**ଅ**ପେକ୍ଷାକୃତ ଆକାରରେ ଆମ ଓଡ଼ିଶାଠାରୁ କ୍ଷୁଦ୍ର ଓ ଲୋକସଂଖ୍ୟାରେ କମ୍ ହେଲେ ହେଁ ନେପାଳ ନିକଟ ଅତୀତରେ ଏକମାତ୍ର ହିନ୍ଦୁ ରାଜ୍ୟ ଭାବରେ ସାରା ବିଶ୍ୱରେ ପରିଚିତ ଥିଲା । ପୃଥିବୀର ଉଚ୍ଚତମ ପାର୍ବତ୍ୟ ଶ୍ରେଣୀରେ ଏବଂ ବୃହତ୍ତମ ରାଷ୍ଟ୍ରଦ୍ୱୟ ଚୀନ ଓ ଭାରତ ସୀମାରେ ଏହାର ଅବସ୍ଥିତି ଖୁବ୍ ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ନେପାଳ ଓ ଭାରତ ମଧ୍ୟରେ ଐତିହାସିକ, ରାଜନୈତିକ, ଅର୍ଥନୈତିକ ଓ ସର୍ବୋପରି ସାଂସ୍କୃତିକ ସଂପର୍କ ବହୁ ପ୍ରାଚୀନ ଓ ଅନ୍ତରଙ୍ଗ । ଭାଷା ସାହିତ୍ୟ, ଧର୍ମଧାରଣା, ଶିକ୍ଷାଦୀକ୍ଷା, ଶିଳ୍ପ, କୃଷି ଆଦି କ୍ଷେତ୍ରରେ ନେପାଳ ଭାରତ ଉପରେ ନିର୍ଭରଶୀଳ । ଭାରତ ସାମ୍ବିଧାନିକ ଦୃଷ୍ଟିରୁ ଏକ ଧର୍ମନିରପେକ୍ଷ ରାଷ୍ଟ୍ର ହେଲେ ହେଁ ନେପାଳ ଥିଲା ଏକ ହିନ୍ଦୁବହୁଳ ଦେଶ ଏବଂ ସମଗ୍ର ବିଶ୍ୱରେ ସର୍ବାଧିକ ହିନ୍ଦୁ ବାସ କରୁଥିବା ଭୂଖଣ୍ଡ । ତେଣୁ ଧାର୍ମିକ ଦୃଷ୍ଟିକୋଣରୁ ଭାରତ ଓ ନେପାଳ ମଧ୍ୟରେ ଅତୀତ ଘନିଷ୍ଠ ସଂପର୍କ । କ୍ଷୁଦ୍ର ହେଲେ ସୁଦ୍ଧା ନେପାଳ ଏକ ସ୍ୱାଧୀନ ସାର୍ବଭୌମ ରାଷ୍ଟ୍ର । ବିଭିନ୍ନ କ୍ଷେତ୍ରରେ ଏହା ଅନୁନ୍ନତ ଓ ବିକାଶଶୀଳ । ବିଗତ କେତେବର୍ଷ ହେଲା ନେପାଳରେ ରାଜନୈତିକ ଘନଘଟା ଓ ଅସ୍ଥିରତା ଯୋଗୁଁ ଯୁଗଯୁଗ ଧରି ଗଢ଼ି ଉଠିଥିବା ସଂପର୍କରେ କେତେକ ବାଧାବିଘ୍ନ ପହଞ୍ଚିଲେ ସୁଦ୍ଧା ପାରସ୍ପରିକ ସମ୍ବନ୍ଧ ଘନିଷ୍ଠ ଉଭୟ ଦେଶର ମଙ୍ଗଳ ଦୃଷ୍ଟିରୁ ଏକାନ୍ତ ଅପରିହାର୍ଯ୍ୟ ।



ଆୟତନ ଦୃଷ୍ଟିରୁ ନେପାଳ ୧୪୬,୧୮୧ ବର୍ଗକିଲୋମିଟର ହେଲାବେଳେ ଓଡ଼ିଶାର ଆୟତନ ୧୫,୭୦୭ ବର୍ଗ କିଲୋମିଟର । ସେମିତି ଲୋକସଂଖ୍ୟା ଦୃଷ୍ଟିରୁ ନେପାଳର ୨୮,୨୮୭,୧୪୭ ହେଲାବେଳେ ଓଡ଼ିଶାର ମୋଟ ଲୋକସଂଖ୍ୟା ୩୬,୮୦୪,୬୬୦ ଅର୍ଥାତ୍ ନେପାଳର ଲୋକସଂଖ୍ୟା ୨୬ ଲକ୍ଷ ହେଲାବେଳେ ଓଡ଼ିଶାର ୩ କୋଟି ୭୦ ଲକ୍ଷ । ଅଥଚ ନେପାଳର ନରପତି କେଉଁକାଳରୁ ଓଡ଼ିଶା ତଥା ଭାରତ ଏମିତିକି ସମଗ୍ର ହିନ୍ଦୁ ଜଗତର ପରମ ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କ ସେବାପୂଜା ପଦ୍ଧତିରେ ଶ୍ରେଷ୍ଠ ସମ୍ମାନ ଲାଭ କରିଛନ୍ତି । ଏହିପରି ମାନ୍ୟତା ପରମ୍ପରାକ୍ରମେ ଲାଭ କରିଥିବାରୁ ନେପାଳ ରାଜା ଶ୍ରୀମନ୍ଦିରର ରତ୍ନବେଦୀରେ ଶ୍ରୀଜଗନ୍ନାଥଙ୍କୁ ପୂଜା କରିଥାନ୍ତି । କେଉଁ କାରଣରୁ ନେପାଳ ନୃପତି ଏହି ସ୍ୱତନ୍ତ୍ର ସମ୍ମାନ ଶ୍ରୀମନ୍ଦିର ମଧ୍ୟରେ ଲାଭ କରିଛନ୍ତି, ଏଠାରେ ତାହା ଉଲ୍ଲେଖ କରାଯାଉଛି ।

ବିଭିନ୍ନ ରାଜ୍ୟର ରାଜନ୍ୟବର୍ଗ ଆସି ପୁରୀ ଶ୍ରୀମନ୍ଦିର ମଧ୍ୟରେ ସମ୍ମାନିତ ହୁଅନ୍ତି ଏବଂ ଉପଯୁକ୍ତ ମାନ୍ୟତାର ସହ ସେମାନେ ଜୀଉମାନଙ୍କର ପୂଜା ଆରାଧନା କରିଯାନ୍ତି । ସେମାନେ ମଧ୍ୟ ଠାକୁର ଓ ବ୍ରାହ୍ମଣମାନଙ୍କୁ କିଛି ଦାନ ଦକ୍ଷିଣା ଦେଇଥାନ୍ତି । ଏବେମଧ୍ୟ ଶ୍ରୀଜଗନ୍ନାଥଙ୍କ ରତ୍ନଭଣ୍ଡାରରେ କେତେ ଅମୂଲ୍ୟ ଧନରତ୍ନ ଓ ମଣିମୁକ୍ତା ଭର୍ତ୍ତି ହୋଇ ରହିଛି, ତାର କଳନା କରିବା ସମ୍ଭବ ନୁହେଁ । ନେପାଳ ନରପତି ସେହିପରି କ'ଣ ସାହାଯ୍ୟ କରିଛନ୍ତି କିମ୍ବା ଦାମୀ ଉପହାର ଦେଇଛନ୍ତି କି ?

କଥିତ ଅଛି ପ୍ରଥମ ଯଯାତି କେଶରୀ ବା ମହାଶିବ ଗୁପ୍ତ ଶ୍ରୀମନ୍ଦିରକୁ ଦ୍ୱିତୀୟଥର ନିର୍ମାଣ କରିଥିଲେ । ରତ୍ନସିଂହାସନରେ

ଚତୁର୍ଦ୍ଧାମୂର୍ତ୍ତିଙ୍କୁ ପ୍ରତିଷ୍ଠା କରିଥିଲେ । ମାଦଳାପାଞ୍ଜିରୁ ସ୍ପଷ୍ଟ ହୁଏ ଯେ ଶଙ୍କରାଚାର୍ଯ୍ୟଙ୍କ ପରାମର୍ଶକ୍ରମେ ନେପାଳ ନରପତି ଶଙ୍କର ଦେବଙ୍କ ପାଖକୁ ଭାରତୀ ଆଚାର୍ଯ୍ୟଙ୍କୁ ପଠାଗଲା । ସେଠାରୁ ଦୁଇଟି ଦୁର୍ଲ୍ଲଭ ଶାଳଗ୍ରାମ ସଂଗ୍ରହ କରାଯାଇ ବିଶେଷ ସେବାପୂଜା ପରେ ରତ୍ନମଣ୍ଡପ ଉପରେ ସ୍ଥାପିତ ହୋଇଥିଲେ । ଶଙ୍କରାଚାର୍ଯ୍ୟଙ୍କ ମତରେ ମହାଦେବଙ୍କୁ ଶିଳାଭଦ୍ର, ଶିବପତ୍ନୀ ଯୋଗମାୟାଙ୍କୁ ସୁଭଦ୍ରା ଓ ପୁରୁଷୋତ୍ତମଙ୍କୁ ଶ୍ରୀଜଗନ୍ନାଥ ରୂପେ ସେଠାରେ ପୂଜା ପାଇଲେ । ଏମାନଙ୍କ ବ୍ୟତୀତ ଶ୍ରୀକୃଷ୍ଣଙ୍କ ଆୟୁଧ ସୁଦର୍ଶନଚକ୍ର ସୁଦର୍ଶନ ଦେବ ନାମରେ ସେଠାରେ ପୂଜିତ ହେଲେ । ଦୁଇଟି ମହାର୍ଘ୍ୟ ତଥା ଦୁର୍ଲ୍ଲଭ ବୈଷ୍ଣବ ସନ୍ତକ ସ୍ୱରୂପ ବିଷ୍ଣୁଶିଳା (ଶାଳଗ୍ରାମ) ଦ୍ୱୟ ନେପାଳ ନରପତିଙ୍କଠାରୁ ମିଳିଥିଲା । ନେପାଳ ରାଜା ଶଙ୍କରଦେବ ପବିତ୍ର ଗଣ୍ଡୁକି ନଦୀ ଗର୍ଭରୁ ତାଙ୍କୁ ଉଦ୍ଧାର କରିଥିଲେ । ଉକ୍ତ ଶାଳଗ୍ରାମ ଦୁଇଟି ଥିଲେ ଉଭୟମୁଖୀ ଓ ସୁବର୍ଣ୍ଣଗର୍ଭା । ସେମାନେ ମଧ୍ୟ କୁଣ୍ଡଳିନୀ ଚିହ୍ନିତ ବିଷ୍ଣୁଶିଳା । ଏହି ବିରଳ ଓ ଦୁର୍ଲ୍ଲଭ ଉପହାର ପାଇ ପୁରୀ ଗଜପତି ରାଜା କୃତ୍ୟ କୃତ୍ୟ ହୋଇ ଚିରକାଳ ପାଇଁ କୃତଜ୍ଞତା ପ୍ରକାଶ କରିଥିଲେ । ପରେ ଉଭୟ ନେପାଳ ଓ ପୁରୀ ରାଜପରିବାର ମଧ୍ୟରେ ବିବାହ ସଂପର୍କ ଗଢ଼ି ଉଠିଥିଲା ଏବଂ ଏବେ ମଧ୍ୟ ତାର ପରମ୍ପରା ସୁରକ୍ଷିତ ହୋଇଛି ।

ନେପାଳର ରାଜବଂଶୀୟ ଓ ଜନସାଧାରଣ ଯେପରି ସୁବିଧାରେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ଲାଭ କରିପାରିବେ, ସେଥି ନିମନ୍ତେ ନେପାଳ ନୃପତି ସ୍ୱତନ୍ତ୍ର ଶ୍ରେଣୀର ପଣ୍ଡାଙ୍କୁ ନିଯୁକ୍ତି ଦେଇଥିଲେ । ସେମାନଙ୍କୁ ଲାଲମୋହରିଆ ପଣ୍ଡା ବୋଲି କୁହାଯାଇଥିଲା । ସେମାନଙ୍କୁ ରାଜା, ରାଜକୀୟ ମୋହର ଦିଆ ଗୋଟି ଲାଲରଙ୍ଗର ହୁଦା କାନ୍ଧରେ ପକାଇବାକୁ ଦେଉଥିଲେ । ସେହି ମୋହର ରୌପ୍ୟ ନିର୍ମିତ ଓ ସେଥିରେ ରାଜକୀୟ ସନ୍ତକ ଉତ୍କୀର୍ଣ୍ଣ ହେଉଥିଲା । ସେହି ପଣ୍ଡାମାନଙ୍କ ନଥିପତ୍ର ପୁରୁଷାନୁକ୍ରମେ ପରିଚାଳିତ ହେଉଥିଲା ଏବଂ ନେପାଳର କେଉଁ ଯାତ୍ରୀ କେବେ ପୁରୀ ଆସି ଶ୍ରୀଜଗନ୍ନାଥଙ୍କ ଦର୍ଶନ ଲାଭ କରିଥିଲେ ତାର ବିସ୍ତୃତ ସୂଚନା ସେହିସବୁ ନଥିପତ୍ରରେ ଲିପିବଦ୍ଧ ହୋଇଥାଏ । ପରେ କେତେକ ଭାରତୀୟ ପଣ୍ଡା ରାଜକୀୟ ସ୍ୱୀକୃତି ଲାଭ କରି ରାଜଧାନୀ କାଠମାଣ୍ଡୁସ୍ଥ ବିଖ୍ୟାତ ପଶୁପତିନାଥଙ୍କ ମନ୍ଦିରରେ ପୂଜକ ଭାବେ କାର୍ଯ୍ୟ କରୁଥିଲେ । ଏହି ନିକଟରେ ଏ ବ୍ୟବସ୍ଥା ବନ୍ଦ କରାଯାଇଛି । ସେମାନେ ଏଥିପାଇଁ ଏକପ୍ରକାର ସନନ୍ଦ ଲାଭ କରିଥିଲେ ରାଜାଙ୍କଠାରୁ । ଶ୍ରୀଜଗନ୍ନାଥଙ୍କ ରତ୍ନଭଣ୍ଡାରରେ ନେପାଳ ନରପତି ପ୍ରଦତ୍ତ ମୂଲ୍ୟବାନ୍ ଉପହାର ଗଚ୍ଛିତ ରହିଛି ।

ରାଜାଙ୍କ ବ୍ୟତୀତ ନେପାଳର ଧର୍ମପ୍ରାଣ ଧନୀକ ବ୍ୟକ୍ତିମାନେ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ନିଜ ନିଜର ଭକ୍ତି ନିବେଦନ କରିଛନ୍ତି । ୧୯୦୩ ଖ୍ରୀଷ୍ଟାବ୍ଦରେ ଶ୍ରୀନିତଗୋବିନ୍ଦ ନାମକ ଜଣେ ନେପାଳବାସୀ ଶ୍ରୀଜଗନ୍ନାଥଙ୍କୁ ଏକ ବିରାଟ ପିତ୍ତଳ ଘଣ୍ଟି ପ୍ରଦାନ କରିଥିଲେ । ଶ୍ରୀଜଗନ୍ନାଥଙ୍କ ଭଣ୍ଡାରଘର ପାଖରେ ଏହି ଘଣ୍ଟି ଏକ ବୃହତ୍ ଲୌହସ୍ତମ୍ଭରେ ଝୁଲିଥିବାର ଦେଖାଯାଏ । ଏହି ଘଣ୍ଟି ଉପରେ କେତେକଣ ଚିତ୍ରବିଚିତ୍ର ହୋଇଛି ଏବଂ ଲେଖାଯାଇଛି । ଉଭୟ ନେପାଳ ଓ ପୁରୀ ରାଜ ଦରବାରରେ ବିଦ୍ୱାନ ଓ ଧର୍ମନିଷ୍ଠ ସନ୍ଥଗଣ ସମ୍ମାନିତ ହୋଇଥାନ୍ତି । ବିଭିନ୍ନ ଅବସରରେ ସେମାନେ ନିମନ୍ତ୍ରିତ ହୁଅନ୍ତି । ନେପାଳବାସୀଙ୍କ ବିଚାରରେ ପୁରୀ ପୁରୁଷୋତ୍ତମ କ୍ଷେତ୍ର, ପବିତ୍ର ତୀର୍ଥସ୍ଥାନ । ଶ୍ରୀମନ୍ଦିର ହିନ୍ଦୁମାନଙ୍କର ପରମ ଆରାଧ୍ୟ ଦେବତା ଏବଂ ଓଡ଼ିଶାରେ ରହିଛି ଶ୍ରୀଜଗନ୍ନାଥ ଧାମ । ସେହିପାଠ ଓ ଏଠାରେ ଆରାଧ୍ୟ ଶ୍ରୀଜଗନ୍ନାଥ ସେମିତି ବୈଷ୍ଣବ, ଶୈବ, ବୌଦ୍ଧ, ଜୈନ ପ୍ରଭୃତିଙ୍କର ଉପାସ୍ୟ । ଶ୍ରୀଜଗନ୍ନାଥଙ୍କ ପ୍ରସାଦ ମହାପ୍ରସାଦ ଯେମିତି ମହିମାମୟ ସେମିତି ସୁସ୍ୱାଦ୍ୟ । ନେପାଳ ନରେଶ ଶ୍ରୀଜଗନ୍ନାଥଙ୍କ ପୂଜାପଦ୍ଧତିରେ ଏକ ସ୍ୱତନ୍ତ୍ର ସ୍ଥାନ, ସ୍ୱତନ୍ତ୍ର ସ୍ୱୀକୃତି ଏବଂ ପାରମ୍ପରିକ ଅଧିକାର ଭାବରେ ସର୍ବଦା ଓ ସର୍ବଥା ସ୍ୱୀକୃତ ହୋଇଛି ।

**ସହାୟକ ପାଠ୍ୟସୂଚୀ**


- ଦାଶ, ଅନିରୁଦ୍ଧ ଓ ପଣ୍ଡିତ ସଦାଶିବ ରଥଶର୍ମା, ଶ୍ରୀଜଗନ୍ନାଥ ଓ ନେପାଳ, ବିଦ୍ୟାପୁରୀ, କଟକ, ୧୯୭୮ ।
- Mishra K.C., The Cult of Jagannath, Orissa Sahitya Academi, Bhubaneswar



ଅବସରପ୍ରାପ୍ତ ପ୍ରଫେସର
୨୯୩୫୩, ଗୌରୀ ନଗର
ଭୁବନେଶ୍ୱର-୨




# ଅତୀତର ଗୁରୁକୁଳ ଶିକ୍ଷା

ବିକ୍ରମ କେଶରୀ ବର୍ମା

**ପ୍ରା**ଚୀନ ଭାରତରେ ଗୁରୁକୁଳ ଶିକ୍ଷାର ପ୍ରଚଳନ ଥିଲା ଓ ଗୁରୁମାନଙ୍କୁ ସମାଜରେ ସର୍ବୋତ୍କୃଷ୍ଟ ସମ୍ମାନ ପ୍ରଦାନ କରାଯାଉଥିଲା । ଗୁରୁଙ୍କୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ସହ (ଯଥା- ଗୁରୁ ବ୍ରହ୍ମା, ଗୁରୁ ବିଷ୍ଣୁ, ଗୁରୁଦେବ ମହେଶ୍ୱର) ତୁଳନା କରାଯିବା କମ୍ ତାତ୍ପର୍ଯ୍ୟର କଥା ନୁହେଁ । ସେତେବେଳେ ସମାଜରେ ଗୁରୁମାନଙ୍କୁ ଯେପରି ସମ୍ମାନ ପ୍ରଦାନ କରାଯାଉଥିଲା ରାଜା ମହାରାଜାଙ୍କୁ ମଧ୍ୟ ସେପରି ସମ୍ମାନ ପ୍ରଦାନ କରାଯାଉନଥିଲା ।




ଗୁରୁମାନେ ମହାଜ୍ଞାନୀ ଥିଲେ ଓ ସକଳ ଶାସ୍ତ୍ରରେ ନିପୁଣ ଥିଲେ । ସ୍ୱଦେଶେ ପୂଜ୍ୟତେ ରାଜା, ଜ୍ଞାନୀ ସର୍ବତ୍ର ପୂଜ୍ୟତେ । ରାଜା ନିଜ ଦେଶରେ ପୂଜା ପାଉଥିବାବେଳେ ଜ୍ଞାନୀ ବା ଗୁରୁ ସବୁଠାରେ ପୂଜିତ ହୋଇଥାନ୍ତି ବୋଲି ଆର୍ଯ୍ୟଋଷିମାନେ କହିଯାଇଛନ୍ତି । ପୁରାଣରେ ଗୁରୁ ବଶିଷ୍ଠ, ଶୁକ୍ରାଚାର୍ଯ୍ୟ, ଗୁରୁ ବିଶ୍ୱାମିତ୍ର, ପର୍ଶୁରାମ, ଦ୍ରୋଣ ଆଦିଙ୍କ ନାମ ବିଶେଷ ଭାବରେ ଉଲ୍ଲେଖ କରାଯାଇଛି । ସେମାନେ ଗୁରୁକୁଳ ଆଶ୍ରମରେ (ଯାହାକି ଆବାସିକ ବିଦ୍ୟାଳୟ ଥିଲା) ଶିଷ୍ୟମାନଙ୍କୁ ସକଳ ପ୍ରକାର ଶିକ୍ଷା, ଶାସ୍ତ୍ର ଶିକ୍ଷା, ଯୁଦ୍ଧ ବିଦ୍ୟା ଶିକ୍ଷା, ସାଂସାରିକ ବ୍ୟବହାରିକ ଶିକ୍ଷା, ଆଧାତ୍ମିକ ଶିକ୍ଷା ଓ ସର୍ବୋପରି ପ୍ରକୃତ ମଣିଷ ଗଠନର ଶିକ୍ଷା ପ୍ରଦାନ କରୁଥିଲେ । ଛାତ୍ରମାନଙ୍କୁ ସେତେବେଳେ ବ୍ରହ୍ମଚାରୀ କୁହାଯାଉଥିଲା ଓ ସେମାନେ ଛାତ୍ର ଜୀବନରେ ବ୍ରହ୍ମଚର୍ଯ୍ୟ ରକ୍ଷା କରୁଥିଲେ । ରାଜା ମହାରାଜାମାନେ ମଧ୍ୟ ସେମାନଙ୍କ ପିଲାମାନଙ୍କୁ ଗୁରୁକୁଳ ଆଶ୍ରମରେ ଶିକ୍ଷା ଲାଭ ପାଇଁ ଛାଡୁଥିଲେ ଓ ଶିକ୍ଷା ସମାପ୍ତ ପରେ ସେମାନେ ରାଜବାଟୀକୁ ଫେରି ଆସୁଥିଲେ । ସାଧାରଣ ଗରିବ ଶ୍ରେଣୀର ପିଲାମାନଙ୍କଠାରୁ ଆରମ୍ଭ କରି ରାଜା ମହାରାଜାଙ୍କ ପିଲାମାନେ ଏକାଠି ଗୁରୁକୁଳ ଆଶ୍ରମରେ ଅଧ୍ୟୟନ କରୁଥିଲେ । ଯଦୁପତି ଶ୍ରୀକୃଷ୍ଣଙ୍କଠାରୁ ଗରିବ ବ୍ରାହ୍ମଣ ସୁଦାମା ପର୍ଯ୍ୟନ୍ତ ସବୁ ଶ୍ରେଣୀର ପିଲା ଗୁରୁ ସନ୍ଦୀପନୀଙ୍କ ଆଶ୍ରମରେ ଅଧ୍ୟୟନ କରୁଥିଲେ ।

ଗୁରୁଦ୍ରୋଣ, ଶବର ପୁତ୍ର ଏକଲବ୍ୟକୁ ଶିକ୍ଷା ଦେବାକୁ ସମ୍ମତ ହୋଇଥିଲେ ମଧ୍ୟ ଅହଂକାରୀ ଦୁର୍ଯ୍ୟୋଧନ ଓ ତାର ଶତଭ୍ରାତାଙ୍କ କଥାରେ ଏକଲବ୍ୟକୁ ଛାତ୍ର ରୂପେ ଗ୍ରହଣ କରି ଅବଶ୍ୟ ଭୁଲ୍ କରିଥିଲେ । କିନ୍ତୁ ଏକନିଷ୍ଠ ଛାତ୍ର ଏକଲବ୍ୟ ଗୁରୁଦ୍ରୋଣଙ୍କ ପ୍ରତିମୂର୍ତ୍ତି ସ୍ଥାପନ କରି ତାଙ୍କଠାରୁ ସମସ୍ତ ପ୍ରକାର ଯୁଦ୍ଧ ବିଦ୍ୟା କୌଶଳ ଶିକ୍ଷାଲାଭ କରିପାରିଥିଲା । ଏହା ହେଉଛି ଏକନିଷ୍ଠତାର ପ୍ରମାଣ । ନଗରୀଠାରୁ ଦୂରରେ ଏକାନ୍ତ ଅଞ୍ଚଳରେ ବୃକ୍ଷଲତାଶୋଭିତ ମନୋରମ ପରିବେଶ ମଧ୍ୟରେ ଗୁରୁକୁଳ ଆଶ୍ରମଗୁଡ଼ିକ ପ୍ରତିଷ୍ଠା ହେଉଥିଲା । କର୍ମ ମାଧ୍ୟମରେ ଶିକ୍ଷା, ଆଧାତ୍ମିକତା ଓ ନୈତିକତାର ବିକାଶ ସାଙ୍ଗକୁ ସ୍ୱାବଲମ୍ବୀ କରିବା ଗୁରୁକୁଳ ଶିକ୍ଷାର ମୂଳମନ୍ତ୍ର ଥିଲା ।

୧. **କର୍ମାଭିମୁଖୀ ଶିକ୍ଷା** - ଗୁରୁକୁଳ ଶିକ୍ଷାରେ କର୍ମାଭିମୁଖୀ ଶିକ୍ଷାପ୍ରତି ଅଧିକ ଗୁରୁତ୍ୱ ଦିଆଯାଉଥିଲା ଛାତ୍ରମାନେ ପୁସ୍ତକ କୀଟ ନହୋଇ କର୍ମ ମାଧ୍ୟମରେ ଶିକ୍ଷାଲାଭ କରୁଥିଲେ । ଛାତ୍ରମାନେ କାଠ ଚିରିବା, ରୋଷେଇ କରିବା, କୃଷିକର୍ମରେ ସାହାଯ୍ୟ କରିବା, ଗୃହ ନିର୍ମାଣ କରିବା ତୀର ଚାଳନା କରିବା, ବ୍ୟାୟାମ, ପ୍ରାଣାୟାମ ଓ ଯୋଗ କରିବା, ମଲ୍ଲ ଯୁଦ୍ଧ କୁସ୍ତି ଆଦି ଶିକ୍ଷାଲାଭ କରୁଥିଲେ ।

ନିଜେ ଭଗବାନ ଶ୍ରୀକୃଷ୍ଣ ଗୁରୁ ସାନ୍ଦୀପନିଙ୍କ ଆଶ୍ରମରେ ଅଧ୍ୟୟନ କରୁଥିବାବେଳେ ଅନ୍ୟ ସାଥୀମାନଙ୍କ ସହ ଜଙ୍ଗଲରୁ କାଠ ଆଣିବା ପାଇଁ ଯାଉଥିଲେ । ଦିନେ ସାଥୀ ସୁଦାମା ସହ କାଠ ହାଣି ଫେରିବା ବେଳକୁ ସନ୍ଧ୍ୟା ହୋଇଯାଇଥିଲା ଓ ପ୍ରବଳ ବର୍ଷା ଝଡ଼ ତୋଫାନ ମାଡ଼ି ଆସିଥିଲା । ଫଳରେ ସେମାନେ ଆଶ୍ରମକୁ ଫେରି ନପାରି ଘଞ୍ଚ ଜଙ୍ଗଲରେ ବୃକ୍ଷ ଉପରେ ଚଢ଼ି ରାତ୍ର ଯାପନ କରିଥିଲେ ଓ ପ୍ରଭାତରେ ଆଶ୍ରମକୁ ଫେରିଥିଲେ । ସେତେବେଳକୁ ଗୁରୁ ଓ ଗୁରୁପତ୍ନୀ ବ୍ୟସ୍ତ ହୋଇ ପଡ଼ିଥିଲେ ଓ ଶିଷ୍ୟଦ୍ୱୟକୁ ଫେରି ଆସିବାର ଦେଖି ଆଖିରୁ ଆନନ୍ଦାଶ୍ରୁ ବହି ଯାଇଥିଲା ଓ ଗୁରୁପତ୍ନୀ ସେମାନଙ୍କୁ ନିଜ ହାତରେ ଖୁଆଇ ଥିଲେ ।

ଶିଷ୍ୟ ଆରୁଣୀଙ୍କର ଗୁରୁଭକ୍ତି ସମସ୍ତଙ୍କୁ ଜଣା । ଗୁରୁ ଧୌମ୍ୟ ଶିଷ୍ୟ ଆରୁଣୀଙ୍କୁ ଧାନଜମିରେ ଜଳ ଅଛିକି ନାହିଁ ଦେଖିବା ପାଇଁ ପଠାଇଥିଲେ । ଏହି ସମୟରେ ପ୍ରବଳ ବର୍ଷା ହୋଇ ବିଲ ହିଡ଼ ଗୋଟିଏ ସ୍ଥାନରେ ଭାଙ୍ଗିଯିବାରୁ ବିଲର ପାଣି ସେହି ବାଟେ ନିଷ୍କାସନ ହେବାକୁ ଲାଗିଲା । ଆରୁଣୀ ଯେତେଚେଷ୍ଟା କଲେ ମଧ ଘାଇ ବନ୍ଧେଇ ପାରିଲେ ନାହିଁ । ଶେଷକୁ ନିଜେ ଘାଇ ମୁହଁରେ ଶୋଇ ପାଣି ଅଟକାଇଲେ ।

ରାତ୍ରୀ ବଢ଼ି ବଢ଼ି ଚାଲିବା ସଙ୍ଗେ ସଙ୍ଗେ ବର୍ଷା ବଢ଼ି ବଢ଼ି ଚାଲିଲା । ତଥାପି ଶିଷ୍ୟ ଅରୁଣୀ ଫେରିଲା ନାହିଁ । ରାତି ଅଧବେଳକୁ ବର୍ଷା କମିବାରୁ ଗୁରୁ ଅନ୍ୟ ଶିଷ୍ୟମାନଙ୍କୁ ଧରି ଶିଷ୍ୟ ଅରୁଣୀକୁ ଖୋଜିବାକୁ ଗଲେ । ସେ ଧାନକ୍ଷେତରେ ପହଞ୍ଚି ଯେଉଁ ଦୃଶ୍ୟ ଦେଖିଲେ ତାଙ୍କର ବାକ୍ୟ ସ୍ଫୁରିଲା ନାହିଁ । ସେ ହତବାକ୍ ହୋଇ ଉଠିଲେ । ଅରୁଣୀ ତା'ର ସେବା ଶୁଶ୍ରୁଷା କଲେ । ଏପରି ଗୁରୁଭକ୍ତିର ପଟ୍ଟାନ୍ତର ନଥିଲା ।

**ଆଧ୍ୟାତ୍ମିକ ଶିକ୍ଷା :**

ଗୁରୁକୁଳ ଆଶ୍ରମରେ କର୍ମାଭିମୁଖୀ ଶିକ୍ଷା ସାଙ୍ଗକୁ ଆଧ୍ୟାତ୍ମିକ ଓ ନୈତିକ ଶିକ୍ଷା ପ୍ରଦାନ କରାଯାଉଥିଲା । କିପରି ଜୀବନରେ ସୁମଣିଷ ହୋଇପାରିବେ ଓ ଦେଶର ଉନ୍ନତି କରିପାରିବେ ଓ ଆତ୍ମାର ଉନ୍ନତି କରିପାରିବେ ସେଥିପ୍ରତି ଦୃଷ୍ଟି ଦିଆଯାଉଥିବା ଗୁରୁ ଶୁକଦେବ ଶିଷ୍ୟମାନଙ୍କୁ ଆଧ୍ୟାତ୍ମିକ ଚେତନା ଦେବା ପାଇଁ ଦ୍ୱାଦଶ ଖଣ୍ଡ ଭାଗବତ ବୟାନ କରିଥିଲେ ଓ ଖାରବେଳ ତାଙ୍କ ଶିଷ୍ୟମାନଙ୍କୁ ଭଗବଦ୍ ଗୀତାର ଦାର୍ଶନିକ ବ୍ୟାଖ୍ୟା ଶୁଣାଉଥିଲେ । ଗୁରୁ ବଶିଷ୍ଠ, ଗୁରୁ ଶୁକ୍ରାଚାର୍ଯ୍ୟ ସେମାନଙ୍କ ଶିଷ୍ୟମାନଙ୍କୁ ସକଳ ଶାସ୍ତ୍ରରେ ନିପୁଣ କରାଇପାରୁଥିଲେ । ରାଜର୍ଷି ଜନକ ସମସ୍ତ ପ୍ରକାର ସାଂସାରିକ କାର୍ଯ୍ୟରେ ଲିପ୍ତ ଥାଉ ମଧ କିପରି ଭାବରେ ଆଧ୍ୟାତ୍ମିକ ଚେତନା ଲାଭ କରିହେବ ତାହା ଶିକ୍ଷା ଦେଉଥିଲେ ।

**ସ୍ୱାବଲମ୍ବୀ ଶିକ୍ଷା :**

ଶିଷ୍ୟମାନେ ପୁସ୍ତକଗତ ବିଦ୍ୟାକୁ କିପରି କର୍ମ କ୍ଷେତ୍ରରେ ପ୍ରୟୋଗ କରି ସ୍ୱାବଲମ୍ବୀ ହୋଇପାରିବେ, ତାହା ଗୁରୁକୁଳ ଆଶ୍ରମରେ ଶିକ୍ଷା ଦିଆ ହେଉଥିଲା । ନିଜ କୌଳିକ ବିଦ୍ୟାର ବିକାଶ ପାଇଁ ଶିଷ୍ୟମାନଙ୍କୁ ତାଲିମ ଦିଆଯାଉଥିଲା । ଗୁରୁମାନେ କର୍ମଯୋଗପ୍ରତି ଅଧିକ ଗୁରୁତ୍ୱ ଦେଇ ଆସିଛନ୍ତି । କର୍ମ ବ୍ୟତୀତ ଜ୍ଞାନ ମୂଲ୍ୟହୀନ । ଉଭୟ ଜ୍ଞାନ ଓ କର୍ମକୁ ଜୀବନରେ ସଫଳ ଭାବରେ ପ୍ରୟୋଗ କରି ସ୍ୱାବଲମ୍ବୀ ହେବା ଗୁରୁକୁଳ ଶିକ୍ଷାର ମୂଳ ଲକ୍ଷ୍ୟ ଥିଲା । ଆଧୁନିକ ଶିକ୍ଷାପରି ଶାରୀରିକ କର୍ମ ବିମୁଖ ଓ ପୁସ୍ତକ କୀଟ ସୃଷ୍ଟି କରାଯାଉ ନଥିଲା । ପୁସ୍ତକ ବା ଶାସ୍ତ୍ରର ଜ୍ଞାନକୁ କିପରି ଜୀବନରେ ପ୍ରୟୋଗ କରି ସ୍ୱାବଲମ୍ବୀ ସୁନାଗରିକ ହୋଇପାରିବ ତାହା ହିଁ ଗୁରୁକୁଳ ଆଶ୍ରମରେ ଶିକ୍ଷା ଦିଆଯାଉଥିଲା ।

ଆଦି ଗୁରୁକୁଳ ଶିକ୍ଷାପ୍ରତି ସିଂହାବଲୋକନ କରି ଆଧୁନିକ ଶିକ୍ଷା ପଦ୍ଧତିର ପରିବର୍ତ୍ତନ କରିବାର ସମୟ ଆସିଛି ଓ ସେଥିପାଇଁ ଅଧିକ ଆନୁଧ୍ୟାନ ଓ ଗବେଷଣା ଆବଶ୍ୟକ ।

ପୂର୍ବତନ ବିଧାୟକ
ଡି.ଏସ୍.-୧୭/୧, ୟୁନିଟ୍-୪
ଭୁବନେଶ୍ୱର-୧



# ବନବାସୀ ବଣ୍ଡା

ଯତିନ୍ଦ୍ର କୁମାର ରାଉତ

**ଭା**ରତବର୍ଷର ତିରିଶି ଗୋଟି ରାଜ୍ୟମାନଙ୍କ ମଧ୍ୟରୁ ମଧ୍ୟପ୍ରଦେଶ ସର୍ବପ୍ରଥମ ଆଦିବାସୀ ବହୁଳ ରାଜ୍ୟ ରୂପେ ପରିଗଣିତ ହୋଇଥିବାବେଳେ ଓଡ଼ିଶା ଦ୍ୱିତୀୟସ୍ଥାନ ଗ୍ରହଣ କରିଅଛି । ଓଡ଼ିଶାର କୋରାପୁଟ (ଅବିଭକ୍ତ) ବଲାଙ୍ଗୀର ଓ କଳାହାଣ୍ଡି ଜିଲ୍ଲାମାନଙ୍କରେ ବିଶେଷତଃ ଆଦିବାସୀ ସଂପ୍ରଦାୟର ଲୋକମାନଙ୍କୁ ଦେଖିବାକୁ ମିଳେ । ଓଡ଼ିଶାରେ ବସବାସ କରୁଥିବା ବାଷଠିଟି ଜନଜାତି ମଧ୍ୟରୁ କେବଳ ବାଇଶଟି ଜନଜାତି ଅବିଭକ୍ତ କୋରାପୁଟ ଜିଲ୍ଲାରେ ଦେଖିବାକୁ ମିଳିଥାନ୍ତି । ଉକ୍ତ ବନବାସୀମାନଙ୍କ ଇତିହାସ ଅନେକ ଭାବରେ ବର୍ଣ୍ଣିତ ହୋଇ ଆସୁଥିଲେ ମଧ୍ୟ କେତେକ ସତ୍ୟ ଘଟଣା ପରଦାର ଅନ୍ତରାଳରେ ରହିଯାଇଛି । ସେହି ବନବାସୀମାନଙ୍କ ମଧ୍ୟରେ ଅନେକ ଜାତି, ଅନେକ ପ୍ରଥା, ବିଭିନ୍ନ ଚଳଣିକୁ ନେଇ ଅଧିକାଂଶ ସମୟରେ ନରସଂହାର ମଧ୍ୟ ଘଟିଥାଏ । ସେମାନେ ନିଜନିଜର ପ୍ରଥାରେ ପ୍ରଚଳିତ ସାମାଜିକ ବ୍ୟବସ୍ଥାକୁ ପ୍ରାଣ ଦେଇ ସମର୍ଥନ କରିବା ସହିତ ପାଳନ କରିଥାନ୍ତି । ନିଜ ନିଜ ଜୀବନକୁ ମଧ୍ୟ ବାଜି ଲଗେଇ ଦିଅନ୍ତି ନିଜ ଜାତି, ସଂସ୍କୃତି କି ବିଶ୍ୱାସବୋଧକୁ ଅକ୍ଷୁଣ୍ଣ ରଖିବା ପାଇଁ ।



ସେହି ବନବାସୀମାନଙ୍କ ମଧ୍ୟରୁ 'ବଣ୍ଡା' ଜାତି ଏକ ସ୍ୱତନ୍ତ୍ର ଭାବରେ ନିଜ ଜାତିର ପରିଚୟ ସୃଷ୍ଟି କରିଅଛି । ଏମାନଙ୍କର ଉତ୍ପତ୍ତି ସ୍ଥିତି, ବ୍ୟବସ୍ଥା ଇତ୍ୟାଦି ଯେତିକି ରହସ୍ୟାତ୍ମକ ମନେହୁଏ, ସେତିକି ଆଶ୍ଚର୍ଯ୍ୟ ହେବାକୁ ମଧ୍ୟ ପଡ଼ିଥାଏ । ବଣ୍ଡା ସଂପ୍ରଦାୟର ବନବାସୀମାନେ ନିଜକୁ ଗଦବା ବୋଲି ନିଜକୁ ପରିଚୟ ଦେବା ସଂଗେସଂଗେ ସେମାନଙ୍କ ପୂର୍ବପୁରୁଷ ଦକ୍ଷିଣ ଭାରତର ଗୋଦାବରୀଠାରୁ ଆସିଥିବା ଦୃଷ୍ଟିକୋଣରୁ ସେମାନେ ନିଜକୁ 'ଗୋଦାବରିଆ' ବା 'ଗଦବା' ନାମରେ ପରିଚୟ ଦେଇଥାନ୍ତି ।

ଲୋକେ ବଣ୍ଡାଙ୍କ ଅଞ୍ଚଳରେ ଆରଲେମପୁଟ ଗ୍ରାମରୁ ଚାଷ ନିମିତ୍ତ ଚାଷଜମି, ଡଙ୍ଗର ଅନ୍ୱେଷଣରେ ଆସି ବଣ୍ଡା ପର୍ବତ ମାଳରେ ପହଞ୍ଚି ବଣ୍ଡାପଡ଼ା 'ମୁଁ ଗଲେ ଗାଁ ବସେଇଲେ ଏବଂ ପରେ ପରେ ଏହି ଲୋକମାନେ ବୁରୁସୁଂ ପାହାଡ଼ରେ 'ମୁନାଙ୍ଗମ' ସ୍ଥାପନ କଲେ । ଚରୁଅର୍ଣ୍ଣ ବା 'ସ୍ୱରଜାଂ' ଖାଇ ପ୍ରତିଜ୍ଞାବଦ୍ଧ ହେଲେ । ଏମାନେ ସଂଖ୍ୟାଲଘୁ ଥିବାରୁ, ପରିବାର ବର୍ଦ୍ଧିତ ପାଇଁ ଏମାନେ ନିଜ ନିଜ ଭିତରେ ବୈବାହିକ ସଂପର୍କ ସ୍ଥାପନ କରୁଥିଲେ । ସଂଖ୍ୟା ବଢ଼ି ଯିବା ପରେ ଏହି ବଣ୍ଡା ଲୋକେ ବିଭିନ୍ନ ସ୍ଥାନରେ ମୁନାଙ୍ଗମ୍ ପ୍ରତିଷ୍ଠା କରିଥିଲେ ।

ବଣ୍ଡା ସଂପ୍ରଦାୟର ପ୍ରତ୍ୟେକ ନରନାରୀଙ୍କ ନାମ ସାତଟି ବାର ଅନୁଯାୟୀ ଅର୍ଥାତ୍ ଯିଏ ଯେଉଁବାରରେ ଜନ୍ମ ନେଲା ସେହି ଭଳି ନାମକରଣ କରାଯାଇଥାଏ । ପୁରୁଷଙ୍କ ନାମ ସହିତ 'ସାର' ଶବ୍ଦ ଯୋଗ ହୋଇ ସୋମସାର, ମଙ୍ଗଳସାର, ବୁଧିସାର ହେଉଥିବା ବେଳେ ସ୍ତ୍ରୀମାନଙ୍କ ନାମରେ ସୋମବାରୀ ସାର, ମଙ୍ଗଳବାରୀ ସାର ଇତ୍ୟାଦି । ସେହିପରି କିଛି ବଣ୍ଡାମାନେ ଗାଁ ଅନୁସାରେ ମଧ୍ୟ ଗାଁର ନାମକୁ ନିଜ ନାମ ସହିତ ଯୋଗକରି ଲେଖିଥାନ୍ତି, ଯଥା- ମାଲିଅର ଗାଁର ଲୋକମାନେ 'ଅର' ଶବ୍ଦକୁ ତାଙ୍କ ନାମ ସହିତ ଯୋଗ କରିଥାନ୍ତି, ଯଥା- ସୋମାଅର, ଶୁକ୍ରାଅର, ଶନିଅର, ସୋମବାରୀଅର ଓ ଛନ୍ଦିଅର ଇତ୍ୟାଦି ।

**ବଣ୍ଡାଙ୍କ ବିବାହ ପ୍ରଥା -**

ବଣ୍ଡାମାନଙ୍କ ବିବାହ ପ୍ରଥା ଅତି ଅଦ୍ଭୁତ ଏବଂ କୌତୁହଳପୂର୍ଣ୍ଣ । ବଣ୍ଡାମାନଙ୍କର ଯେତେପ୍ରକାର ବିବାହ ପ୍ରଥା ଅଛି ସେମାନଙ୍କ ମଧ୍ୟରୁ 'ଲୁଲୁବିବା' ବା 'ମଗାବିବା' ଅନ୍ୟତମ । ତାହା ଶୃଙ୍ଖଳିତ ଭାବେ ଅନୁଷ୍ଠିତ ହୋଇଥାଏ । ଉଭୟ ପକ୍ଷ ପ୍ରସ୍ତାବ ଆଗତ କରି ମାଟିରେ ମଦ ଢାଳି ବିବାହ ପାଇଁ ଶପଥ ନେଇଥାନ୍ତି । ସେହି ପ୍ରଥାରେ ମଧ୍ୟ 'ଖେଲାଗ୍‌ବଏ' ଖଡ୍ଗପିନ୍ଧା ଉତ୍ସବ ଅର୍ଥାତ୍ କନ୍ୟାମାନେ ବର ଘରକୁ ଏବଂ ବରମାନେ କନ୍ୟା ଘରକୁ ଯାଇ ନିଜ ନିଜର କାର୍ଯ୍ୟ ଦକ୍ଷତା ବିଷୟରେ ପ୍ରମାଣ ଦେଇଥାନ୍ତି । ଭୋଜିଭାତର ଆୟୋଜନ ମଧ୍ୟ କରାଯାଇଥାଏ । ପୌଷପର୍ବରେ ମଙ୍ଗଳବାର କିମ୍ବା ଶନିବାର ଦିନ ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ କନିଆ ଅଣାଯାଏ ଓ ଫାଲଗୁନ ମାସ ସମୟରେ 'ଗିନିଂ' ଜୋଲା, ଗୋରୁ 'ଗୋଇତାଂ' ଦିଆଯାଏ ।

ଆଉ ଏକପ୍ରକାର ବିବାହ 'ଗୁବଏ' ବା ଅପହରଣ ପ୍ରଥା ମଧ୍ୟ ଏମାନଙ୍କ ସଂପ୍ରଦାୟରେ ଦେଖାଯାଇଥାଏ । ଏହି ବିବାହରେ କନ୍ୟାକୁ ଜୋରଜବରଦସ୍ତ ଅପହରଣ କରି ନିଆଯାଏ, କିନ୍ତୁ କନିଆ ନ ବୁଝିଲାଯାଏଁ ବିବାହ କାର୍ଯ୍ୟ ହୋଇନଥାଏ । ପ୍ରଥମେ କନିଆକୁ ବୁଝେଇବାକୁ ଦୁଇ ତିନି ବର୍ଷ ଲାଗିଯାଏ । ଯଦି କନ୍ୟା ନ ମାନିଲା, ଶେଷରେ ଏ 'ଗୁବଏ' ପ୍ରଥା ଅବଲମ୍ବନ କରାଯାଏ । ପ୍ରାୟତଃ ସେମାନଙ୍କ ବିବାହ ୧୨/୧୪ ବର୍ଷ ମଧ୍ୟରେ ହୋଇଥାଏ । ଯଦି ୧୬/୧୭ ବର୍ଷ ହୋଇଯାଏ ତେବେ ସେମାନଙ୍କୁ ଧାଙ୍ଗଜୀବସା 'ଙ୍ଗେରସୁଂ'କୁ 'ଶେଲାବ୍‌ଗୁଏ' ଯାଇ ଖଡୁ 'ସୁଂରଇ' ପିନ୍ଧେଇବାକୁ ଚେଷ୍ଟା କଲେ ମଧ୍ୟ କନିଆ ସେମାନଙ୍କୁ ବୁଢ଼ାବର ବୋଲି କହିଥାଏ । ଏଥିରେ ଅସଂଫଳ ହେଲେ ବରମାନେ ଅପେକ୍ଷା କରି ରହିଥାନ୍ତି ଡଙ୍ଗର ଚାଷ ସମୟରେ । ସାଧାରଣତଃ ଏହି ଡଙ୍ଗର ଚାଷରେ ସ୍ତ୍ରୀଲୋକ ବା ଝିଅମାନେ ବିଶେଷ ଅଂଶଗ୍ରହଣ କରୁଥିବାରୁ, କାର୍ଯ୍ୟବ୍ୟସ୍ତତା ସମୟରେ ଝିଅମାନଙ୍କ ଅନ୍ୟମନସ୍କତାର ସୁଯୋଗ ନେଇ କନିଆକୁ ଝିଙ୍କି ନେଇଆସନ୍ତି । ବରଘରେ ଝିଅକୁ ବୁଝାଇ 'ସୁରୁଜାଂ' ଖୁଆଇ ଶପଥ କରି ପୁନଶ୍ଚ ତାଙ୍କ ଘରେ ଛାଡ଼ି ଦେଇ ଆସନ୍ତି । ଏହି ବିବାହକୁ 'କଳିଆଝିକା' କୁହାଯାଉଥିଲେ ମଧ୍ୟ ଏହା ଅତି ଶୃଙ୍ଖଳାସହ ଅନୁଷ୍ଠିତ ହୋଇଥାଏ । କନିଆ 'ସୁରଜାଂ' ଛୁଇଁ ଶପଥ ନକଲାଯାଏଁ, କନିଆପ୍ରତି କୌଣସି ଅଶାଳୀନ ବ୍ୟବହାର ପ୍ରଦର୍ଶନ କରାଯାଇନଥାଏ । ପୁନଶ୍ଚ ତାକୁ ନିଜ ଘରକୁ ଫେରାଇ ଦିଆଯାଇ ସଂପ୍ରଦାୟାର ବୈବାହିକ ଆଲୋଚନାକୁ ଭିତ୍ତିକରି କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥାଏ ।

ବରପିତା ଜୋଲା 'ଗିନିଂ' ଗାଇବଳଦ ନେଇ କନ୍ୟାପିତା ଘରକୁ ଯିବା ଦିନ ଗୋଟିଏ ବଡ଼ ତାଲା 'ଡାମୁଂ'ରେ ଭାତ ଓ ମାଂସ ଭର୍ତ୍ତିକରି ଚାରିଜଣ ଲୋକ ବୋହି ନିଅନ୍ତି ଓ ହାଣ୍ଡିଆ, ପେଣ୍ଡମ୍ ହାଣ୍ଡିଏ ବା ଦୁଇହାଣ୍ଡି ଦୁଇଜଣ ବୋହି ନେଇଥାନ୍ତି । ଏହି ଭାତକୁ ଗିନିଜାଂ ବା ଡୁଣ୍ଡୟିଂ ସୁମ୍‌ଦାଂ କୁହାଯାଏ । ଯଦି କେହି 'ଗିନିଂ' ଜୋଲାଗୋରୁ 'ଗୋଇତାଂ' କନ୍ୟାପିତା କିମ୍ବା ସଂପର୍କୀୟଙ୍କୁ ବିଳମ୍ବ ହୁଏ ତାହେଲେ ସ୍ୱାମୀ ସ୍ତ୍ରୀକୁ ପ୍ରେମ ଆବେଦନ ମଧ୍ୟ କରିପାରିବନି ।

ଏତଦ୍‌ଭିନ୍ନ ବଣ୍ଡା ସଂପ୍ରଦାୟରେ 'ଲଂସିଂ' ଛାଡ଼ପତ୍ର ପ୍ରଥା ମଧ୍ୟ ପ୍ରଚଳିତ ଅଛି । ବିଧବା ବିବାହ, ଦ୍ୱିତୀୟ ବିବାହ, ତୃତୀୟ ବିବାହ କିମ୍ବା ଚତୁର୍ଥ ବିବାହ ପ୍ରଥା ମଧ୍ୟ ପ୍ରଚଳିତ ଅଛି । ଏହି ବିବାହ 'ଗୁବ୍‌ଏ' ଅନୁଯାୟୀ ପ୍ରାୟତଃ ହୋଇଥାଏ ।

କନିଆ ଆଣିବା ସମୟରେ ସେମାନେ ଏହିପରି ଗୀତ ବୋଲିଥାନ୍ତି । ତାହା ହେଲା-

ମଏନା ତମ୍‌କିମି ମଇନା ଗୁସାଂତମ୍
ଗୁସାଂତମ କିମି ମଏନା ରାମ୍ବିତମ୍...
ଦିଗସର ରିଂନେ ମଏନା ଲେସର
ଲେସେର ରିଂକେ ମଏନା ତାୟିଂସର
ଗେୟୁଁର କିମି ମଏନା ବାଉଁରା
ବାଉଁରା କିମି ମଏନା ପାରାକୁର
ଖିଣ୍ଡିଂଅନ୍ କିମି ମଏନା ଲାଗଡ଼ିଂଅନ୍
ଲାଗଡ଼ିଂ ଅନ୍‌କିମ ମଏନା ଥଗଡ଼ିଂ ଅମ ।

(ମଇଳା ଭଳି ବୋହୂ ସୁନ୍ଦରୀ ହଳଦୀ ବସନ୍ତ
ହଳଦୀ ସେନ୍ତ ବୋହୁ ଆମରି ବଣିତ
ଟେକି ଗାଇ ନେଲୁ ସୁନ୍ଦରୀ ବସି ଗାଇ
ବସି ଗାଇ ନେଲୁ ସୁନ୍ଦରୀ ବସିଗାଇ
ଗେୟୁଁର ବାଉଁରା ବୋହୁ ପରବତେ
ପାରାଗୁଡ଼ି ନାମରେ ସେ ନାମିତ
ଢୋଲପଥର ପାଲଟିଚି ପରବତେ
ଡଙ୍ଗର ପୋଡ଼ିଲେ ଦେଖେଇବୁ ତୋତେ ।)

ବଣ୍ଡା ସଂମ୍ପ୍ରଦାୟର ସଂସ୍କୃତି ବେଶ୍ ବୈଚିତ୍ର୍ୟମୟ । ବରର ବୟସ ସାତବର୍ଷରୁ ଚଉଦବର୍ଷ ଯାଏଁ ଏବଂ କନ୍ୟାର ବୟସ ୧୬ରୁ ୨୨, ଚବିଶ୍ ବର୍ଷ ମଧ୍ୟରେ ହୋଇଥିବା ସମୟରେ ବୈବାହିକ ସଂପର୍କ ସ୍ଥାପନ କରିବାକୁ ସମାଜ ଯଥୋଚିତ ମନେ କରେ । ବାସ୍ତବରେ ଏଭଳି ପ୍ରଥାଯୋଗୁଁ ବଣ୍ଡା ସମାଜ ବେଶ୍ ଶୃଙ୍ଖଳିତ ।

**ବଣ୍ଡାମାନଙ୍କ ପାଟଖଣ୍ଡ ଯାତ୍ରା**

ବଣ୍ଡାମାନଙ୍କର ନିଜସ୍ୱ ସଂସ୍କୃତି ଓ ଐତିହ୍ୟ ରହିଛି । ଏହି ସଂସ୍କୃତିମାନଙ୍କ ଭିତରୁ ପାଟଖଣ୍ଡା ଯାତ୍ରା ଅନ୍ୟତମ । ମାଘ ପୂର୍ଣ୍ଣିମା ଦିନ ଏହି ପାଟଖଣ୍ଡା ଯାତ୍ରା କେଉଁ ଆବାହମାନ କାଳରୁ ପ୍ରଚଳିତ ହୋଇ ଆସୁଅଛି । ବରଗଛ କୋରଡ଼ରେ ଖଣ୍ଡା ପରି ଦେଖାଯାଉଥିବା ଏହି ଠାକୁର ବଣ୍ଡାମାନଙ୍କର ପ୍ରତ୍ୟକ୍ଷ ଦେବତା ରୂପେ ବିବେଚିତ ହୋଇଆସୁଅଛି । ମୁଦୁଲିପଡ଼ା ପୂର୍ବତଟରେ କପରସୁଆଁ ଝରଣା ଏବଂ ଏହା ଯେଉଁଠି ଗାତଟିଏ ସୃଷ୍ଟି କରିଅଛି । ଏହାକୁ 'ସୀତାକୁଣ୍ଡ' ବୋଲି କୁହାଯାଏ କାରଣ ବନବାସ ସମୟରେ ସୀତା ଏହି କୁଣ୍ଡପରି ଖାଡିଆରେ ସ୍ନାନ କରିଥିବାରୁ ତାଙ୍କରି ନାମ ଅନୁସାରେ ଏହାକୁ ନାମକରଣ କରାଯାଇଅଛି । ଏହି କୁଣ୍ଡର ପାଣି ଅତି ପବିତ୍ର ଏବଂ ଦେବାର୍ଚ୍ଚନାରେ ପ୍ରୟୋଗ / ବ୍ୟବହାର କରାଯାଇଥାଏ । ପାଟଖଣ୍ଡା ଠାକୁର ଏହି ପାଣିରେ ସ୍ନାନ କରି ପୂଜାର୍ଚ୍ଚନା ହୋଇଥାଆନ୍ତି ।

ପାଟଖଣ୍ଡାଙ୍କ ପାଖରେ ଯେଉଁ ନୈବେଦ୍ୟ ହୋଇଥାଏ ତାହା ଏକ ବାଉଁଶ ନଳୀରେ ଅରୁଆ ଚାଉଳ, ହଳଦୀ, ଶୁଖୁଆ, ଲୁଣ ମରିଚ ଇତ୍ୟାଦି ଭର୍ତ୍ତିକରି ବାଉଁଶ ନଳୀର ମୁହଁକୁ ଭଲ ଭାବରେ ବନ୍ଦ କରି ନିଆଁ ଭିତରେ ପୋତି ଦିଆଯାଏ । ଏହି ନଳୀରେ ସମସ୍ତ ଦ୍ରବ୍ୟ ସିଦ୍ଧ ହୋଇ ଚରୁଅର୍ଣ୍ଣରେ ପରିଣତ ହୋଇଥାଏ । ଏହି ପ୍ରସାଦକୁ ପାଟଖଣ୍ଡା ନିକଟରେ ଭୋଗ କରାଯାଇଥାଏ । ତାପରେ ଭକ୍ତମାନେ ମନବାଞ୍ଛା ସିଦ୍ଧି ନିମନ୍ତେ, କୁକୁଡ଼ା, ଛେଳି, ମେଣ୍ଢା ଇତ୍ୟାଦିକୁ ବଳି ଦିଆଯାଇଥାଏ । ପାଟଖଣ୍ଡାକୁ କେବଳ ମାଳିମାନେ ପୂଜା କରିବାର ବିଧି ରହିଛି ।

ସଭ୍ୟତାର ଅଗ୍ରଗତି ତଥା ଜଗତୀକରଣର ପ୍ରଭାବରେ ଆଦିବାସୀ ସଂସ୍କୃତିର ଦ୍ରୁତ ପରିବର୍ତ୍ତନ ଲକ୍ଷ୍ୟ କରାଯାଉଅଛି । ସେମାନେ ଆଧୁନିକ ସମାଜ ସହ ନିଜକୁ ବଦଳାଇଛନ୍ତି ସତ, କିନ୍ତୁ ନିଜ ସଂସ୍କୃତି ଓ ପରମ୍ପରାକୁ ସେମାନଙ୍କ ପାଖରୁ ଦୂରେଇ ନିଆଯାଉଥିବା କଥାର ପ୍ରତିବାଦ କରୁନାହାନ୍ତି । ଯୁଗବଦଳୁ, ସଭ୍ୟତାକୁ ସେମାନେ ପାଦ ବଢ଼ାନ୍ତୁ, କିନ୍ତୁ ଅତୀତର କିଛି ଗୁରୁତ୍ୱପୂର୍ଣ୍ଣ ବିଚାରଧାରା ଓ ପରମ୍ପରା କିଛି ଭାରତୀୟ ସଂସ୍କାରବୋଧ ତାଙ୍କ ପାଖରୁ ହଟି ନଯାଉ । ଆଧୁନିକ ନାମରେ ଆମେ ହରାଇ ବସିଥିବାବେଳେ ସେହି ନିରୀହ, ନିଷ୍କପଟ, ଦରଦୀ ବିଚାରବୋଧର ମଣିଷମାନେ ଅପସଂସ୍କୃତିର ଶିକାର ନ ହୁଅନ୍ତୁ, ଏହି ମନୋବୃତ୍ତି ଶିକ୍ଷିତ ସମାଜରେ ରହୁ ।

ଅଧ୍ୟାପକ, ଇଂରାଜୀ ବିଭାଗ
ସାହାସପୁର ମହାବିଦ୍ୟାଳୟ
ବାଲିଚନ୍ଦ୍ରପୁର, ଯାଜପୁର-୭୫୪୨୦୫

---




ସୂଚନା ଓ ଲୋକ ସଂପର୍କ ବିଭାଗ, କୋଲକାତା ଶାଖା ଓ ଉତ୍କଳୀୟ ମିଳିତ ମଞ୍ଚଙ୍କ ମିଳିତ ଆନୁକୂଲ୍ୟରେ କୋଲକାତାର ଇଣ୍ଡିଆନ୍ ଆସୋସିଏସନ୍ ହଲ୍‌ରେ ସ୍ୱାଧୀନତା ଦିବସ (୨୦୦୯) ଉପଲକ୍ଷେ ବକ୍ତୃତା ପ୍ରତିଯୋଗିତାରେ ପୁରସ୍କୃତ ହୋଇଥିବା ଓଡ଼ିଆ ସ୍କୁଲ ଛାତ୍ରଛାତ୍ରୀବୃନ୍ଦ ।

ସୌଜନ୍ୟ : ଶ୍ରୀ କିଶୋର ଚନ୍ଦ୍ର ନାୟକ, ସୂଚନା ଅଧିକାରୀ, କୋଲକାତା

# ଆମ ସଂସ୍କୃତିରେ - ପାଲା

ଡକ୍ଟର ଜୟନ୍ତୀ ମହାନ୍ତି

ଓଡ଼ିଶାର ସାରସ୍ୱତ କଳା କ୍ଷେତ୍ରରେ ପାଲା ଏକ ପ୍ରାଚୀନ କଳା । ଲୋକ ସଂସ୍କୃତିର ଏକ ବଳିଷ୍ଠ ପ୍ରତୀକ ରୂପେ ପରିଚିତ ହେବା ସହ ଉଭୟ ଗ୍ରାମ ଓ ସହର ମଧ୍ୟରେ ଏକ ସାଂସ୍କୃତିକ ସେତୁ ରୂପେ ପରିଚିତ ହୋଇପାରିଛି । ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ସଂହତି, ସଂପ୍ରୀତି ଓ ସଦ୍‌ଭାବ ସୃଷ୍ଟି କରିବାର ପ୍ରୟାସ ମଧ୍ୟରୁ ସୃଷ୍ଟି ହୋଇଥିବା ପାଲା ହିନ୍ଦୁ ଓ ମୁସଲମାନ ଧର୍ମର ସାଂସ୍କୃତିକ ସମନ୍ୱୟର ଏକ ମଧୁର ଫଳଶ୍ରୁତି କହିଲେ ଅତ୍ୟୁକ୍ତି ହେବ ନାହିଁ । ହିନ୍ଦୁଧର୍ମର ଉଦାର ଗ୍ରହଣଶୀଳତା ଓ ଆଦର୍ଶ ଅନ୍ୟ ସଂସ୍କୃତିକୁ ସର୍ବଦା ଆତ୍ମସ୍ଥ କରିଆସିଛି । ଏହି ଆତ୍ମସ୍ଥ କରିବାର ପ୍ରକ୍ରିୟାକୁ ପ୍ରତିନିଧିତ୍ୱ କରିବାକୁ ଯାଇ ଓଡ଼ିଶାରେ ଆଫ୍‌ଗାନ ପଠାଣ ଓ ମୋଗଲମାନଙ୍କ ଶାସନ ସମୟରେ ସେମାନଙ୍କ କୋପ ଦୃଷ୍ଟିରୁ ରକ୍ଷା ପାଇଁ 'ଷୋଳପାଲା'ର ସୃଷ୍ଟି କରିଥିଲେ କବିକର୍ଣ୍ଣ । କେତେକ ସମାଲୋଚକଙ୍କ ମତରେ କବିକର୍ଣ୍ଣଙ୍କ ପୂର୍ବରୁ ପାଲାର ପରମ୍ପରା ରହିଥିଲା । ସେମାନଙ୍କ ମତରେ ଅନ୍ୟାନ୍ୟ ଲୋକନାଟକ ତୁଲ୍ୟ ପାଲାକୁ ମଧ ଧର୍ମପ୍ରଚାର ନିମନ୍ତେ ମାଧ୍ୟମ ଭାବରେ ଗ୍ରହଣ କରାଯାଇଥିଲା । ବୌଦ୍ଧ ଧର୍ମର ପ୍ରଚାର ସମୟରେ ପାଲିଭାଷାରେ ରଚିତ ବୌଦ୍ଧ ଜାତକ ଗଳ୍ପଗୁଡ଼ିକୁ ସାଂଗୀତିକ ରୂପ ଦେଇ ଜନପଥରେ ଗାନ କରାଯାଉଥିଲା ଓ ଏହା ହିଁ ଥିଲା ପାଲାର ପ୍ରାଥମିକ ରୂପ । ଓଡ଼ିଶା ରାଜ୍ୟ ଗେଜେଟରେ ଉଲ୍ଲେଖ ଅଛି, ଅବିଭକ୍ତ ବଙ୍ଗଳାର ବିଭିନ୍ନ ଗାଥା ସଂଗୀତରୁ ପାଲାର ସୃଷ୍ଟି ଓ ପରବର୍ତ୍ତୀ ସମୟରେ ଅର୍ଥାତ୍ ଷୋଡ଼ଶ ଶତାବ୍ଦୀର ଶେଷ ଭାଗ ଓ ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗରେ ମୁସଲମାନ ଶାସନରେ ଏହା ପ୍ରସାର ଲାଭ କରିଥିଲା । ଷୋଡ଼ଶ ଶତାବ୍ଦୀରେ ଆକବରଙ୍କ ପୂର୍ବରୁ ବଙ୍ଗଳାର ଆଲାଉଦ୍ଦିନ ହୁସେନ ଶାହା ହିନ୍ଦୁ ଓ ମୁସଲମାନ ଉଭୟ ସଂସ୍କୃତି ମଧ୍ୟରେ ସଦ୍‌ଭାବ ଆଣିବାକୁ ଚେଷ୍ଟା କରିଥିଲେ । ତାଙ୍କର ଏହି ପ୍ରୟାସରୁ ସପ୍ତଦଶ ଶତାବ୍ଦୀରେ ସତ୍ୟପୀର ପାଞ୍ଚାଳିର ସୃଷ୍ଟି ବୋଲି ଗ୍ରହଣ କରାଯାଏ । ଏ ପ୍ରକାର ପ୍ରୟାସ 'ଭବିଷ୍ୟପୁରାଣ'ରେ ଥିବା କାହାଣୀରେ ଲକ୍ଷ୍ୟ କରାଯାଇପାରେ । ୧୫୧୦ରେ ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନ କାଳରେ ଓଡ଼ିଆ ଓ ବଙ୍ଗାଳୀଙ୍କ ମଧ୍ୟରେ ଯେଉଁ ସାଂସ୍କୃତିକ ସମନ୍ୱୟ ସୃଷ୍ଟି ହୋଇଥିଲା ତାହା ପରବର୍ତ୍ତୀ ସମୟରେ ହିନ୍ଦୁ ଓ ମୁସଲମାନ ସଂସ୍କୃତି ମଧ୍ୟରେ ସାଂସ୍କୃତିକ ସମନ୍ୱୟ ଘଟାଇବାରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଓଡ଼ିଶା ବଙ୍ଗଳା ସୀମାବର୍ତ୍ତୀ ନଦିଆ ଅଞ୍ଚଳରେ ଜନ୍ମଗ୍ରହଣ କରିଥିବା କବିକର୍ଣ୍ଣ ହିନ୍ଦୁମାନଙ୍କର ସତ୍ୟସହ ମୁସଲମାନମାନଙ୍କର ପୀରଙ୍କୁ ମିଶାଇ ସତ୍ୟପୀରଙ୍କ ନାମରେ ଷୋହଳ ପାଲା ରଚନା କରିଥିଲେ । ପ୍ରାଥମିକ ପର୍ଯ୍ୟାୟରେ ବୈଠକୀ ଢଙ୍ଗରେ ଆୟୋଜିତ ପାଲା ପରବର୍ତ୍ତୀ ସମୟରେ ବହୁ ଲୋକଙ୍କ ସମାଗମ ଯୋଗୁଁ ସମସ୍ତେ ଶୁଣିପାରିବା ପାଇଁ ଓଡ଼ିଶାରେ ପ୍ରଥମେ ଠିଆ ପାଲାର ସୃଷ୍ଟି ହୋଇଥିଲା ଏବଂ ଏହି ଠିଆପାଲାରେ ପ୍ରଥମଥର ନିମନ୍ତେ ବିଭିନ୍ନ ବାଦ୍ୟଯନ୍ତ୍ର ବିଶେଷକରି ମୃଦଙ୍ଗ, ଗିନି ପ୍ରଭୃତିର ପ୍ରଚଳନ ହେଲା । ଶଙ୍ଖ, ହୁଳହୁଳି ଓଡ଼ିଶାର ପାରମ୍ପରିକ ବାଦ୍ୟ ପାଲାରେ ବିଭିନ୍ନ ପରିବେଶରେ ବିଶେଷ କରି ବିବାହ, ଶିଶୁ ଜନ୍ମ ପ୍ରଭୃତିରେ ଏହି ବାଦ୍ୟର ବ୍ୟବହାର ପରିଲକ୍ଷିତ । 'ଉଗ୍ରତାରା ପାଲା'ରେ ଏ ସଂପର୍କରେ କବିକର୍ଣ୍ଣ ଲେଖିଛନ୍ତି -

'ଶଙ୍ଖ, ଘଣ୍ଟା, ହୁଳହୁଳି ଦିବେ କୁତୁହଳେ
ସବେ ମିଳି ହରି ଶବ୍ଦ କରି କୋଳାହଳେ ।'

ଠିଆ ପାଲାରେ ବ୍ୟବହୃତ ବେଶପୋଷାକରେ ମଧ ହିନ୍ଦୁ ମୁସଲମାନ ସାଂସ୍କୃତିକ ସମନ୍ୱୟରେ ପ୍ରତିଫଳନ ଲକ୍ଷ୍ୟ କରାଯାଏ । ପ୍ରାଥମିକ ପର୍ଯ୍ୟାୟରେ ପାଲାର କଳାକାରମାନେ ରଙ୍ଗୀନ ଘାଘରା, ମୁଣ୍ଡରେ ମୋଗଲ ଟୋପି, କାନ୍ଧରେ ପାଟଚାଦର ପିନ୍ଧୁ ଥିଲାବେଳେ ବର୍ତ୍ତମାନ ପାଲାର କଳାକାରମାନେ ରଙ୍ଗୀନ ସାଲୱାର ପଞ୍ଜାବୀ, ଉତ୍ତରୀୟ ଓ ପଗଡ଼ି ପରିଧାନ କରୁଛନ୍ତି । କ୍ରମବିବର୍ତ୍ତନରେ ଓଡ଼ିଶାରେ ଜନ୍ମ ନେଇଥିବା ଠିଆପାଲାରେ କବିକର୍ଣ୍ଣଙ୍କ ରଚିତ ଷୋଳପାଲାରେ ଥିବା ବିଷୟବସ୍ତୁ କେବଳ ଗାନ କରାନଯାଇ ମହାଭାରତ, ରାମାୟଣ, ବୈଦେହୀଶ ବିଳାସ, କୁମାର ସମ୍ଭବମ୍ ଓ

ଅନ୍ୟାନ୍ୟ ମଧ୍ୟଯୁଗୀୟ ସାଂଗୀତିକତାପୂର୍ଣ୍ଣ ସାହିତ୍ୟକୁ ଗାନ କରାଗଲା । ତେଣୁ ବଙ୍ଗଳାରେ ସୃଷ୍ଟ 'ପାଞ୍ଚାଲୀ' ବା 'ପାଲା'ର କଳା ସୌନ୍ଦର୍ଯ୍ୟଠାରୁ ଓଡ଼ିଶାରେ ସୃଷ୍ଟ 'ଠିଆପାଲା'ର କଳାସୌନ୍ଦର୍ଯ୍ୟ ନିଶ୍ଚିତପକ୍ଷେ ଉତ୍କୃଷ୍ଟତର ବୋଲି ମନେ ହୋଇଥିଲା । କିନ୍ତୁ ହିନ୍ଦୁ ମୁସଲମାନମାନଙ୍କ ମଧରେ ସଂହତି ରକ୍ଷା କରିବାର ପ୍ରୟାସରୁ କବିକର୍ଣ୍ଣ ଯେଉଁ ଷୋହଳପାଲାର ସୃଷ୍ଟି କରିଥିଲେ ତାହା ମୁଖ୍ୟତଃ ଗୁରୁତ୍ୱପୂର୍ଣ୍ଣ ଏବଂ ସାଂପ୍ରତିକ କାଳରେ ଧାର୍ମିକ ବିଭେଦତା ଓ ତଦ୍‌ଜନିତ ଆତଙ୍କବାଦ ଓ ବିଚ୍ଛିନ୍ନତାବାଦର ପ୍ରସାର ପରିପ୍ରେକ୍ଷୀରେ ପୁନର୍ବାର କବିକର୍ଣ୍ଣଙ୍କ ସେହି ଉଦ୍ଦେଶ୍ୟରୁ ସୃଷ୍ଟି ପାଲାକୁ ଏକ ନୂତନ ଦୃଷ୍ଟିଭଙ୍ଗୀରେ ଆଲୋଚନା କରିବାର ପ୍ରାସଙ୍ଗିକତା ରହିଛି ।

କବିକର୍ଣ୍ଣ ବିରଚିତ ଷୋହଳପାଲାଗୁଡ଼ିକ ମଧରେ ରହିଛି - ଜନ୍ମ ପାଲା, ପଦ୍ମଲୋଚନ ପାଲା, ଶଙ୍କରଗୁଡ଼ିଆ ପାଲା, ବିଦ୍ୟାଧର ପାଲା, ମର୍ଦ୍ଦଗାଜୀ ଜନ୍ମପାଲା, ମର୍ଦ୍ଦଗାଜୀ ବିଭାପାଲା, ମଦନସୁନ୍ଦର ପାଲା, ହେରାଚାନ୍ଦ ପାଲା, ମନୋହର ଫାଶ୍ୟାରା ପାଲା, କାଠୁରିଆ ପାଲା, ଉଗ୍ରତାରା ପାଲା, ଲକ୍ଷ୍ମଣ କୁମାର ପାଲା, ସଦାନନ୍ଦ ସୌଦାଗର ପାଲା, ଅଭିନ୍ନ ମଦନ ପାଲା, ଦୁର୍ଜନ ସିଂହ ପାଲା, ସ୍ୱର୍ଗାରୋହଣ ପାଲା ପ୍ରଭୃତି । ଏହି ପାଲାଗୁଡ଼ିକର ଭାଷା ଥିଲା ମିଶ୍ର ଭାଷା । ବଙ୍ଗଳା, ଓଡ଼ିଆ, ପାର୍ସୀ, ଉର୍ଦ୍ଦୁ ସହ ହିନ୍ଦୀ, ଇଂରାଜୀ ଓ ଅପଭ୍ରଂଶ ଓଡ଼ିଆ ଭାଷାର ବ୍ୟବହାର ଏଥିରେ ବ୍ୟବହୃତ ହୋଇଥିଲେ ହେଁ ବଙ୍ଗଳା ଭାଷାର ବ୍ୟବହାର ସର୍ବାଧିକ ଥିବାର ପରିଲକ୍ଷିତ ହୋଇଥାଏ । ତାଙ୍କ ପାଲାଗୁଡ଼ିକ ମଧ୍ୟରୁ ସତ୍ୟନାରାୟଣ ଆଖୋଟି ପାଲା ପ୍ରାଥମିକ ସୃଷ୍ଟି ହେତୁ ସେଥିରେ ମୌଳିକ ବଙ୍ଗଳା ଭାଷାର ପ୍ରୟୋଗ ହୋଇଥିଲା ମାତ୍ର ।

ହିନ୍ଦୁ ମୁସଲମାନମାନଙ୍କ ମଧରେ ସଦ୍‌ଭାବ ଓ ଏକତା ରକ୍ଷା କରିବା ନିମନ୍ତେ କବି ତାଙ୍କ ପାଲାରେ ଉଭୟ ଭାଷାର ସମନ୍ୱୟତା ରକ୍ଷା କରିଛନ୍ତି । ସଦାନନ୍ଦ ସୌଦାଗର ପାଲାରେ କବି ଲେଖିଛନ୍ତି -

'ସଦାନନ୍ଦ ସୌଦାଗର ପାଲା ହକିକତ
ରଚିଲେନ କବି କର୍ଣ୍ଣକାଲା ମେରସୁତ ।'

ଏତଦ୍‌ବ୍ୟତୀତ କବି ଉଭୟ ଭାଷାର ଶିକ୍ଷା ଉପରେ ଗୁରୁତ୍ୱ ଆରୋପ କରିବାକୁ ଯାଇ ସଦାନନ୍ଦ ସୌଦାଗର ପାଲାରେ କହିଛନ୍ତି -

'ସରଖଣ୍ଡ ଅଧାମ ଗୋଟିକା ଖୁଆଇବେ
ଓଡ଼ିଆ ବଙ୍ଗଳା ଆଉ ଫାରଶି ପଣବେ ।'

ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନ ପରେ ବଙ୍ଗଳା ଓ ଓଡ଼ିଶା ମଧରେ ଯେଉଁ ସାଂସ୍କୃତିକ ସମନ୍ୱୟ ସୃଷ୍ଟି ହୋଇ ତାହା ଜଗନ୍ନାଥ ସଂସ୍କୃତିରେ ବିଲୀନ ହୋଇଯାଇଥିଲା । ତେଣୁ କବିକର୍ଣ୍ଣ ବଙ୍ଗଳାର ହେଲେ ମଧ ଓଡ଼ିଶାର ଧର୍ମ ସଂସ୍କୃତିର ଆଧାର ଶ୍ରୀଜଗନ୍ନାଥଙ୍କୁ ସମସ୍ତ ସଂସ୍କୃତିର ଆଧାର ବୋଲି ପ୍ରମାଣିତ କରିଛନ୍ତି । ତେଣୁ ସେ ଜଗନ୍ନାଥଙ୍କୁ 'ଉଡ଼ିଶ୍ୟାତେ ମହାବାହୁ ରାଜରାଜେଶ୍ୱର, ଦାରୁବ୍ରହ୍ମ ତିନିମୂର୍ତ୍ତି ଦେଉଳ ଭିତର' ବୋଲି ଗ୍ରହଣ କରି ତାଙ୍କର ବିଭିନ୍ନ ପାଲାରେ ତାଙ୍କୁ ସର୍ବଧର୍ମ ସମନ୍ୱୟର ଦେବତା ବୋଲି ଜ୍ଞାନ କରିଛନ୍ତି । 'ଜନ୍ମପାଲା'ରେ କବିକର୍ଣ୍ଣ ତାଙ୍କ ମହାତ୍ମ୍ୟ ପ୍ରତିଷ୍ଠା କରିବାକୁ ଯାଇ ଲେଖିଛନ୍ତି -

ଜଗନ୍ନାଥ ରୂପେ ଆମି ଓଡ଼ିଶାତେ ଆର
ହିନ୍ଦୁ ମୁସଲମାନ ସର୍ବକରି ଏକାକାର ।

କବିକର୍ଣ୍ଣ ଜାତିରେ ବ୍ରାହ୍ମଣ ଥିଲେ ମଧ ତାଙ୍କ ପାଲାଗୁଡ଼ିକରେ ଉଭୟ ହିନ୍ଦୁ ଓ ମୁସଲମାନ ଧର୍ମ ମଧରେ ସଂହତି ଓ ସଂପ୍ରୀତି ରକ୍ଷା କରିବା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । 'ଲକ୍ଷ୍ମଣ କୁମାର' ପାଲାରେ ଏ ସଂପର୍କରେ ଲେଖା ହୋଇଛି -

'ନାରାୟନ ବଲେ ଶୁନ ଆମାର ବଚନ
ରାମ ହରିମନ୍ ଜାନ୍ ଏକଇ ଜୀବନ
ରାମ ଯେହୁ ଭଜେ ସେହୁ ହିନ୍ଦୁ ଭଗବାନ
ରହିମ ଯେ ପୂଜା କଲେ ସିଦ୍ଧ ହୟା କାମ ।

ତାଙ୍କ ଦୃଷ୍ଟିରେ ଉଭୟ ଭଗବାନ ଓ ଖୁଦା ଏକ ଓ ଅଭିନ୍ନ । ତେଣୁ ସେ ଉଭୟ ରାମ ଓ ରହିମଙ୍କୁ ସେହି ଏକ ଓ ଅଭିନ୍ନ ଶକ୍ତିଙ୍କର ସୃଷ୍ଟି ବୋଲି ଗ୍ରହଣ କରିଛନ୍ତି । ଏତଦ୍‌ବ୍ୟତୀତ କବିକର୍ଣ୍ଣ ହିନ୍ଦୁଧର୍ମର ଦଶବତାର ମଧରେ ବୁଦ୍ଧଙ୍କ ସହ ଅଲେଖ ନିରଞ୍ଜନଙ୍କୁ ମଧ ସ୍ଥାନ ଦେଇଛନ୍ତି ।

ଅସ୍ରା ବଲେ ଉଜିର ମେରାବିଲ ନାହିଁ ତାଏ
ଆମାର ଯେ ଈଷ୍ଟବଡ଼ ଅଲେଖ ଖୋଦାଏ ।
- ଜନ୍ମପାଲା -

ବୈଠକୀ ପାଲାର ଗାହାଣ ବା ଗାୟକ ହେଉଛନ୍ତି ପୁରୋହିତ। ସେ ଘଟସ୍ଥାପନପୂର୍ବକ ପାନ, ଗୁଆ ଓ ଛଡ଼ା କଦଳୀ ରଖି ପଞ୍ଚଦେବତା ଯଥା- ଗଣେଶ, ସୂର୍ଯ୍ୟ, ଶିବ, ଦୁର୍ଗା ଓ ନାରାୟଣଙ୍କୁ ପୂଜା କରିଥାନ୍ତି । ପଞ୍ଚଦେବତାଙ୍କ ଉଦ୍ଦେଶ୍ୟରେ ପାଞ୍ଚଟି ବେତରେ ମୟୂରଚନ୍ଦ୍ରିକା ବନ୍ଧା ହୋଇ କାଣ୍ଡ ପ୍ରସ୍ତୁତ କରାଯାଏ ଓ

ନୈବେଦ୍ୟ ବା ପଞ୍ଚାମୃତ ଦେଇ ପଞ୍ଚଦେବତାଙ୍କ ଉପାସନା ପରେ କବିକର୍ଣ୍ଣଙ୍କ ପାଲା ଗାନ କରାଯାଏ ।

କିନ୍ତୁ ପରବର୍ତ୍ତୀ ସମୟରେ ପାଲାଗୁଡ଼ିକରେ, ତତ୍କାଳୀନ ଆଫ୍‌ଗାନ୍ ପଠାଣ ଓ ମୋଗଲମାନଙ୍କ ସହ ହିନ୍ଦୁମାନଙ୍କ ସଦ୍‌ଭାବ ପ୍ରତିଷ୍ଠା ଉଦ୍ଦେଶ୍ୟରେ କବିକର୍ଣ୍ଣ ପଞ୍ଚଦେବତାଙ୍କ ସ୍ଥାନରେ 'ପଞ୍ଚପୀର' ଓ ସତ୍ୟନାରାୟଣଙ୍କ ସ୍ଥାନରେ 'ସତ୍ୟପୀର'ର ପରିକଳ୍ପନା କରିଛନ୍ତି ଓ ପଞ୍ଚାମୃତ ସହ ପୀରଙ୍କ ପ୍ରିୟ 'ଶିରିଣୀ' ଭୋଗର ସଂଯୋଜନା କରିଛନ୍ତି । 'ମର୍ଦ୍ଦଗାଜୀ ବିଭାପାଲା'ରେ ଏ ସଂପର୍କରେ କୁହାଯାଇଛି -

'ଆପନା ମହଲେ କରେ ପୀରେର ଆସ୍ଥାନ
ଉପରେ କରିଲ ଖାଡ଼ା ତମ୍ବୁ ଶମି ଆନ
ବଙ୍ଗଲାର ମଧ୍ୟେତ ବାନ୍ଧିଲ ସିଂହାସନ
ଚାରିଦିଗେ ଚାରି ତୀର ପୁତିଲ ନିଶାନ
ତୀରେର ଉପରେ ଫୁଲ କରିଆ ସାଜାନ
ଷୋଡ଼ଶୋପଚାରେ ପୂଜା କରିଲ ବ୍ରାହ୍ମନ
କାଞ୍ଚା ପାକା ଆସ୍ଥାନେ ତ ବାଢ଼ିଲ ଶିରିନି
ବ୍ରାହ୍ମନ ମିଲିଆ ସର୍ବେ କରେ ହରିଧ୍ୱନି ।'

ସତ୍ୟପୀରଙ୍କ ପ୍ରିୟ ଶିରିନିର ମହତ୍ୱ ପ୍ରତିଷ୍ଠା କରିବାକୁ ଯାଇ କବିକର୍ଣ୍ଣ 'ଫାଶ୍ୟାରା ପାଲା'ରେ ଲେଖିଛନ୍ତି -

କାଞ୍ଚା ପାକା କରି ନିଛୁ ଶିରିନି କରିବେ
ତବେ ତ ତୁମାର ମନୋରଥ ସିଦ୍ଧ ହବେ ।

ଶିରିଣୀ ହେଉଛି ଏକ ପାର୍ସି ଶବ୍ଦ, ଯେଉଁଥିରେ ନିର୍ଦ୍ଦିଷ୍ଟ ପରିମାଣର ପଦାର୍ଥ ମିଶା ହୋଇଥାଏ । ଏ ସଂପର୍କରେ ମର୍ଦ୍ଦଗାଜୀ ଜନ୍ମପାଲାରେ କୁହାଯାଇଛି -

'ସଓ୍ୱାସେର ଆଟା ଆନିତାଏ ସଓ୍ୱା ସେରଚିନି
ସଓ୍ୱାସେର ଶିର୍ଣ୍ଣ ଦେବେ ମୋରେ ।'

ଏହି ଶିରିଣୀ ଅର୍ପଣର ଉଦ୍ଦେଶ୍ୟ ହେଉଛି, ରାଜା ହେଉବା ଭିକାରୀ ଏହା ସବୁସ୍ତରର ଲୋକଙ୍କ ପାଇଁ ମୂଲ୍ୟ ଦୃଷ୍ଟିରୁ ସୁଲଭ ହୋଇଥାଏ । ପାଲାର ବିଷୟବସ୍ତୁରେ ଜଣେ ଫକୀରଙ୍କ ବର୍ଣ୍ଣନା ରହିଥାଏ ଯିଏ ଶିରିଣୀ ଭୋଗ ଦେଇ ସତ୍ୟପୀରଙ୍କ ଉପାସନା କଲେ ସମସ୍ତ ବାଧାବିଘ୍ନ ଦୂର ହୁଏ ବୋଲି ଲୋକମାନଙ୍କୁ ଉପଦେଶ ଦେଇଥାନ୍ତି । ପ୍ରାଥମିକ ପର୍ଯ୍ୟାୟରେ ତାଙ୍କ ଉପଦେଶକୁ ଅବମାନନା କରୁଥିବା ବ୍ୟକ୍ତି ଅନେକ ଦୁଃଖ ଯନ୍ତ୍ରଣା ଭୋଗ କରେ ଏବଂ ପରେ 'ସତ୍ୟପୀର'ଙ୍କ ମହିମାକୁ ଅନୁଭବ କରି ଶିରିଣୀ ଭୋଗ ଅର୍ପଣ କରି ସକଳ ବାଧାବିଘ୍ନ ଓ କଷ୍ଟରୁ ରକ୍ଷାପାଏ । ପରିଶେଷରେ ଦୃଢ଼ ତଥା ନିଃଶଂସୟ ଚିତ୍ତରେ ଫକୀର ଉଭୟ ପୁରାଣ ଓ କୋରାନ ମଧ୍ୟରେ ଅଭିନ୍ନତା ଦର୍ଶାଇବା ସହ ଉଭୟଧର୍ମର ଏକାତ୍ମତା ସଂପର୍କରେ ଉପସ୍ଥିତ ଶ୍ରୋତାଙ୍କୁ ଶିକ୍ଷା ଦେଇଥାନ୍ତି । କପିଳ ବାତ୍ସାୟନ ସଂକଳିତ କଳାମୂଳ ଶାସ୍ତ୍ରର ବିଭିନ୍ନ ଖଣ୍ଡରେ ବିଭିନ୍ନ ପାଲା ଓ ତା'ର ବିଷୟବସ୍ତୁ ସଂପର୍କରେ ବିସ୍ତୃତ ବର୍ଣ୍ଣନା ଉପଲବ୍ଧ ହୋଇଥାଏ ।

କବିକର୍ଣ୍ଣ ଫକୀରଙ୍କୁ ଉଭୟ ଧର୍ମ ଓ ଦର୍ଶନ (ହିନ୍ଦୁ ଓ ଇସଲାମ) ମଧ୍ୟରେ ଏକ ଅଭିନ୍ନ ପ୍ରତୀକ ରୂପେ ଚିତ୍ରିତ କରିବାରେ କୌଣସି କୁଣ୍ଠା ଅନୁଭବ କରିନାହାନ୍ତି । ଏହିପରି ଭାବେ ଲୋକବିଶ୍ୱାସରେ ଛିଣ୍ଡାବସ୍ତ୍ର ପରିହିତ ଫକୀର ସକଳ ଦେବତ୍ୱପ୍ରାପ୍ତ ଏକ ମହାନ ପୁରୁଷ, ଯିଏକି ଅଦ୍ୟାବଧି ହିନ୍ଦୁ ଓ ମୁସଲମାନ ଧର୍ମଦର୍ଶନର ପ୍ରତୀକ ସତ୍ୟପୀରଙ୍କ ଉପାସନା କରିଆସୁଛନ୍ତି ଓ ତାଙ୍କ ଆଶୀର୍ବାଦ ହେଲେ ରୋଗୀ ଦୁଃଖୀ ସମସ୍ତେ ସମସ୍ତ ଦୁଃଖ କଷ୍ଟରୁ ମୁକ୍ତି ପାଆନ୍ତି ବୋଲି ଉଭୟ ଧର୍ମର ଲୋକମାନେ ଗଭୀର ବିଶ୍ୱାସ କରନ୍ତି । ବର୍ତ୍ତମାନ ମଧ୍ୟ ଜଗତ୍‌ସିଂହପୁରର ପୀରଙ୍ଗ, ଭଦ୍ରକ ଓ ଖୋର୍ଦ୍ଧାର କାଇପଦରରେ ଉଭୟ ଧର୍ମର ଆରାଧ୍ୟ ଦେବତା ରୂପେ 'ସତ୍ୟପୀର' ପୂଜିତ ହେବା ସହ ଏହାର ପୂଜକ ଜଣେ ଜଣେ ଫକୀର ହିଁ ରହିଛନ୍ତି ।

ଆଧୁନିକ ଓଡ଼ିଆ ସାହିତ୍ୟଜନକ ବ୍ୟାସକବି ଫକୀରମୋହନ ସେନାପତିଙ୍କୁ ଜୀବନରକ୍ଷା କରିବାକୁ ତାଙ୍କ ପିତାମହ ତାଙ୍କୁ ବ୍ରଜମୋହନର ଫକୀରମୋହନ ନାମକରଣ କରିବା ଓ ଫକୀର କରିଦେବା ପରି ଘଟଣା ତାଙ୍କ 'ଆତ୍ମଚରିତ'ରୁ ଜାଣିବାକୁ ମିଳିଥାଏ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ସେତିକିବେଳେ କୌଣସି ଧାର୍ମିକ ସମନ୍ୱୟ ଭାବ ସୃଷ୍ଟି ହେବାରେ କୌଣସି ବାଧା ଉପୁନ୍ନ ହୁଏ ନାହିଁ ଯେତେବେଳେ କୌଣସି ଧର୍ମ କିମ୍ବା ଜାତି ଧର୍ମର ପ୍ରକୃତ ଅର୍ଥକୁ ହୃଦୟଙ୍ଗମ କରିବାରେ ସଚେତନ ହୁଏ ଏବଂ ପର୍ଯ୍ୟାପ୍ତ ଧାର୍ମିକ ବିବାଦ ମଧ୍ୟରେ ନିଜକୁ ସାମିଲ କରିନଥାଏ । ଏହି ଦୃଷ୍ଟିରୁ ବିଚାର କଲେ ଧାର୍ମିକ ସହିଷ୍ଣୁତା ରକ୍ଷା ଦିଗରେ ଅଗ୍ରସର ହୋଇଥିବା କବିକର୍ଣ୍ଣ ଦୁଇଟି ଧର୍ମର ପରସ୍ପର ପ୍ରତି ଥିବା ଆସ୍ଥା ଓ ବିଶ୍ୱାସଜନିତ କାରଣରୁ ଏ ଦିଗରେ ସଫଳ ହୋଇପାରିଥିଲେ ।

ଓଡ଼ିଶାରେ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟ ଅବସରରେ ବିଶେଷକରି ଶିଶୁଜନ୍ମ, ମାନସିକ ପୂରଣ ଓ ବିବାହ ପ୍ରଭୃତିରେ ସତ୍ୟନାରାୟଣ ପୂଜା ଓ ପାଲାର ଆୟୋଜନ କରାଯାଇଥାଏ ।

କାକଟପୁରର ପାଲାଗାୟକ 'ଆନନ୍ଦବସନ୍ତ' ଉଲ୍ଲେଖ କରିଛନ୍ତି - ପୁରୀ ଶ୍ରୀମନ୍ଦିରରେ ଏକକାଳୀନ ଏକୋଇଶ ଦିନ ଧରି ପାଲା ପରିବେଶିତ ହୋଇଥିବା କଥା ପ୍ରମାଣ ରହିଛି । ଏହି ପାଲା ପ୍ରସିଦ୍ଧ ଦୋଳବେଦୀରେ ଅନୁଷ୍ଠିତ ହେଉଥିଲା, ଯାହାକୁ 'ବାଦିପାଲା' ଆଖ୍ୟା ଦିଆଯାଇଥିଲା । ପରବର୍ତ୍ତୀ ସମୟରେ ଏହି ବାଦୀପାଲା ଓ ପାଲା ସମ୍ମିଳନୀ ବିଭିନ୍ନ ସହର ଓ ଗାଁମାନଙ୍କରେ ଅନୁଷ୍ଠିତ ହେଉଅଛି । ପ୍ରାଥମିକ ସ୍ତରରେ ବଙ୍ଗଳାରେ ଆୟୋଜିତ ବୈଠକୀପାଲା ଓଡ଼ିଶାରେ ଠିଆପାଲାରେ ପରିଣତ ହେବାସହ ବିଭିନ୍ନ ବାଦ୍ୟଯନ୍ତ୍ର ସହ ଗାୟକ, ବାୟକ ଓ ପାଳିଆ ପ୍ରଭୃତିଙ୍କୁ ନେଇ ପରିବେଶିତ ହୋଇଥିଲା । ଏଥିରେ ସାହିତ୍ୟିକ ଅଭିବ୍ୟକ୍ତି ପ୍ରତିଫଳିତ ହେଲା । ଆଧାତ୍ମିକତାରୁ ସୃଷ୍ଟି ପାଲା କ୍ରମଶଃ ସାହିତ୍ୟିକ ଭାବଧାରାରେ ମଣ୍ଡିତ ହୋଇ ନିଜର ପରିସରକୁ ପରିବ୍ୟାପ୍ତ କରିଥିଲା । ବର୍ତ୍ତମାନ ପରିବେଶିତ ହେଉଥିବା ପାଲା କେବଳ ସାହିତ୍ୟକୁ ଆଧାର କରୁ ନାହିଁ, ବରଂ ବିଭିନ୍ନ ସଂସ୍କାରମୂଳକ ଓ ଜନକଲ୍ୟାଣ କାର୍ଯ୍ୟକ୍ରମକୁ ଜନସାଧାରଣଙ୍କ ନିକଟରେ ପହଞ୍ଚାଇପାରୁଛି । ଓଡ଼ିଶାରେ ପାଲାକୁ ଏକ ପ୍ରତିଷ୍ଠିତ ପରମ୍ପରା ଦେବାରେ ଯେଉଁ ପାଲା ଗାୟକମାନେ ଅବିରତ ପ୍ରୟାସରତ ସେମାନଙ୍କ ମଧ୍ୟରେ ଅଛନ୍ତି ସେମାନେ ହେଲେ ଅଧ୍ୟାପକ ଶ୍ରୀ ନିରଞ୍ଜନ ପଣ୍ଡା, ଶ୍ରୀ କୃଷ୍ଣଚନ୍ଦ୍ର ସାହୁ, ଶ୍ରୀ ପରମାନନ୍ଦ ସରନ, ଶ୍ରୀ ଧ୍ରୁବ ଷଡ଼ଙ୍ଗୀ, ଶ୍ରୀ ବୈଷ୍ଣବ ପ୍ରଧାନ, ଶ୍ରୀ ଜଗନ୍ନାଥ ବେହେରା ପ୍ରମୁଖ କଳାକାରଗଣ । ସେମାନଙ୍କ ଅଦମ୍ୟ ନିଷ୍ଠା ଓ ପାଣ୍ଡିତ୍ୟ ପାଲାକୁ ଏକ ସୁଉଚ୍ଚ ଶିଖରରେ ପହଞ୍ଚାଇ ପାରିଛି ।

ଉଭୟ ଲୋକକଳା ଓ ବିଦ୍‌ଗଧ କଳାର ଏକ ସମନ୍ୱିତ ସୃଷ୍ଟି ରୂପେ ପାଲା କେବଳ ନିଜକୁ ପ୍ରତିଷ୍ଠିତ କରି ନାହିଁ ବରଂ ଏକ ଅନୁଷ୍ଠାନରେ ପରିଣତ ହୋଇସାରିଛି । କେବଳ ଓଡ଼ିଶାରେ ନୁହେଁ ବରଂ ବିଚ୍ଛିନ୍ନାଞ୍ଚଳ ଷଢ଼େଇକଳା ଓ ଖରସୁଆଁରେ ମଧ୍ୟ ପାଲାର ଜନପ୍ରିୟତା ରହିଛି । ଉତ୍ତର ଓଡ଼ିଶାର ବାଲେଶ୍ୱର ଅଞ୍ଚଳରେ ପାଲା ଏକ ସାଂସ୍କୃତିକ ଓ ସାରସ୍ୱତ କଳା । ଏହାବ୍ୟତୀତ ଆଞ୍ଚଳିକତା ଭେଦରେ ପାଲା କିଛି ପରିମାଣରେ ପରିବର୍ତ୍ତିତ ରୂପକୁ ନେଇ ଆତ୍ମପ୍ରକାଶ କରିଆସୁଛି । ଏହି ପରିପ୍ରେକ୍ଷୀରେ ପଶ୍ଚିମ ଓଡ଼ିଶାର 'ବାହକ', 'ସମ୍ପ୍ରଦା' ଓ 'ଦିଗ୍‌ସଞ୍ଚାରୀ ଦକ୍ଷିଣ ଓଡ଼ିଶାର 'ଗାହାଣ' ଓ ଉତ୍ତର ବାଲେଶ୍ୱର ଅଞ୍ଚଳର ଲଳିତାପାଲା ପ୍ରଭୃତି ଉଲ୍ଲେଖଯୋଗ୍ୟ । ଯେଉଁଗୁଡ଼ିକୁ ପାଲା ସହିତ ସାମ୍ୟତା ରକ୍ଷା କରୁଥିବା କଳା ମଧ୍ୟରେ ଗ୍ରହଣ କରାଯାଇପାରେ । ଅଦ୍ୟାବଧି ଭଦ୍ରକରେ ଅନୁଷ୍ଠିତ ପାଲା ଓଡ଼ିଶାରେ ହିନ୍ଦୁ ଓ ମୁସଲମାନ ଧର୍ମ ମଧ୍ୟରେ ବନ୍ଧୁତ୍ୱଭାବ ବଜାୟ ରଖିବା ପାଇଁ ପ୍ରୟାସରତ ।

ପରିଶେଷରେ ଏତିକି କୁହାଯାଇପାରେ ଯେ ଧାର୍ମିକ ସହିଷ୍ଣୁତା, ସଦ୍‌ଭାବ ଓ ସଂପ୍ରୀତିର ପ୍ରତୀକ ପାଲା କେବଳ ଓଡ଼ିଶାର ଗର୍ବ ଓ ଗୌରବ ନୁହେଁ ବରଂ ଅଖଣ୍ଡ ଜାତୀୟତା, ଧାର୍ମିକ ଏକତାରକ୍ଷା ଦିଗରେ ଏକ ବଳିଷ୍ଠ ପଦକ୍ଷେପ । ସାଂପ୍ରତିକ କାଳରେ ସୃଷ୍ଟ ଧାର୍ମିକ ଅସହିଷ୍ଣୁତା ବିଚ୍ଛିନ୍ନତାବୋଧର କାରଣ ନିରୂପଣ ଓ ନିରାକରଣ ଦିଗରେ କବିକର୍ଣ୍ଣଙ୍କ ସେହି ଉଦ୍ୟମ ଓ ପ୍ରୟାସକୁ ବିଚାର ଆଲୋଚନା କରିବାର ଯେ ସମୟ ଆସିଛି ଏ ବିଷୟରେ ଓଡ଼ିଶାର ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତି ମାନସ ମନ୍ଥନ କରିବା ଉଚିତ୍ ।

**ସହାୟକ ଗ୍ରନ୍ଥସୂଚୀ**


୧. ନିରଞ୍ଜନ ପଣ୍ଡା - ଓଡ଼ିଶାର ଲୋକନାଟକ (ଦ୍ୱିତୀୟାର୍ଦ୍ଧ)

୨. ହେମନ୍ତ କୁମାର ଦାସ - ଓଡ଼ିଶାର ଲୋକନାଟକ (ପ୍ରଥମାର୍ଦ୍ଧ)

୩. ମହମ୍ମଦ ୟାମିନ - 'ଓଡ଼ିଶାରେ ଧାର୍ମିକ ସମନ୍ୱୟବାଦ' ସପ୍ତର୍ଷି ପ୍ରଥମ ସଂଖ୍ୟା-୨୦୦୫

୪. ମନିନ୍ଦ୍ର ମହାନ୍ତି - ଷୋଳପାଲା ଏକ ସାଂସ୍କୃତିକ ବିବେଚନ 'କୋଣାର୍କ' ୬୨ତମ ସଂଖ୍ୟା-୧୯୮୬

୫. K.B. Dash - Folk Core of Orissa

୬. K. Vatsayan (ed) - Kalamulasutra Series, New Delhi

୭. Tara Chand - Influence of Islam on Indian Culture, Allahabad

୮. B.C. Roy - Orissa Under the Mughals, Calcutta

୯. Md. Yamin - Islam in Orissa, New Delhi.

୧୦. N.C. Behuria (ed) - Orissa State Gazatteer, Vol-II, 1991

୧୧. M. Kidwai (ed) - Impact of Islam on India and the World, New Delhi.



ଅଧ୍ୟାପିକା, ଓଡ଼ିଆ ବିଭାଗ
ଚନ୍ଦ୍ରିକା ଜୈନ ଡିଗ୍ରୀ ମହାବିଦ୍ୟାଳୟ ବୋର୍ଡ଼
କଳାହାଣ୍ଡି

# ଭାରତର ଅଦ୍ୱିତୀୟ ସଂଗ୍ରାମୀ ବିନୋବା ଭାବେ

ଗୁରୁକଲ୍ୟାଣ ମହାପାତ୍ର

**ସ**ମଗ୍ର ବିଶ୍ୱରେ ଧନାଢ଼୍ୟ ଓ କ୍ଷମତାଶାଳୀ ଲୋକଙ୍କର ଅଭାବ ନାହିଁ । ମାତ୍ର ଦରିଦ୍ରମାନଙ୍କ ସେବା ଲକ୍ଷ୍ୟରେ ନିଜେ ଦାରିଦ୍ର୍ୟକୁ ବରଣ କରି କ୍ଷମତାରହିତ ହେବା ଓ ସାଧୁ ଓ ସନ୍ଥଙ୍କ ପରି କୁଚ୍ଛ ଓ ନିରାଡ଼ମ୍ବର ଜୀବନଯାପନ କରିବାର ଦୃଷ୍ଟାନ୍ତ ଅତ୍ୟନ୍ତ ବିରଳ । ମାତ୍ର ଏପରି ଏକ ଅଦ୍ୱିତୀୟ ସନ୍ଥ ଓ ସଂଗ୍ରାମୀ ତଥା ମହାତ୍ମା ଗାନ୍ଧୀଙ୍କର ପଟ୍ଟଶିଷ୍ୟ ଥିଲେ ବିନୋବା ଭାବେ । କେବଳ ଭାରତରେ ନୁହେଁ, ସମଗ୍ର ବିଶ୍ୱରେ ସେ ସନ୍ଥ ବିନୋବା ଭାବେ ନାମରେ ପରିଚିତ ଥିଲେ । କାରଣ ସ୍ୱାଧୀନୋତ୍ତର ଭାରତରେ ଅହିଂସା ମାର୍ଗରେ ସମସ୍ତେ ଯାଇ ବିଶ୍ୱଭ୍ରାତୃତ୍ୱ ଭାବରେ ଅଗ୍ରସର ହେବାକୁ ସେ ଯେଉଁ 'ଜୟ ଜଗତ'ର ଧ୍ୱନି ଦେଇଥିଲେ, ସମଗ୍ର ବିଶ୍ୱରେ ସେ ଧ୍ୱନି ପ୍ରତିଧ୍ୱନିତ ହୋଇଥିଲା । ଆଜିର 'ଜଗତୀକରଣ' ପ୍ରକ୍ରିୟାରେ ବିନୋବାଙ୍କ ଦୂରଦୃଷ୍ଟି ଯେ କିପରି ସୁଦୂର ପ୍ରସାରୀ ଥିଲା, ତାହା ଆମେ ଏବେ ଅନୁଭବ କରୁଛୁଁ ।



କିନ୍ତୁ ତାଙ୍କର ପ୍ରକୃତ ନାମ ଥିଲା ବିନାୟକ ନରହରି ଭାବେ । ୧୮୯୫ ମସିହା ସେପ୍ଟେମ୍ବର ୧୧ ତାରିଖରେ ମହାରାଷ୍ଟ୍ର ରାଜ୍ୟର କୁଲୁବା ଜିଲ୍ଲା ଅନ୍ତର୍ଗତ ଗାଗୋଡ଼ା ଗ୍ରାମରେ ସେ ଭୂମିଷ୍ଠ ହୋଇଥିଲେ । ପିତା ନହର ପନ୍ତ ଓ ମାତା ରୁକ୍ମିଣୀ ବାଈଙ୍କର ସେ ଥିଲେ ଜ୍ୟେଷ୍ଠ ପୁତ୍ର । ତାଙ୍କର ତିନି ଭ୍ରାତା ଓ ଜଣେମାତ୍ର ଭଗିନୀ ଥିଲେ । ବାଲ୍ୟକାଳରୁ ସେ ସନ୍ଥ ପ୍ରକୃତିର ଥିଲେ । ପରଜନ ବା ପଡ଼ୋଶୀ ବିପଦ ଆପଦରେ ପଡ଼ିଲେ, ମାତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ସେମାନଙ୍କୁ ସାହାଯ୍ୟ କରିବାକୁ ଆଗେଇ ଯାଉଥିଲେ ।

୧୯୦୭ ମସିହାରେ ବିନୋବା ବରୋଦା ହାଇସ୍କୁଲରେ ନାମ ଲେଖାଇ ତାଙ୍କ ମେଧାଶକ୍ତିର ପରିଚୟ ଦେଇଥିଲେ । ତାଙ୍କର ତୀକ୍ଷ୍ଣ ବୁଦ୍ଧି ଓ ଅସାଧାରଣ ସ୍ମୃତିଶକ୍ତି ଯୋଗୁଁ ଗଣିତରେ ସେ ଖୁବ୍ ଦକ୍ଷ ଥିଲେ । ଏପରିକି ତାଙ୍କର ସ୍କୁଲ ସହପାଠୀମାନେ ତାଙ୍କ ନିକଟରୁ ଗଣିତ ବିଦ୍ୟା ଶିକ୍ଷା କରିବାକୁ ଭିଡ଼ ଜମାଉଥିଲେ । ଗଣିତରେ ସହପାଠୀମାନଙ୍କୁ ଶିକ୍ଷାଦାନ କରି ବିନୋବାଜୀ ଆନନ୍ଦ ଲାଭ କରୁଥିଲେ । ତାଙ୍କ ମତରେ ଛାତ୍ର ଓ ଶିକ୍ଷକଙ୍କ ମଧ୍ୟରେ ସମ୍ବନ୍ଧ ଘନିଷ୍ଠ ହେବା ଦରକାର । ଜଣେ ଛାତ୍ର ଯଦି ଶିକ୍ଷାଲାଭ କରିବା ପରେ ଅନ୍ୟମାନଙ୍କୁ ସେହି ଶିକ୍ଷା ବିତରଣ କରି ଆନନ୍ଦ ଲାଭ କରିପାରିଲା, ତା'ହେଲେ ତାହାର ଶିକ୍ଷାପ୍ରାପ୍ତି ସାର୍ଥକ ହୋଇଥାଏ । ବିନୋବାଜୀ ଗଣିତସମେତ ସାହିତ୍ୟ କ୍ଷେତ୍ରରେ ମଧ୍ୟ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ଥିଲେ । ସ୍କୁଲ ସାହିତ୍ୟ ପରୀକ୍ଷାରେ ସେ ୯୦ ପ୍ରତିଶତ ନମ୍ବର ରଖିପାରୁଥିଲେ । ଏହାପରେ ୧୯୧୪ ମସିହାରେ ସେ ବରୋଦା କଲେଜରେ ଅଧ୍ୟୟନ କରିଥିଲେ । ଜଣେ ମେଧାବୀ ଛାତ୍ରଭାବେ ତାଙ୍କର ସୁନାମ ଥିଲା । ନିଜ ମାତୃଭାଷା ମରାଠୀସମେତ ପ୍ରାୟ ୧୬ଟି ଭାରତୀୟ ଆଞ୍ଚଳିକ ଭାଷା ଏବଂ ଆରବୀ, ପାର୍ସୀ ଓ ଇଂରାଜୀ ପ୍ରଭୃତି ୬ଟି ବିଦେଶୀ ଭାଷାରେ ସେ ମଧ୍ୟ ପାଣ୍ଡିତ୍ୟ ଲାଭ କରିଥିଲେ । କଲେଜରେ ଅଧ୍ୟୟନ ସମୟରେ ବିଭିନ୍ନ ଅନୁଷ୍ଠାନ ଗଢ଼ି ସେ ଦେଶସେବା କରିବାର ସୁଯୋଗ ଲାଭ କରିଥିଲେ ଏବଂ ମହାନ୍ ସ୍ୱାଧୀନତା ସଂଗ୍ରାମୀ ବାଲଗଙ୍ଗାଧର ତିଲକଙ୍କ ଓଜସ୍ୱିନୀ ଭାଷଣରେ ମୁଗ୍ଧ ହୋଇ ସେ ଛାତ୍ର ଜୀବନରୁ ସ୍ୱାଧୀନତା ସଂଗ୍ରାମପ୍ରତି ଆକୃଷ୍ଟ ହୋଇଥିଲେ । ପାଠପଢ଼ି ସାରିବା ପରେ ସେ ଖଣ୍ଡିଏ ଭଲ ଚାକିରି ପାଇ ପାରିଥାନ୍ତେ । ମାତ୍ର ଚାକିରି କରିବା ତାଙ୍କର ଉଦ୍ଦେଶ୍ୟ ନଥିଲା । ଦିନେ ତାଙ୍କର ମାତା ଚୁଲି ପାଖରେ ବସି ରାନ୍ଧୁଥିଲା ବେଳେ ବିନାୟକ (ମା'ଙ୍କର ଡାକ ନାମ ବିନ୍ୟା) ତାଙ୍କ ସହ କଥାବାର୍ତ୍ତା ହେଉଥିଲେ । ହଠାତ୍ ବିନାୟକ ଉଠିଯାଇ କେତେକ କାଗଜ ଆଣି ଚୁଲି ଭିତରକୁ ଫିଙ୍ଗି ଜାଳି ଦେଇଥିଲେ । 'ବିଦ୍ୟା ପାଠ କାଗଜକୁ ଚୁଲିରେ ଜାଳନ୍ତି କି ?

ବୋଲି ମାତା ପଚାରିବାରୁ, ବିନାୟକ ଉତ୍ତର ଦେଇଥିଲେ- ମା', ପାଠପଢ଼ା ପରେ ଯେତେସବୁ ସାର୍ଟିଫିକେଟ, ପ୍ରମାଣପତ୍ର ଓ ପ୍ରଶଂସାପତ୍ର ମୁଁ ହାସଲ କରିଥିଲି, ସେ ସବୁକୁ ଚୁଲି ଭିତରକୁ ଫିଙ୍ଗି ଜାଳି ଦେଲି । କାରଣ ହାସଲ କରିଥିବା ଜ୍ଞାନ ହିଁ ମଣିଷର ପ୍ରକୃତ ପରିଚୟ ଦେଇପାରିବ ଓ ଏଥିପାଇଁ ସାର୍ଟିଫିକେଟ, ପ୍ରମାଣପତ୍ର ବା ପ୍ରଶଂସାପତ୍ରର ଆବଶ୍ୟକତା ନାହିଁ ବୋଲି ସେ କହିଥିଲେ ।

କେବଳ ମହାତ୍ମା ଗାନ୍ଧୀଙ୍କ ଯୋଗୁଁ ଏହି ସନ୍ଥଙ୍କର ନାମ ବିନାୟକରୁ ବିନୋବାକୁ ବଦଳି ଯାଇଥିଲା । ଗାନ୍ଧିଜୀ ତାଙ୍କୁ ସେହି ନାମରେ ହିଁ ସମ୍ବୋଧନ କରୁଥିଲେ । ତେଣୁ ସମଗ୍ର ବିଶ୍ୱରେ ସେ ସେହି ନାମରେ ହିଁ ପରିଚିତ ହୋଇଯାଇଥିଲେ ।

୧୯୩୦ରୁ ୧୯୩୨ ମସିହାରେ ବ୍ରିଟିଶ ସରକାରଙ୍କ ବିରୋଧରେ ଗାନ୍ଧିଜୀ ଅହିଂସା ମାର୍ଗରେ ଯେଉଁ ସତ୍ୟାଗ୍ରହର ଆହ୍ୱାନ ଦେଇଥିଲେ, ସେଥିରେ ଭାଗନେବାକୁ ପ୍ରଥମ ସତ୍ୟାଗ୍ରହୀ ଭାବେ ଗାନ୍ଧିଜୀ ସମ୍ଭବତଃ ଜବାହରଲାଲ ନେହେରୁଙ୍କୁ ବାଛିବେ ବୋଲି ସମସ୍ତେ ଭାବିଥିଲେ । ମାତ୍ର ସମସ୍ତଙ୍କ ଧାରଣାକୁ ବଦଳାଇ ଦେଇ ଗାନ୍ଧିଜୀ ପ୍ରଥମ ସତ୍ୟାଗ୍ରହୀ ଭାବେ ବିନୋବାକୁ ଓ ଦ୍ୱିତୀୟ ସତ୍ୟାଗ୍ରହୀ ଭାବେ ନେହେରୁଙ୍କୁ ମନୋନୀତ କରିଥିଲେ । ସେତେବେଳେ ବିନୋବା ଅବଶ୍ୟ ନେହେରୁଙ୍କ ପରି ଲୋକପ୍ରିୟତା ଅର୍ଜନ କରି ନଥିଲେ । ଅନେକଙ୍କର ଏ ସଂକ୍ରାନ୍ତୀୟ ପ୍ରଶ୍ନର ଉତ୍ତର ଗାନ୍ଧିଜୀ ଇଂରାଜୀରେ ପ୍ରକାଶିତ 'ହରିଜନ' ପତ୍ରିକାରେ ଉଲ୍ଲେଖ କରିଥିଲେ ଏବଂ ବିନୋବା ଜଣେ ସର୍ବଗୁଣସଂପନ୍ନ ଓ ଆଦର୍ଶସ୍ଥାନୀୟ ସଂଗ୍ରାମୀ ହୋଇଥିବାରୁ ତାଙ୍କୁ ପ୍ରଥମ ସତ୍ୟାଗ୍ରହୀ ଭାବେ ମନୋନୀତ କରାଯାଇଛି ବୋଲି ଗାନ୍ଧିଜୀ ପ୍ରକାଶ କରିଥିଲେ ।

ପ୍ରାକ୍ ସ୍ୱାଧୀନତା କାଳରେ ଏହି ମହାନ୍ ସଂଗ୍ରାମୀ ଓ ଗାନ୍ଧିବାଦୀଙ୍କ ସରଳ ଓ ନିଷ୍କପଟ ଜୀବନଯାପନ ପ୍ରଣାଳୀ ଓ ଉଚ୍ଚ ଚିନ୍ତାଧାରା ଅନେକଙ୍କୁ ଆକୃଷ୍ଟ କରିଥିଲା । ମାତ୍ର ନିଜର ପ୍ରଚାରପ୍ରତି ବିମୁଖ ବିନୋବାଜୀ ସାବରମତୀ ଆଶ୍ରମରେ ରହି ଯେଉଁ ସେବାକାର୍ଯ୍ୟ ଆରମ୍ଭ କରିଥିଲେ, ତାହାର ପଟାନ୍ତର ନାହିଁ । ବିନୋବାଙ୍କର ଦୁଇ ସାନଭାଇ ବାଲକୋବା ଓ ଶିବାଜୀ ମଧ୍ୟ ବିନୋବାଙ୍କ ସହ ସେହି ଆଶ୍ରମରେ ରହି ମଳ ସଫା କରିବାଠାରୁ ଆରମ୍ଭ କରି ସବୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସଂପନ୍ନ କରୁଥିଲେ । ଗାନ୍ଧିଜୀଙ୍କ ଆହ୍ୱାନରେ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ବିନୋବାଜୀ ବହୁବାର କାରାବରଣ କରିଥିଲେ । କିନ୍ତୁ କାରାଗାର ମଧ୍ୟରେ ସେ 'ଭଗବତ ଗୀତା'କୁ ମରାଠୀ ଭାଷାରେ ଅନୁବାଦ କରିଥିଲେ । ପରେ 'ଗୀତା ପ୍ରବଚନ' ନାମକ ସେହି ପୁସ୍ତକଟି ବିଭିନ୍ନ ଭାରତୀୟ ଆଞ୍ଚଳିକ ଭାଷାକୁ ଅନୂଦିତ ହୋଇ ଆଦୃତ ହୋଇ ପାରିଥିଲା ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ସେ ଚାହିଁଥିଲେ ନେହେରୁ ଓ ପଟେଲଙ୍କ ପରି କ୍ଷମତା ରାଜନୀତିରେ ଯୋଗଦେଇ ପାରିଥାନ୍ତେ । ମାତ୍ର ତାହା ସେ ନକରି 'ସର୍ବୋଦୟ ମଣ୍ଡଳ' ଗଠନ କରି ସାମାଜିକ ସ୍ତରରେ ବିଭିନ୍ନ ଜନମଙ୍ଗଳ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ସେଥିପାଇଁ ସେ ବିଭିନ୍ନ ରାଜ୍ୟରେ ପଦଯାତ୍ରାମାନ ବିନା ନିରାପତ୍ତା ବାହିନୀର ସହାୟତାରେ କରିଥିଲେ । ଏହାଛଡ଼ା ପ୍ରସିଦ୍ଧ ଭୂଦାନ ଆନ୍ଦୋଳନର ସେ ଥିଲେ ପ୍ରବର୍ତ୍ତକ । କାହାରି ମନରେ କଷ୍ଟ ନଦେଇ ହୃଦୟ ପରିବର୍ତ୍ତନ କରିଆରେ ସେ ଭୂମି ଥିବା ଲୋକଙ୍କଠାରୁ କିଛି ଭୂମି ଭିକ୍ଷା ସୂତ୍ରରେ ଆଣି ସେଗୁଡ଼ିକ ଭୂମିହୀନ ଦରିଦ୍ର ବ୍ୟକ୍ତିଙ୍କୁ ଦାନ କରୁଥିଲେ । ଏଥିପାଇଁ ସରକାରୀ ଆଇନ ବା ନିୟମ କାନୁନ୍‌ର ଆଶ୍ରୟ ନ ନେଇ ବିନୋବାଜୀ ଧନୀ ଓ ଜମିଦାରମାନଙ୍କଠାରୁ ଆପଣାର ବ୍ୟକ୍ତିତ୍ୱ ବଳରେ ଜମି ପାଇ ପାରୁଥିଲେ । ତାଙ୍କର ଏହି ଭୂଦାନ କାର୍ଯ୍ୟକ୍ରମ ସମଗ୍ର ଭାରତରେ ଏକ ନୀରବ ଆନ୍ଦୋଳନରେ ପରିଣତ ହୋଇଥିଲା ।

୧୯୫୬ ମସିହାରେ ବିନୋବାଜୀ ଓଡ଼ିଶା ଗସ୍ତରେ ଆସି ପଦଯାତ୍ରା କରିଥିଲେ । ଓଡ଼ିଶାର ଲୋକେ ତାଙ୍କୁ ଗଭୀର ଶ୍ରଦ୍ଧା ଓ ଭକ୍ତିରେ ପଦଯାତ୍ରା ସମୟରେ ସମ୍ମାନ ଜ୍ଞାପନ କରିଥିଲେ । ଶାନ୍ତିପୂର୍ଣ୍ଣ ଉପାୟରେ ଭୂସଂସ୍କାର କରି ବିନୋବାଜୀ ଓଡ଼ିଶାରେ ଭୂଦାନ କାର୍ଯ୍ୟକ୍ରମକୁ ସକ୍ରିୟ କରିପାରିଥିଲେ । ବିନୋବାଜୀଙ୍କ ଅନୁରୋଧରେ ଧନୀ ଲୋକେ ଦରିଦ୍ର ଲୋକଙ୍କୁ ଜମିଦାନ କରି ଆନନ୍ଦ ଅନୁଭବ କରିଥିଲେ । ତେଣୁ ସମଗ୍ର ଭାରତରେ ଭୂଦାନ ଆନ୍ଦୋଳନ କ୍ଷେତ୍ରରେ ଓଡ଼ିଶା ସର୍ବାଗ୍ରେ ରହିଥିଲା । ମାତ୍ର ପରବର୍ତ୍ତୀ କାଳରେ କେତେକ ସରକାରୀ ଓ ସାଧାରଣ ଲୋକଙ୍କ ଅସହଯୋଗ କାରଣରୁ ଓଡ଼ିଶାରେ ଭୂଦାନ କାର୍ଯ୍ୟକ୍ରମ ମ୍ଳାନ ପଡ଼ିଯାଇଥିଲା ।

ଭାରତରେ ଯେକୌଣସି ସ୍ଥାନରେ ଦଙ୍ଗାହଙ୍ଗାମା ହେଲେ ବା ହିଂସାକାଣ୍ଡ ଘଟିଲେ ବିନୋବାଜୀ ପଦଯାତ୍ରାରେ ଯାଇ ସେଠାରେ ମହାତ୍ମା ଗାନ୍ଧୀଙ୍କ ପ୍ରଦର୍ଶିତ ନୀତିରେ ଶାନ୍ତି ସ୍ଥାପନ କରୁଥିଲେ । ସମସ୍ତଙ୍କର ସର୍ବବିଧ ମଙ୍ଗଳ ନିମନ୍ତେ ସେ ସର୍ବୋଦୟ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ମାତ୍ର ଭାରତର ଲୋକେ ଅଧିକମାତ୍ରାରେ ନିଃସ୍ୱାର୍ଥପର ହୋଇ ନପାରିବାରୁ ସର୍ବୋଦୟ ଆନ୍ଦୋଳନ କତିପୟ ମୁଷ୍ଟିମେୟ ଗାନ୍ଧିବାଦୀଙ୍କ ମଧ୍ୟରେ ସୀମିତ ରହିଯାଇଛି ଏବେ । ମାତ୍ର କଳୁଷିତ ରାଜନୀତି ଓ ସମାଜନୀତିକୁ ଦିଗଦର୍ଶନ ଦେବା କ୍ଷେତ୍ରରେ ସନ୍ଥ ବିନୋବାଙ୍କ ପନ୍ଥା ଯେ ସର୍ବୋତ୍କୃଷ୍ଟ ଥିଲା, ଏହା ଆମକୁ ସ୍ୱୀକାର କରିବାକୁ ପଡ଼ିବ । ୧୯୮୩ ମସିହାରେ ତାଙ୍କୁ ମରଣୋତ୍ତର ଭାବେ 'ଭାରତ ରତ୍ନ' ପ୍ରଦାନ କରାଯାଇଥିଲା ।

ସେହି ସମର୍ପିତ ଓ ତ୍ୟାଗପୂତ ଜୀବନର ଅବସାନ ଘଟିଥିଲା ୧୯୮୨ ମସିହା ନଭେମ୍ବର ୧୫ ତାରିଖରେ । ତାଙ୍କ ବିୟୋଗରେ ସେଦିନ କେବଳ ଭାରତରେ ନୁହେଁ, ସମଗ୍ର ବିଶ୍ୱରେ ଶୋକର ଛାୟା ଖେଳିଯାଇଥିଲା ।

ଡି.-୧୦/୫, ୟୁନିଟ୍-୮
ଭୁବନେଶ୍ୱର-୧୨

# ଓଡ଼ିଆ ଭାଷା ପ୍ରତିଷ୍ଠାନ : ଏକ ଦୃଷ୍ଟିପାତ

ଡଃ ପ୍ରଫୁଲ୍ଲ କୁମାର ରଥ

### ଐତିହାସିକ ପୃଷ୍ଠଭୂମି

ଜଗତୀକରଣ ଓ ପ୍ରଯୁକ୍ତି ବିଦ୍ୟାର ଅଗ୍ରଗତି ହେତୁ ସମ୍ପ୍ରତି ପ୍ରତ୍ୟେକ ଭାଷାର ବିକାଶ ଉପରେ ଗୁରୁତ୍ୱ ଦିଆଯାଉଅଛି । ନବ ନବ ଉଦ୍ଭାବିତ ଯନ୍ତ୍ର ସହ ଭାଷାକୁ ବ୍ୟବହାର ଉପଯୋଗୀ କରିବା ହେଉଛି ଏହି ଉଦ୍ୟମର ଅନ୍ୟତମ ଦିଗ । ଇଂରାଜୀ ସମେତ ପୃଥିବୀର ପ୍ରତ୍ୟେକ ଭାଷାର ଉପଯୁକ୍ତ ବିକାଶ ପାଇଁ ଭାଷା କେନ୍ଦ୍ର ବା Language Institute ମାନ ସରକାରୀ ଓ ବେସରକାରୀ କ୍ଷେତ୍ରରେ ଗଢ଼ାଯାଇ ଭାଷାର ସୁରକ୍ଷା ଓ ପ୍ରସାର ଦିଗରେ ଆବଶ୍ୟକୀୟ ଉଦ୍ୟମ କରାଯାଉଅଛି । ବିଭିନ୍ନ ଆଧୁନିକ ଭାରତୀୟ ଭାଷା ତୁଳନାରେ ଓଡ଼ିଆ ଭାଷାର ସମସ୍ୟା ପୃଥକ୍ । ପ୍ରଥମତଃ ଏହା ସଂଖ୍ୟା ଓ ପ୍ରୟୋଗ ଦୃଷ୍ଟିରୁ କମ୍ ଲୋକ ଓ କ୍ଷେତ୍ରରେ ବ୍ୟବହୃତ ହେଉଥିବା ଭାଷାଟିଏ । ତେଣୁ ଓଡ଼ିଆ ଭାଷାକୁ ବିକଶିତ କରିବା ସହିତ ସଂରକ୍ଷିତ କରିବା ପ୍ରଥମ ପ୍ରାଥମିକତା । ସେଥିପାଇଁ ଭାଷା ବ୍ୟବହାରକାରୀଙ୍କ ସଂଖ୍ୟା ଓ ଭାଷା ବ୍ୟବହାରର କ୍ଷେତ୍ରକୁ ବଢ଼ାଇବା ସହିତ ଭାଷାକୁ ସୁରକ୍ଷା ଦେବା ଦରକାର ।

ଏଥିପାଇଁ ଓଡ଼ିଶାର ବୁଦ୍ଧିଜୀବୀମାନେ ଦୀର୍ଘଦିନରୁ ସରକାରଙ୍କୁ ଉଚିତ ପଦକ୍ଷେପ ନେବାକୁ ଜଣାଇ ଆସୁଥିଲେ । ୧୯୯୨ ମସିହାରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଭାଷା ପ୍ରତିଷ୍ଠାନଟିଏ ଗଢ଼ିବା ପାଇଁ ଚାହିଁଥିଲେ । ଇତିମଧ୍ୟରେ ଅନେକ ଘଟଣା ପ୍ରବାହ ଗଡ଼ିଗଲା । ୨୦୦୬ ମସିହା ଏପ୍ରିଲ ୧ ତାରିଖରୁ ଭାଷା ପ୍ରତିଷ୍ଠାନ କାର୍ଯ୍ୟ କରିବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ପ୍ରତ୍ୟକ୍ଷ ପୃଷ୍ଠପୋଷକତାରେ ସମସ୍ତ ସାଂଗଠନିକ ଆୟୋଜନ ସମ୍ପନ୍ନ ହୋଇଥିଲା ।

### ଓଡ଼ିଆ ଭାଷା ପ୍ରତିଷ୍ଠାନ ସମ୍ପର୍କରେ

- ୨୦୦୬ ମସିହା ଏପ୍ରିଲ ୧ ତାରିଖ ପବିତ୍ର ଉତ୍କଳ ଦିବସ ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ତଥା ଭାଷା ପ୍ରତିଷ୍ଠାନ ସାଧାରଣ ପରିଷଦର ସଭାପତି ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ମହୋଦୟଙ୍କଦ୍ୱାରା ଏହି ପ୍ରତିଷ୍ଠାନ ଆନୁଷ୍ଠାନିକ ଭାବେ ଉଦ୍‌ଘାଟିତ ହୋଇଛି ।
- ଏହି ପ୍ରତିଷ୍ଠାନଟି ସମିତି ରେଜେଷ୍ଟ୍ରୀକରଣ ଅଧିନିୟମ ୧୮୬୦ର ୨୧ ଧାରା ଅଧୀନରେ ଏକ ରାଜ୍ୟସ୍ତରୀୟ ସମିତି ଭାବେ ପଞ୍ଜିକୃତ ହୋଇଅଛି ।
- ଏକ ସାଧାରଣ ପରିଷଦ ଓ ଏକ କାର୍ଯ୍ୟନିର୍ବାହୀ ପରିଷଦଦ୍ୱାରା ପ୍ରତିଷ୍ଠାନର କାର୍ଯ୍ୟ ନିର୍ବାହିତ ହୋଇଥାଏ ।
- ମାନ୍ୟବର ମୁଖ୍ୟମନ୍ତ୍ରୀ, ସାଧାରଣ ପରିଷଦର ସଭାପତି ତଥା ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ ଉପସଭାପତି ରହିଅଛନ୍ତି ।
- ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ କାର୍ଯ୍ୟନିର୍ବାହୀ ପରିଷଦର ଅଧକ୍ଷ ଏବଂ ମୁଖ୍ୟ ଶାସନ ସଚିବ କାର୍ଯ୍ୟକାରୀ ଅଧକ୍ଷ ଭାବରେ କାର୍ଯ୍ୟନିର୍ବାହ କରନ୍ତି ।

### ପ୍ରତିଷ୍ଠାନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ

ପ୍ରକଳ୍ପ ସଂଯୋଜନା, ପରିଚାଳନା ତଥା କାର୍ଯ୍ୟୋପଲବ୍ଧି ପ୍ରତିଷ୍ଠାନର ମୁଖ୍ୟ ତଥା ମୂଳ ଲକ୍ଷ୍ୟ । ଓଡ଼ିଆ ଭାଷାକୁ ଶିକ୍ଷା ପରିସର, ସଂଚାର ମାଧ୍ୟମ ପରିସର ତଥା ପ୍ରଶାସନ ଦପ୍ତରରେ ଅଧିକ ଅର୍ଥପୂର୍ଣ୍ଣ ଭାବରେ ପ୍ରୟୋଗ କରିବା, ଭାଷା ଓ ଲିପିର ଗବେଷଣାତ୍ମକ ପରିସରକୁ ଅଧିକ ବ୍ୟାପକ କରିବା, କମ୍ପ୍ୟୁଟରରେ ଭାଷାକୁ ବ୍ୟବହାର ଓ ଅଧିକ ପ୍ରସାର ଲାଗି ପ୍ରସ୍ତୁତ କରିବା, କେତେକ କାଳଜୟୀ ଓଡ଼ିଆ କୀର୍ତ୍ତିକୁ ଇଣ୍ଟରନେଟ୍ ଯୋଗେ ବିଶ୍ୱବ୍ୟାପୀ ଉପଲବ୍ଧ କରାଇବା, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀଭିତ୍ତିକ ସମୟୋପଯୋଗୀ ଅଭିଧାନ, ବ୍ୟାକରଣ ପ୍ରଣୟନ କରିବା, କର୍ମଶାଳା-ସଂପାନ-ସମ୍ମିଳନୀ ଆୟୋଜନ କରି ଭାଷାକୁ ଅଧିକ କାର୍ଯ୍ୟକ୍ଷମ ଓ ବଳିଷ୍ଠ ଭାଷାରେ ପରିଣତ କରିବାର ଉପାୟ ଅନୁସନ୍ଧାନ କରିବା ସହ

ଭାଷାର ସଂରକ୍ଷଣ (Documentation), ସଂଚାର ଭାଷାର ବିକାଶ (Communicative Language), ଭାଷାର ପ୍ରୟୋଗାତ୍ମକ ପ୍ରକାର୍ଯ୍ୟ (Applied Linguistics) ତଥା ଆଧୁନିକ ବୈଜ୍ଞାନିକ ପଦ୍ଧତିରେ ଭାଷା ଗବେଷଣା (Research) ଭଳି ଅନେକ ଯୋଜନାକୁ ବସ୍ତୁତଃ ରୂପାୟନ କରିବା ସହ ନିଶ୍ଚିତ ଫଳ ପ୍ରାପ୍ତି ହେବା ପାଇଁ ପ୍ରତିଷ୍ଠାନ ଲକ୍ଷ୍ୟ ଓ ସଂକଳ୍ପ ଗ୍ରହଣ କରିଛି । ବିଭିନ୍ନ ପ୍ରକଳ୍ପ ସଂଯୋଜନା ଓ ପରିଚାଳନା ପ୍ରତିଷ୍ଠାନର କାର୍ଯ୍ୟ, ଯଦ୍ୱାରା ଉପରେ କୁହାଯାଇଥିବା ଲକ୍ଷ୍ୟରେ ପହଞ୍ଚି ହେବ । ବର୍ତ୍ତମାନ ସୁଦ୍ଧା ପ୍ରତିଷ୍ଠାନ କେତେକ ପ୍ରକଳ୍ପ ଅଗ୍ରାଧିକାର ଭିତ୍ତିରେ ହାତକୁ ନେଇଅଛି -

୧. ଭାଷା ସଂରକ୍ଷଣ

୨. ଭାଷା ଗବେଷଣା

୩. ଭାଷା ସମୃଦ୍ଧି

୪. ଭାଷା ସଂପ୍ରସାରଣ

**ଓଡ଼ିଆ ଭାଷା ପ୍ରତିଷ୍ଠାନ ହାତକୁ ନେଇଥିବା ପ୍ରକଳ୍ପଗୁଡ଼ିକ**

ଓଡ଼ିଆ ଭାଷା ପ୍ରତିଷ୍ଠାନ ଗତ ୩ ବର୍ଷ ମଧ୍ୟରେ ସୀମିତ ମାନବ ସମ୍ବଳ ମଧ୍ୟରେ ପ୍ରତିଷ୍ଠାନର କାର୍ଯ୍ୟନିର୍ବାହୀ କମିଟି ଓ ସାଧାରଣ ପରିଷଦଙ୍କଦ୍ୱାରା ଅନୁମୋଦିତ କେତେକ ପ୍ରକଳ୍ପର କାର୍ଯ୍ୟ ଆରମ୍ଭ କରିଛନ୍ତି, ଯାହାର ବିବରଣୀ ନିମ୍ନରେ ପ୍ରଦାନ କରାଗଲା -

**୧) ଚଳନ୍ତି ଶବ୍ଦ ଚୟନ**

ଏଯାବତ୍ ଓଡ଼ିଆ ଭାଷାରେ ଯେଉଁ ଓଡ଼ିଆ ଅଭିଧାନଗୁଡ଼ିକ ମିଳୁଛି, ସେଥିରେ ଓଡ଼ିଶାର ବିଭିନ୍ନ ଅଞ୍ଚଳର ଲୋକମୁଖରେ କଥିତ ଶବ୍ଦ ପ୍ରାୟ ଗ୍ରହଣ କରାଯାଇନାହିଁ । ଓଡ଼ିଆ ଭାଷା ପ୍ରତିଷ୍ଠାନ ପକ୍ଷରୁ ପ୍ରଥମ ଥର ପାଇଁ ଓଡ଼ିଶାର ୩୦ଟି ଜିଲ୍ଲାରୁ ୩୦ ଜଣ ସଦସ୍ୟଙ୍କ ମାଧ୍ୟମରେ ଲୋକମୁଖର କଥିତ ଶବ୍ଦ ସଂଗ୍ରହ କରାଯାଇ ଏକ ଶବ୍ଦକୋଷ ପ୍ରଣୟନ କରାଯାଉଛି । ଏଥିସହ ଓଡ଼ିଆ ଭାଷାର କେତେକ ସାହିତ୍ୟିକଙ୍କ ରଚନାରୁ ତଥା ସଂଚାର ମାଧ୍ୟମରୁ ୫ ଜଣ ସଦସ୍ୟ କଥିତ ଶବ୍ଦ ସଂଗ୍ରହ କରୁଛନ୍ତି । ଏଥିପାଇଁ ଏକ ବିଶେଷଜ୍ଞ କମିଟି ଗଠିତ ହୋଇଛି । ଡକ୍ଟର ରତ୍ନାକର ଚଇନି ଏହି ବିଶେଷଜ୍ଞ କମିଟିର ଅଧ୍ୟକ୍ଷ ଭାବରେ ଦାୟିତ୍ୱ ନିର୍ବାହ କରୁଛନ୍ତି । ଡକ୍ଟର ଅଶୋକ କୁମାର ରଥ, ଡକ୍ଟର ଗିରିଶ ଚନ୍ଦ୍ର ମିଶ୍ର, ଡକ୍ଟର ବିବେକାନନ୍ଦ ପାଣିଗ୍ରାହୀ, ଡକ୍ଟର ରମାକାନ୍ତ ରାଉତ ଓ ଡକ୍ଟର କୈଳାସ ଚନ୍ଦ୍ର ଟିକାୟତରାୟ ଏହି ବିଶେଷଜ୍ଞ କମିଟିର ସଦସ୍ୟ ଭାବରେ କାର୍ଯ୍ୟ କରୁଅଛନ୍ତି । ଅନ୍ୟ ଜିଲ୍ଲା ପ୍ରତିନିଧି / ବିଶେଷଜ୍ଞମାନେ ହେଲେ, ଡ. ପ୍ରଦୀପ୍ତ କୁମାର ପଣ୍ଡା (କଟକ), ଡ. ମଥୁରାନାଥ ହୋତା (ବାଲେଶ୍ୱର), ଶ୍ରୀ ଅଚ୍ୟୁତାନନ୍ଦ ସାମଲ (ଭଦ୍ରକ), ଶ୍ରୀ ମନୋରଞ୍ଜନ ନନ୍ଦ (ଢେଙ୍କାନାଳ), ଡ. କୈଳାସ ବାଣ (ନୟାଗଡ଼), ଡ. ଅବଦୁଲ ଓସିଦ୍ ଖାଁ (ଖୋର୍ଦ୍ଧା), ଡ. ପ୍ରେମାନନ୍ଦ ମହାପାତ୍ର (କନ୍ଧମାଳ), ଶ୍ରୀ ଅନନ୍ତରାମ କର (ଗଞ୍ଜାମ) ଶ୍ରୀ ସତ୍ୟପ୍ରସାଦ ଦାଶ (ଗଜପତି), ଶ୍ରୀ ଦାଶରଥି ଆଚାର୍ଯ୍ୟ (କଳାହାଣ୍ଡି), ଶ୍ରୀ ନବୀନ ଚନ୍ଦ୍ର ପାଢ଼ୀ (ରାୟଗଡ଼ା), ଡ. ଶ୍ରୀମତୀ ଜ୍ୟୋସ୍ନାମୟୀ ପ୍ରଧାନ (କେଉଁଝର), ଶ୍ରୀ ଜଗନ୍ନାଥ ରାଉତ (ନବରଙ୍ଗପୁର), ଶ୍ରୀ ସନ୍ତୋଷ କୁମାର ରଥ ଓ ଶ୍ରୀ ମନୋଜ କୁମାର ପଣ୍ଡା (ବଲାଙ୍ଗୀର), ଶ୍ରୀ ମୀନକେତନ ଛୁରିଆ (ସୋନପୁର), ଶ୍ରୀ ଶୁଭ୍ରାଂଶୁ ଭୂଷଣ ସୂତାର (କେନ୍ଦ୍ରାପଡ଼ା), ଶ୍ରୀ ଧ୍ରୁବ ଚରଣ ଘିବେଲା (ବୌଦ), ଡ. ନିରଞ୍ଜନ ସାହୁ (ଜଗତସିଂହପୁର), ଶ୍ରୀ ରୋହିତ କୁମାର ପଟେଲ (ସୁନ୍ଦରଗଡ଼), ଡ. ସିଦ୍ଧେଶ୍ୱର ମହାପାତ୍ର (ପୁରୀ), ଶ୍ରୀମତୀ ନିବେଦିତା ରାଉତ (ସାହିତ୍ୟ), ଡ. କୁଳମଣି ଓଝା (ସଂଚାର ମାଧ୍ୟମ), ଶ୍ରୀ ପ୍ରେମାନନ୍ଦ ଦାଶ (କୋରାପୁଟ), ଡ. ଦୋବାଶିଷ ପାତ୍ର (ମାଲକାନଗିରି), ଡ. ବିଜୟ କୁମାର ସାମଲ (ଯାଜପୁର), ଡ. ପ୍ରଭାତୀ ରଥ (ସମ୍ବଲପୁର), ଶ୍ରୀ ସନ୍ତୋଷ କୁମାର ଦେବତା (ଦେବଗଡ଼), ଶ୍ରୀ ଗୌରୀଦାଶ ପ୍ରଧାନ (ଝାରସୁଗୁଡ଼ା), ଡ. ଶରତଚନ୍ଦ୍ର ଚାଲାନ (ନୂଆପଡ଼ା), ଡ. ସୁରେନ୍ଦ୍ର ମହାରଣା (ସାହିତ୍ୟ-୨), କୁମାରୀ ସୁଚିତ୍ରା ମଂଜରୀ ତ୍ରିପାଠୀ (ସାହିତ୍ୟ-୩), ଶ୍ରୀମତୀ ଇନ୍ଦିରା ଦାଶ, ଶ୍ରୀ ପ୍ରମୋଦ କୁମାର ପତି, ଶ୍ରୀ ମଣୀନ୍ଦ୍ର କୁମାର ମେହେର ।

ଏହି କାର୍ଯ୍ୟ ଚୂଡ଼ାନ୍ତ ପର୍ଯ୍ୟାୟରେ ପହଞ୍ଚିଛି । ରେଭେନ୍ସା ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ସହାୟତାରେ ଏହାର ଡାଟାବେସ୍ କାର୍ଯ୍ୟ ଶେଷ ହୋଇଛି ଏବଂ ୩୦ଟି ଜିଲ୍ଲାରୁ ସଂଗୃହୀତ ହୋଇଥିବା କଥିତ ଶବ୍ଦଗୁଡ଼ିକର କମ୍ପ୍ୟୁଟର ଏଣ୍ଟ୍ରି କାର୍ଯ୍ୟ ମଧ୍ୟ ସମ୍ପୂର୍ଣ୍ଣ ହୋଇଛି । ସଂଶୋଧନ ପାଇଁ ବିଶେଷଜ୍ଞମାନଙ୍କୁ ପାଣ୍ଡୁଲିପି ପ୍ରଦାନ କରାଯାଇଛି । ଏହା ସମାପ୍ତ ହେବା ପରେ ବିଧିବଦ୍ଧ ସମୀକ୍ଷା କାର୍ଯ୍ୟ ଆରମ୍ଭ କରାଯାଇ ଯଥାଶୀଘ୍ର ଏହାକୁ ପୂର୍ଣ୍ଣାଙ୍ଗରୂପ ପ୍ରଦାନ କରାଯିବ ।

**୨) ସାଂସ୍କୃତିକ ଶବ୍ଦାବଳୀ ଚୟନ**

ଓଡ଼ିଶା, ବିଭିନ୍ନ ଧର୍ମ ସଂସ୍କୃତିର ଏକ ସମନ୍ୱୟ କ୍ଷେତ୍ର । ଆର୍ଯ୍ୟମାନଙ୍କ ସମାଗମ କାଳରୁ ଯୁଗାନୁକ୍ରମିକ ଭିନ୍ନଭିନ୍ନ ଧର୍ମୀୟ-ସାଂସ୍କୃତିକ ଆଚାର ବିଚାରରେ ଓଡ଼ିଶାର ଜନଜୀବନ ସମୃଦ୍ଧ

ହୋଇଛି । ସେହି ଧର୍ମଧାରାକୁ ଆଧାର କରି ବିଭିନ୍ନ ଯୁଗରେ ସୃଷ୍ଟି ହୋଇଥିବା ସାହିତ୍ୟ ରାଶିରୁ ସମାଜରେ ପ୍ରଚଳିତ ତଥା ସଂସ୍କୃତି ସହ ସଂପର୍କାନ୍ୱିତ ଶବ୍ଦଗୁଡ଼ିକୁ ଚୟନ କରିବା ଓ ଲୋପ ପାଇ ଆସୁଥିବା ଏହି ପର୍ଯ୍ୟାୟର ଶବ୍ଦଗୁଡ଼ିକୁ ସଂକଳିତ କରିବା ଲକ୍ଷ୍ୟରେ, ଏହି ସଂକଳନଟି ପ୍ରସ୍ତୁତ କରାଯାଉଛି । ଡଃ ରତ୍ନାକର ଚଇନିଙ୍କ ଅଧ୍ୟକ୍ଷତାରେ ଡଃ ସୁରେନ୍ଦ୍ର କୁମାର ଦାସ, ଡଃ ସିଦ୍ଧେଶ୍ୱର ମହାପାତ୍ର, ଡଃ ହରିହର କାନୁନ୍‌ଗୋ, ଡଃ କୈଳାସ ଚନ୍ଦ୍ର ଟିକାୟତରାୟ ଓ ଡଃ ଗିରିଶ ଚନ୍ଦ୍ର ମିଶ୍ର ପ୍ରମୁଖଙ୍କ ସମ୍ପାଦନାରେ ଏହି କାର୍ଯ୍ୟର କେବଳ ପଞ୍ଚସଖା ଯୁଗର ଶବ୍ଦାବଳୀ ଚୟନର ଚୂଡ଼ାନ୍ତ ପ୍ରସ୍ତୁତି ଶେଷ ହୋଇସାରିଛି । ଯଥାଶୀଘ୍ର ମୁଦ୍ରଣ ନିମନ୍ତେ ପଦକ୍ଷେପ ନିଆଯାଉଛି ।

### ୩) ଦୁଷ୍ପ୍ରାପ୍ୟ କାଳଜୟୀ ଓଡ଼ିଆ ପୁସ୍ତକର ପୁନଃ ପ୍ରକାଶନ

ଓଡ଼ିଆ ଭାଷା ସାହିତ୍ୟରେ ଏପରି ଅନେକ କାଳଜୟୀ ରଚନା ଅଛି, ଯାହା ଆମ ଜାତିର ପରିଚୟକୁ ପରିବ୍ୟାପ୍ତ କରିବା ସହ ଆମ ଭାଷା ସାହିତ୍ୟକୁ ମଧ୍ୟ ଶିର୍ଷକୁ ନେଇପାରିଛି । କିନ୍ତୁ, ସଂରକ୍ଷଣ ଅଭାବରୁ ଓ ଅନ୍ୟ କେତେକ କାରଣରୁ ସଂପ୍ରତି ସେହି ରଚନାଗୁଡ଼ିକ ଦୁଷ୍ପ୍ରାପ୍ୟ ହୋଇଯାଇଛି । ସେହି କାଳଜୟୀ ପୁସ୍ତକଗୁଡ଼ିକର ପୁନଃ ପ୍ରକାଶନ ପାଇଁ ଶ୍ରୀ ରମାକାନ୍ତ ରଥଙ୍କ ଅଧ୍ୟକ୍ଷରେ ଏକ ଚୟନ କମିଟି ଗଠନ କରାଯାଇଛି । ଏହି କମିଟି ପ୍ରଥମ ପର୍ଯ୍ୟାୟରେ ୨୫ ଖଣ୍ଡ ଦୁଷ୍ପ୍ରାପ୍ୟ ଓ କାଳଜୟୀ ପୁସ୍ତକର ନାମ ଅନୁମୋଦନ କରିଛନ୍ତି । କପିରାଇଟ୍ ନିୟମ ଅନୁସାରେ ସେହି ପୁସ୍ତକଗୁଡ଼ିକର ସ୍ୱତ୍ୱାଧିକାର ମିଳିବା ପରେ ସେଗୁଡ଼ିକୁ ପୁନଃ ପ୍ରକାଶ ନିମନ୍ତେ ପଦକ୍ଷେପ ନିଆଯିବ ।

### ୪) ପୂର୍ବସୂରୀମାନଙ୍କ ରଚନାରୁ ଓଡ଼ିଆ ଭାଷା ସମ୍ପର୍କରେ ମତାମତ ସଂଗ୍ରହ

ଓଡ଼ିଆ ଭାଷାର ପ୍ରାଚୀନତା, ସମୃଦ୍ଧ ପରମ୍ପରା ସହ ଏହାର ସ୍ୱାଭାବିକତାଦି ସମ୍ପର୍କରେ ବିଭିନ୍ନ ସମୟରେ ବିଦେଶୀ ବିଦ୍ୱାନଙ୍କଠାରୁ ଆରମ୍ଭ କରି ଆମ ଦେଶ ଓ ରାଜ୍ୟର ଅନେକ ଗବେଷକ ଯେଉଁ ମତାମତ ଉଲ୍ଲେଖ କରିଛନ୍ତି, ସେ ସବୁକୁ ସଂଗ୍ରହ କରି ଭବିଷ୍ୟତ ପିଢ଼ି ପାଇଁ ଏକ ସଂକଳନ ପ୍ରକାଶ କରିବା ଆବଶ୍ୟକ । ଏହି ଲକ୍ଷ୍ୟ ପରିପୂରଣ ପାଇଁ କେତେକ ପାଠାଗାର, ଅଭିଲେଖାଗାର ଓ ବ୍ୟକ୍ତିବିଶେଷଙ୍କ ସହ ନିୟମିତ ଯୋଗାଯୋଗ ରଖାଯାଇଛି । ନିକଟ ଭବିଷ୍ୟତରେ ଏହି ରିପୋର୍ଟଗୁଡ଼ିକର ଏକ ପୂର୍ଣ୍ଣାଙ୍ଗ ସଂକଳନ ପ୍ରକାଶ କରାଯିବାର ଲକ୍ଷ୍ୟ ରହିଛି ।

### ୫) କାଳଜୟୀ କୃତିର ୱେବ ପ୍ରସାରଣ

ଓଡ଼ିଆ କାଳଜୟୀ ପୁସ୍ତକଗୁଡ଼ିକୁ ବିଶ୍ୱବ୍ୟାପୀ ଉପଲବ୍ଧ କରିବା ପାଇଁ ଭାଷା ପ୍ରତିଷ୍ଠାନ ତରଫରୁ କାଳଜୟୀ ପୁସ୍ତକଗୁଡ଼ିକର ୱେବ ପ୍ରସାରଣ ବ୍ୟବସ୍ଥା କରାଯାଇଛି । ପ୍ରଥମ ପର୍ଯ୍ୟାୟରେ ପରୀକ୍ଷାମୂଳକ ଭାବେ ସାରଳା ମହାଭାରତ, ଜଗନ୍ନାଥ ଦାସଙ୍କ ଭାଗବତ, ଫକୀରମୋହନଙ୍କ ଛ'ମାଣ ଆଠଗୁଣ୍ଠ ଓ ପ୍ରମୋଦ ଅଭିଧାନକୁ ରାଜ୍ୟ ପୋର୍ଟାଲରେ ପ୍ରସାରଣ କରାଯାଇଛି । ଭାଷା ପ୍ରତିଷ୍ଠାନର ନିଜସ୍ୱ ୱେବସାଇଟ୍ ପ୍ରତିଷ୍ଠା ପରେ ଏହା ପରିମାର୍ଜିତ ରୂପରେ ପ୍ରସାରିତ ହେବା ସହ ଅନ୍ୟ କୃତିଗୁଡ଼ିକ ପ୍ରସାରଣ କରିବାର ବ୍ୟବସ୍ଥା କରାଯାଉଛି ।

### ୬) ଅଣଓଡ଼ିଆଙ୍କ ନିମନ୍ତେ ଓଡ଼ିଆ ଭାଷା ଶିକ୍ଷା

ପର୍ଯ୍ୟଟନ ଓ ଅନ୍ୟାନ୍ୟ ବୃତ୍ତିରେ ଅନ୍ୟ ପ୍ରଦେଶ ଓ ବିଦେଶରୁ ଅନେକ ଲୋକ ଓଡ଼ିଶା ଆସିଥାନ୍ତି । ଓଡ଼ିଶାରେ ସ୍ୱଳ୍ପକାଳୀନ ରହଣି ସମୟରେ ସେମାନେ ବିଭିନ୍ନ ସ୍ଥାନରେ ଆମ ଭାଷାଭାଷୀ ଲୋକଙ୍କ ସଂସ୍ପର୍ଶରେ ଆସନ୍ତି । ସେହି ସମୟରେ ସେମାନଙ୍କ ପାଇଁ ଯଦି ବ୍ୟବହାର ଉପଯୋଗୀ ଗୋଟିଏ ଓଡ଼ିଆ ଭାଷା ଶିକ୍ଷା ସାମଗ୍ରୀ ଥାଆନ୍ତା, ତେବେ ସେମାନେ ଆଗ୍ରହବଶତଃ ଆମ ଭାଷା ବ୍ୟବହାର କରନ୍ତେ ଓ ଆମ ଭାଷାର ପ୍ରସାର ହୁଅନ୍ତା । ଏମିତି ଏକ ଲକ୍ଷ୍ୟରେ 'ଅଣ ଓଡ଼ିଆଙ୍କ ନିମନ୍ତେ ଓଡ଼ିଆ ଭାଷା ଶିକ୍ଷା' ପୁସ୍ତକ ପ୍ରଣୟନ କରାଯାଉଛି । ଶ୍ରୀ ରାଜକିଶୋର ମିଶ୍ରଙ୍କ ଅଧ୍ୟକ୍ଷତାରେ ଏହି ପୁସ୍ତକର ପ୍ରସ୍ତୁତି ଚାଲିଅଛି । ଆବଶ୍ୟକୀୟ ସମୀକ୍ଷା ପରେ ଏହାକୁ ମୁଦ୍ରଣ ଉପଯୋଗୀ କରିବା ନିମନ୍ତେ ପଦକ୍ଷେପ ନିଆଯିବ ।

### ୭) ପ୍ରାଥମିକ ସ୍ତର ପାଇଁ ଚିତ୍ର ଶବ୍ଦ ପୁସ୍ତକ ପ୍ରଣୟନ

ପ୍ରାଥମିକ ସ୍ତରରୁ ଛାତ୍ରଛାତ୍ରୀମାନଙ୍କ ଶବ୍ଦ-ଜ୍ଞାନ ବଢ଼ାଇବା ପାଇଁ କୌତୁହଳପୂର୍ଣ୍ଣ ଚିତ୍ର ମାଧ୍ୟମରେ ଶବ୍ଦ-ଶିକ୍ଷା ଆବଶ୍ୟକ । ଏହି ପ୍ରସଙ୍ଗକୁ ଦୃଷ୍ଟିରେ ରଖି ପ୍ରାଥମିକ ସ୍ତର ଚିତ୍ର ଶବ୍ଦ ପୁସ୍ତକ ପ୍ରକଳ୍ପଟି ହାତକୁ ନିଆଯାଇଛି ।

ଏଥିପାଇଁ ଶ୍ରୀ ସାରଦା ପ୍ରସନ୍ନ ନାୟକଙ୍କ ଅଧ୍ୟକ୍ଷତାରେ ଡକ୍ଟର ମୋହିତ ମୋହନ ମହାନ୍ତି, ଡକ୍ଟର କୁଳମଣି ସାମଲ ଓ ଡକ୍ଟର କୃଷ୍ଣଚନ୍ଦ୍ର ଷଡ଼ଙ୍ଗୀ ପ୍ରଭୃତି ଅନ୍ୟ ତିନି ଜଣ ସଦସ୍ୟଙ୍କୁ ନେଇ ଏକ ବିଶେଷଜ୍ଞ କମିଟି ଗଠନ କରାଯାଇଛି । ଏହି ବିଶେଷଜ୍ଞ କମିଟିର ସୁପାରିଶକ୍ରମେ ପ୍ରକଳ୍ପ କାର୍ଯ୍ୟଟିର ଲେଖକ ଭାବେ ଡକ୍ଟର ଚକ୍ରଧର ବିଶ୍ୱାଳ ଓ ଶ୍ରୀ ପ୍ରଶାନ୍ତ କୁମାର ରଥଙ୍କୁ ଲେଖକ-ସଦସ୍ୟ ଭାବେ ଦାୟିତ୍ୱ ପ୍ରଦାନ କରାଯାଇଥିଲା । ଶ୍ରୀ ବ୍ରଜକିଶୋର ଜେନା

ଓ ଶ୍ରୀ ଚନ୍ଦନ ଦାସଙ୍କୁ ଚିତ୍ରଶିଳ୍ପୀ ଭାବେ କାର୍ଯ୍ୟନିର୍ବାହ କରିବାକୁ ଦାୟିତ୍ୱ ଦିଆଯାଇଥିଲା । ଏହା ସଂପୂର୍ଣ୍ଣ ହୋଇଛି ଓ ନିକଟରେ ପ୍ରକାଶ ପାଇବ ।

**୮) ବଣ୍ଡା ଭାଷାଭାଷୀଙ୍କୁ ଓଡ଼ିଆ ଭାଷା ଓ ଓଡ଼ିଆ ଭାଷାଭାଷୀଙ୍କୁ ବଣ୍ଡା ଭାଷା ଶିକ୍ଷା**

ବିଭିନ୍ନ ଆଦିବାସୀ ଭାଷାଭାଷୀମାନେ କିପରି ଓଡ଼ିଆ ଭାଷା ସହଜରେ ଶିଖି ପାରିବେ ଓ ଓଡ଼ିଆ ଭାଷାଭାଷୀମାନେ କିପରି ଆଦିବାସୀ ଭାଷା ଶିଖିପାରିବେ, ସେ ସଂପର୍କରେ ଭାଷା ପ୍ରତିଷ୍ଠାନ-ପକ୍ଷରୁ ଯୋଜନାବଦ୍ଧ ପଦକ୍ଷେପ ଗ୍ରହଣ କରାଯାଇଛି । ପ୍ରଥମ ପର୍ଯ୍ୟାୟରେ ବଣ୍ଡା-ଓଡ଼ିଆ ଭାଷାର ଏକ ଦ୍ୱିଭାଷିକ ଭାଷା ଶିକ୍ଷା ପୁସ୍ତକ (ଡୁଡୁମାଂମାଂ-ହସଖେଳ) ପ୍ରସ୍ତୁତ କରାଯାଇଛି । ଡ. ଖଗେଶ୍ୱର ମହାପାତ୍ରଙ୍କ ଅଧକ୍ଷତାରେ ଡ. ମହେନ୍ଦ୍ର କୁମାର ମିଶ୍ର, ଡ. ଲିପି ହେମ୍ବ୍ରମ, ଶ୍ରୀ ଗୋବର୍ଦ୍ଧନ ପଣ୍ଡା, ଶ୍ରୀ ଉଦୟନାଥ ମାଝୀଙ୍କୁ ବିଶେଷଜ୍ଞ ଭାବରେ ଗ୍ରହଣ କରି, ଏହି ପାଣ୍ଡୁଲିପି ପ୍ରସ୍ତୁତ ହୋଇଛି । ଯଥାଶୀଘ୍ର ମୁଦ୍ରଣ ନିମନ୍ତେ ପଦକ୍ଷେପ ନିଆଯିବ ।

**୯) ସାଧାରଣ ପାଠ୍ୟକ୍ରମ ପ୍ରଣୟନ**

ସଂପ୍ରତି ପ୍ରଥମରୁ ସ୍ନାତକ ପର୍ଯ୍ୟନ୍ତ ପ୍ରଚଳିତ ସାଧାରଣ ପାଠ୍ୟକ୍ରମକୁ ବାଦ୍ ଦେଇ ପାଠ୍ୟ ଖସଡ଼ାରେ କି କି ଉପାଦାନ ଦେଲେ ତାହା ଆମ ଭାଷାକୁ ସମୃଦ୍ଧ କରିବ, ସେ ସମ୍ପର୍କରେ ନିର୍ଦ୍ଦିଷ୍ଟ ପାଠ୍ୟଖସଡ଼ା ପ୍ରସ୍ତୁତି ପାଇଁ ଏହି ପ୍ରକଳ୍ପଟିକୁ ହାତକୁ ନିଆଯାଇଛି । ଡ. ବୈଷ୍ଣବ ଚରଣ ସାମଲ, ଡ. ଭୋଳାନାଥ ରାଉତ, ଡ. କାଳନ୍ଦୀ ଚରଣ ମହାପାତ୍ର, ଡ. ବିଜୟାନନ୍ଦ ସିଂହ, ଡ. ପ୍ରୀତିଶ ଆଚାର୍ଯ୍ୟ, ଶ୍ରୀ ଅଚ୍ୟୁତାନନ୍ଦ ସାମଲ ଓ ଶ୍ରୀ ଯତୀନ୍ଦ୍ର କୁମାର ମେହେରଙ୍କୁ ବିଶେଷଜ୍ଞ ଭାବରେ ଗ୍ରହଣ କରି ଏହି କମିଟି ପାଠ୍ୟକ୍ରମର ଏକ ଚିଠା ଖସଡ଼ା ପ୍ରସ୍ତୁତ କରିଛନ୍ତି । ଏହା ବିଭିନ୍ନ ବିଶ୍ୱବିଦ୍ୟାଳୟ, ମହାବିଦ୍ୟାଳୟ, ବୋର୍ଡ଼ ତଥା ବୁଦ୍ଧିଜୀବୀମାନଙ୍କଦ୍ୱାରା ତର୍ଜମା ହେବାପରେ ଏବଂ ରାଜ୍ୟ ସରକାରଙ୍କଦ୍ୱାରା ଗୃହୀତ ହେବାପରେ ବିଭିନ୍ନ ସ୍ତରରେ ପ୍ରଚଳନ କରାଯିବ ।

**୧୦) ଅଫିସର ନଥି ପ୍ରସ୍ତୁତି, ଦରଖାସ୍ତ, ଡ୍ରାଫ୍ଟ ଓ ସୂଚନା ଅଧିକାର ଆଦି ସଂପର୍କିତ ଆଦର୍ଶ ପୁସ୍ତକ ପ୍ରଣୟନ**

ବିଭିନ୍ନ ଦପ୍ତରରେ କାର୍ଯ୍ୟ କରୁଥିବା ବ୍ୟକ୍ତିବିଶେଷଙ୍କ ସମେତ, ସାଧାରଣ ଲୋକଟିଏ ଗୋଟିଏ ଦରଖାସ୍ତ ଲେଖିବାବେଳେ, ବ୍ୟାଙ୍କର ଫର୍ମ ପୂରଣ କଲାବେଳେ ବା ସୂଚନା ଅଧିକାରରେ ତଥ୍ୟଟିଏ ମାଗିବାବେଳେ ସହଜରେ ଓଡ଼ିଆ ଭାଷାରେ କିପରି ଲେଖିପାରିବେ, ସେଥିପାଇଁ ପ୍ରତିଷ୍ଠାନ ପକ୍ଷରୁ ଏକ ମଡ଼େଲ ପୁସ୍ତକ ପ୍ରଣୟନ କରାଯାଇଛି । ବିଧି ବିଭାଗର ବିଶେଷଜ୍ଞ ସହ ସୂଚନା କମିଶନର ଦପ୍ତରର ବିଶେଷଜ୍ଞ, ସାମ୍ବାଦିକ, ଅବସରପ୍ରାପ୍ତ ପ୍ରଶାସନିକ ଅଧିକାରୀଙ୍କୁ ନେଇ ଏହାର ପ୍ରସ୍ତୁତି ଚୂଡ଼ାନ୍ତ ପର୍ଯ୍ୟାୟରେ ପହଞ୍ଚିଛି । ସମୀକ୍ଷା କାର୍ଯ୍ୟ ଶେଷ ହେବା ପରେ ସମ୍ପୂର୍ଣ୍ଣ ପାଣ୍ଡୁଲିପିଟି ବିଧି ବିଭାଗର ଅନୁମୋଦନ ନିମନ୍ତେ ପ୍ରେରଣ କରାଯିବ । ଅନୁମୋଦନ ପରେ ମୁଦ୍ରଣ ନିମନ୍ତେ ପଦକ୍ଷେପ ନିଆଯିବ ।

**୧୧) ସାଧାରଣ ବନାନଶୁଦ୍ଧି ପୁସ୍ତକ ପ୍ରଣୟନ**

ବନାନ ଭୁଲ୍ ଲେଖିବା ଓ ଉଚ୍ଚାରଣ କରିବା କାରଣରୁ ଅନେକ ଭାଷା ବ୍ୟବହାରରେ କୁଣ୍ଠା ପ୍ରକାଶ କରିଥାନ୍ତି । ଯଦି ସାଧାରଣ ବ୍ୟକ୍ତିଟିଏ ଶୁଦ୍ଧ ଲିଖନରେ ସଫଳ ହୋଇପାରିବ, ତେବେ ଭାଷା ବ୍ୟବହାର କ୍ଷେତ୍ରରେ ସେ ନିଶ୍ଚିତ ରୂପେ ଆଗ୍ରହ ପ୍ରକାଶ କରିବ । ଏହି ଲକ୍ଷ୍ୟରେ ପ୍ରତିଷ୍ଠାନ ପକ୍ଷରୁ ସାଧାରଣ ବନାନଶୁଦ୍ଧି ପୁସ୍ତକ ପ୍ରଣୟନ କରାଯାଉଛି । ଡ. ଚକ୍ରଧର ବିଶ୍ୱାଳ, ଶ୍ରୀ ଗୌରହରି ଦାସ, ଡ. ମୀନକେତନ ପାଠୀ ପ୍ରମୁଖ ଏହି ପୁସ୍ତକ ପ୍ରଣୟନ ଦାୟିତ୍ୱ ନିର୍ବାହ କରୁଛନ୍ତି । ଡ. ଉଦୟନାଥ ସାହୁଙ୍କଦ୍ୱାରା ଏହାର ସମୀକ୍ଷା କାର୍ଯ୍ୟ ଶେଷ ହୋଇଛି । ଯଥାଶୀଘ୍ର ମୁଦ୍ରଣ ନିମନ୍ତେ ପଦକ୍ଷେପ ନିଆଯିବ

**୧୨) ପ୍ରଶାସନିକ ଶବ୍ଦକୋଷ**

ଏହା ସ୍ମରଣଯୋଗ୍ୟ ଯେ, ଓଡ଼ିଆ ଭାଷା, ଓଡ଼ିଶାର ସରକାରୀ ଭାଷା । ତେଣୁ ଓଡ଼ିଶା ସରକାର ବିଭିନ୍ନ ସମୟରେ ନିୟମମାନ ପ୍ରଣୟନ କରି ଏହାକୁ ସରକାରୀ ଦପ୍ତର, କୋର୍ଟ ଓ କଚେରୀ ଆଦିରେ ପ୍ରୟୋଗ କରିବାକୁ ଉତ୍ସାହିତ କରିଛନ୍ତି ।

ପୂର୍ବରୁ ଓଡ଼ିଆ ଭାଷାରେ ପ୍ରକାଶିତ ପ୍ରଶାସନିକ ଶବ୍ଦକୋଷଟି କେତେକ କାରଣରୁ ସବୁକ୍ଷେତ୍ରରେ ଗ୍ରହଣୀୟ ହୋଇପାରିଲା ନାହିଁ । ତେଣୁ, ଏହାକୁ ସରଳ ଓ ବ୍ୟବହାର ଉପଯୋଗୀ କରି ତଥା ବର୍ତ୍ତମାନ ସମୟରେ ଆମ ଭାଷା ଭଣ୍ଡାରକୁ ସମୃଦ୍ଧ କରିଥିବା କମ୍ପ୍ୟୁଟର, ଯୋଗାଯୋଗ କ୍ଷେତ୍ରରେ ପ୍ରଚଳିତ ବିଭିନ୍ନ ଶବ୍ଦକୁ ସାମିଲ କରି ଏକ ନୂତନ ପ୍ରଶାସନିକ ଶବ୍ଦକୋଷ ପ୍ରଣୟନ ପାଇଁ ସ୍ଥିର କରାଯାଇଛି । ରାଜ୍ୟ ସରକାରଙ୍କ ବିଧି ବିଭାଗରୁ ଅନୁମତି ମିଳିବା ପରେ ଏହାର ପ୍ରସ୍ତୁତି କାର୍ଯ୍ୟ ଶେଷ ହୋଇ, ସମୀକ୍ଷା କାର୍ଯ୍ୟ ଚାଲିଛି । ଯଥାଶୀଘ୍ର ସମୀକ୍ଷା କାର୍ଯ୍ୟ ଶେଷ କରାଯାଇ ବିଧି ବିଭାଗର ଅନୁମୋଦନ ନିମନ୍ତେ ପ୍ରେରଣ କରାଯିବ ଏବଂ ତାହା ପରେ ଏହାର ମୁଦ୍ରଣ ନିମନ୍ତେ ପଦକ୍ଷେପ ନିଆଯିବ ।

**୧୩) ଜିଲ୍ଲାସ୍ତରୀୟ ସବ୍ କମିଟି ଗଠନ**

ଭାଷା ପ୍ରତିଷ୍ଠାନର କାର୍ଯ୍ୟଧାରା ସହ ରାଜ୍ୟର ସମସ୍ତ ଅଞ୍ଚଳର ଜନସାଧାରଣଙ୍କୁ ପ୍ରତ୍ୟକ୍ଷଭାବେ ସଂପୃକ୍ତ କରିବା ପାଇଁ ଜିଲ୍ଲାସ୍ତରରେ ଭାଷା ପ୍ରତିଷ୍ଠାନର ସବ୍‌କମିଟିମାନ ଗଠନ କରାଯାଇଛି । ଜିଲ୍ଲାର ଜିଲ୍ଲାପାଳ / ଉପଜିଲ୍ଲାପାଳଙ୍କ ଅଧ୍ୟକ୍ଷତାରେ ଏହି କମିଟି ଗଠନ କରାଯାଇଛି । ଏଯାବତ୍ ଜଗତ୍‌ସିଂହପୁର, ସୁନ୍ଦରଗଡ଼, ମାଲକାନଗିରି, ବରଗଡ଼, ନୂଆପଡ଼ା, ବଲାଙ୍ଗୀର, ବାଲେଶ୍ୱର, ଭଦ୍ରକ, ଦେବଗଡ଼, କେନ୍ଦୁଝର, ନବରଙ୍ଗପୁର, ସମ୍ବଲପୁର, ସୁବର୍ଣ୍ଣପୁର, ଅନୁଗୋଳ ଓ ରାୟଗଡ଼ା ଆଦି ଜିଲ୍ଲାରେ ଏହି ସବ୍‌କମିଟି ଗଠିତ ହୋଇସାରିଛି । ଭାଷାର ସୁରକ୍ଷା, ସମୃଦ୍ଧି ଓ ପ୍ରସାର ଦିଗରେ ଜିଲ୍ଲାସ୍ତରରେ କି କାର୍ଯ୍ୟକ୍ରମ ଗ୍ରହଣ କରାଯିବ, ତାହାର ଚିଠା ପ୍ରସ୍ତୁତ କରି ଭାଷା ପ୍ରତିଷ୍ଠାନ ଉକ୍ତ ଜିଲ୍ଲାମାନଙ୍କୁ ଅବଗତ କରାଇବା ସଂଗେସଂଗେ ତ୍ରୈମାସିକ କାର୍ଯ୍ୟକ୍ରମ ପାଇଁ ଆନୁଷଙ୍ଗିକ ଅର୍ଥ ବ୍ୟବସ୍ଥା କରିଛନ୍ତି ।

**୧୪) ସରକାରୀ, ବେସରକାରୀ ତଥା ବାଣିଜ୍ୟିକ ପ୍ରତିଷ୍ଠାନ ଆଦିର ନାମଫଳକ, ବିଜ୍ଞାପନ ଓ ନିମନ୍ତ୍ରଣ ପତ୍ର ଆଦିରେ ଓଡ଼ିଆ ଭାଷା ପ୍ରୟୋଗକୁ ନିଶ୍ଚିତ କରିବା**

ଶ୍ରମ ଓ ନିଯୋଜନ ବିଭାଗଙ୍କ ନିର୍ଦ୍ଦେଶନାମା ସଂଖ୍ୟା ଏଲ୍.ଏଲ୍.-II-୨୮-୨୦୦୦-୧୪୫୯୪/ଏଲ୍.ଇ. ତା.୩୧.୧୧.୨୦୦୦ ଓ ଓଡ଼ିଆ ଭାଷା ପ୍ରତିଷ୍ଠାନର କାର୍ଯ୍ୟନିର୍ବାହୀ ପରିଷଦର କାର୍ଯ୍ୟକାରୀ ଅଧ୍ୟକ୍ଷ ମୁଖ୍ୟ ଶାସନ ସଚିବଙ୍କ ଅର୍ଦ୍ଧସରକାରୀ ପତ୍ର ସଂଖ୍ୟା ୧୭୫୧୬ ତା.୧୮.୦୮.୦୭ ମାଧ୍ୟମରେ ସମସ୍ତ ଜିଲ୍ଲାପାଳମାନଙ୍କୁ ଅନୁରୋଧ କରାଯାଇଥିଲା ଯେ, ସେମାନଙ୍କ ଜିଲ୍ଲାରେ ଥିବା ସରକାରୀ, ବେସରକାରୀ ତଥା ବାଣିଜ୍ୟିକ ପ୍ରତିଷ୍ଠାନ ଆଦିର ନାମଫଳକ, ବିଜ୍ଞାପନ ଫଳକଗୁଡ଼ିକୁ ପ୍ରଥମେ ଓଡ଼ିଆରେ ଲେଖିବା ପାଇଁ କଡ଼ାକଡ଼ି ନିୟମ କରାଯାଉ । ଏଯାବତ୍ ସୁନ୍ଦରଗଡ଼, ସୋନପୁର, ଅନୁଗୁଳ, ଝାରସୁଗୁଡ଼ା, ନୟାଗଡ଼, ଢେଙ୍କାନାଳ ଓ ବଲାଙ୍ଗୀର ଜିଲ୍ଲାର ଜିଲ୍ଲାପାଳମାନେ ସେମାନଙ୍କ ଜିଲ୍ଲାରେ ଏହି ନିୟମକୁ କାର୍ଯ୍ୟକାରୀ କରିଥିବା ଜଣାଇଛନ୍ତି । ଅବଶିଷ୍ଟ ଜିଲ୍ଲାମାନଙ୍କୁ ଏହି କାର୍ଯ୍ୟକ୍ରମର ପରିସରଭୁକ୍ତ କରିବା ନିମନ୍ତେ ବାରମ୍ବାର ସ୍ମରଣ ପତ୍ର ପଠାଯାଉଛି ।

**୧୫) ଭାଷା ମାନସ**

ଏହି ପ୍ରକଳ୍ପ ଜରିଆରେ ଭାଷା ସମ୍ପର୍କରେ ସଚେତନତା ଓ ଆଗ୍ରହ ସୃଷ୍ଟି କରିବା ସହ ଭାଷାର ପ୍ରସାର କରିବା ଲକ୍ଷ୍ୟରେ ରାଜ୍ୟସ୍ତରୀୟ ଓ ଜିଲ୍ଲାସ୍ତରୀୟ ପୁସ୍ତକମେଳାମାନଙ୍କରେ ଆଲୋଚନାଚକ୍ର ଓ କର୍ମଶାଳା ଆୟୋଜନ କରାଯାଉଛି । ଏଥିରେ ସମ୍ପୃକ୍ତ ଅଞ୍ଚଳର ବିଦ୍ୱାନ୍‌ମାନଙ୍କ ସମେତ ଭାଷା ପ୍ରତିଷ୍ଠାନ ପକ୍ଷରୁ ନିମନ୍ତ୍ରିତ ଭାଷାବିତ୍‌ମାନଙ୍କୁ ନେଇ ଓଡ଼ିଆ ଭାଷାର ବିଭିନ୍ନ ଦିଗରେ ଆଲୋଚନାଚକ୍ରମାନ ଆୟୋଜନ କରାଯାଇ ଆସୁଅଛି ।

**ଆର୍ଥିକ ବର୍ଷ ୨୦୦୯-୧୦ ପାଇଁ ପ୍ରତିଷ୍ଠାନ ତରଫରୁ ହାତକୁ ନେବାକୁ ଥିବା ପ୍ରକଳ୍ପଗୁଡ଼ିକ**

ଓଡ଼ିଆ ଭାଷା ପ୍ରତିଷ୍ଠାନ କାର୍ଯ୍ୟ ନିର୍ବାହୀ କମିଟି ଏବଂ ସାଧାରଣ ପରିଷଦଙ୍କଦ୍ୱାରା ଅନୁମୋଦିତ ପ୍ରକଳ୍ପଗୁଡ଼ିକ ମଧ୍ୟରୁ ଯେଉଁ କେତେକ ପ୍ରକଳ୍ପ ପାଇଁ ଅର୍ଥ ବନ୍ଦୋବସ୍ତ କରାଯାଇନଥିବା ଯୋଗୁଁ କାର୍ଯ୍ୟାରମ୍ଭ ହୋଇପାରିନାହିଁ, ସେହି ଅନୁମୋଦିତ ପ୍ରକଳ୍ପଗୁଡ଼ିକ ଚଳିତ ଆର୍ଥିକ ବର୍ଷରେ କାର୍ଯ୍ୟକାରୀ କରିବାକୁ ଲକ୍ଷ୍ୟ ରଖାଯାଇଛି ।

୧. ଓଡ଼ିଆ ଭାଷାର ଇତିହାସ ପ୍ରଣୟନ (ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ପ୍ରସ୍ତାବକ୍ରମେ) ।

୨. ଓଡ଼ିଆ ବ୍ୟାକରଣ ପ୍ରଣୟନ ।

୩. ସାଂସ୍କୃତିକ ଶବ୍ଦାବଳୀ ଚୟନ (ଲୋକସାହିତ୍ୟ ଓ ସାରଳା ଖଣ୍ଡ) ।

୪. ବୈଜ୍ଞାନିକ ପାରିଭାଷିକ ଜ୍ଞାନକୋଷ (୫ଟି ବିଷୟ) ।

୫. ଦୁଷ୍ପ୍ରାପ୍ୟ / ପୁରାତନ ଗ୍ରନ୍ଥର ପୁନଃ ମୁଦ୍ରଣ ।

୬. ଜିଲ୍ଲାସ୍ତରୀୟ ସବ୍‌କମିଟି ଅନୁଦାନ (ବାର୍ଷିକ) ।

୭. ଭାଷା ଓ ବ୍ୟାକରଣ ପ୍ରଶିକ୍ଷଣ ଶିବିର ।

୮. ପ୍ରବାସୀ ରାଜ୍ୟ ଓଡ଼ିଆ ଭାଷା ଜଗତ କ୍ଷେତ୍ରୀୟ ଆକଳନ ।

୯. ବିଛିନ୍ନାଞ୍ଚଳ ଓଡ଼ିଆ ଭାଷା ଜଗତ କ୍ଷେତ୍ରୀୟ ଆକଳନ ।

୧୦. ବର୍ଣ୍ଣମାଳା ବିନ୍ୟାସ ଓ ଓଡ଼ିଆଭାଷାର କମ୍ପ୍ୟୁଟରୀକରଣ ପାଇଁ କର୍ମଶାଳା (୩ ଗୋଟି) ।

**ପ୍ରତିଷ୍ଠାନର ଅନ୍ୟାନ୍ୟ ଉପଲବ୍ଧି**

**କ) ଭାଷା କମିଟି ଗଠନ**

ଓଡ଼ିଆ ଭାଷାରେ ପ୍ରକାଶିତ ଓ ରାଜ୍ୟ ସରକାରଙ୍କ ମଧ୍ୟରେ ପ୍ରସାରିତ ଓଡ଼ିଆ ତଥ୍ୟାବଳୀର ଯାଞ୍ଚ ଓ ପ୍ରାମାଣିକତା ପ୍ରଦାନ

ପାଇଁ ସରକାର ଏକ ଭାଷା କମିଟି ଗଠନ କରିଛନ୍ତି । ମୁଖ୍ୟ ଶାସନ ସଚିବ ଓଡ଼ିଆ ଭାଷା ପ୍ରତିଷ୍ଠାନ କାର୍ଯ୍ୟନିର୍ବାହୀ କମିଟିର କାର୍ଯ୍ୟକାରୀ ଅଧ୍ୟକ୍ଷ ଅଟନ୍ତି । ଓଡ଼ିଆ ଭାଷା ପ୍ରତିଷ୍ଠାନର ନିର୍ଦ୍ଦେଶକ ଏହି କମିଟିରେ ଆବାହକ-ସଭ୍ୟ । ଡଃ ଗଣେଶ୍ୱର ମିଶ୍ର, ଡଃ ଗିରୀଶ ଚନ୍ଦ୍ର ମିଶ୍ର ଓ ଡଃ କୈଳାସ ଚନ୍ଦ୍ର ଟିକାୟତରାୟ ଏହାର ସଭ୍ୟ ଅଟନ୍ତି । ରାଜ୍ୟ ସରକାରଙ୍କ ବିଭିନ୍ନ ବିଭାଗ ଓ ଅନୁଷ୍ଠାନଦ୍ୱାରା ଓଡ଼ିଆ ଭାଷାରେ ଗ୍ରହଣ କରାଯାଉଥିବା କାର୍ଯ୍ୟାବଳୀର ପର୍ଯ୍ୟାଲୋଚନା, ଭାଷାଗତ ଯାଞ୍ଚ, ପରାମର୍ଶ, ତର୍ଜମା ଆଦିର ଆବଶ୍ୟକୀୟ ଅନୁମୋଦନ ଏହି କମିଟି ମାଧ୍ୟମରେ କରାଯିବ । ସମ୍ପ୍ରତି ସାଧାରଣ ଓ ରାଜ୍ୟ ନିର୍ବାଚନ ଉପଲକ୍ଷେ ନିର୍ବାଚନ ଆୟୋଗଙ୍କ ବିଭିନ୍ନ ସର୍କୁଲାର ଓ ବିଭିନ୍ନ ମାର୍ଗଦର୍ଶିକା ଇଂରାଜୀ ପୁସ୍ତକର ଓଡ଼ିଆ ଅନୁବାଦ କାର୍ଯ୍ୟ ରାଜ୍ୟ ନିର୍ବାଚନ କମିଶନଙ୍କ ଅନୁରୋଧକ୍ରମେ ପ୍ରତିଷ୍ଠାନଦ୍ୱାରା ସମ୍ପାଦିତ ହୋଇଛି ।

**ଖ) ପଶ୍ଚିମବଙ୍ଗ ମାଧ୍ୟମିକ ଶିକ୍ଷା ବୋର୍ଡ଼ ପ୍ରଣିତ ବଙ୍ଗଳା ପାଠ୍ୟପୁସ୍ତକର ଓଡ଼ିଆ ଅନୁବାଦ**

ପଶ୍ଚିମବଙ୍ଗରେ ଅଧ୍ୟୟନ କରୁଥିବା ଓଡ଼ିଆ ଛାତ୍ରଛାତ୍ରୀମାନେ ଓଡ଼ିଆରେ ଅନୁବାଦିତ ଟେକ୍ସଟ୍ ବୁକ୍ ନ ଥିବାରୁ ବଙ୍ଗଳା ପାଠ୍ୟପୁସ୍ତକ ପଢ଼ି ଓଡ଼ିଆରେ ପରୀକ୍ଷା ଦେଇ ଆସୁଛନ୍ତି । ଓଡ଼ିଆ ଭାଷା ପ୍ରତିଷ୍ଠାନ ପକ୍ଷରୁ ପଶ୍ଚିମବଙ୍ଗରେ ଅଧ୍ୟୟନ କରୁଥିବା ଓଡ଼ିଆ ଛାତ୍ରଛାତ୍ରୀମାନଙ୍କ ପାଇଁ ପଶ୍ଚିମବଙ୍ଗ ମାଧ୍ୟମିକ ଶିକ୍ଷା ବୋର୍ଡ଼ଦ୍ୱାରା ପ୍ରଣୀତ ଓ ଅନୁମୋଦିତ ବଙ୍ଗଳା ପାଠ୍ୟପୁସ୍ତକଗୁଡ଼ିକର ଓଡ଼ିଆ ଅନୁବାଦ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇଛି । ପ୍ରଥମ ପର୍ଯ୍ୟାୟରେ ବୋର୍ଡ଼ ଓ ପ୍ରାନ୍ତିକ ପବ୍ଲିକେଶନ ତରଫରୁ ଆବଶ୍ୟକୀୟ ଅନୁମତି ନେଇ ସପ୍ତମ ଓ ଅଷ୍ଟମ ଶ୍ରେଣୀର ୧୦ଟି ପାଠ୍ୟପୁସ୍ତକର ଓଡ଼ିଆ ଅନୁବାଦ କାର୍ଯ୍ୟ ଶେଷ ହୋଇ ବିଭିନ୍ନ ପୁସ୍ତକ ଭାଷା ପ୍ରତିଷ୍ଠାନର ପ୍ରଚେଷ୍ଟା ଓ ଓପେପାର ଆର୍ଥିକ ସହାୟତାକ୍ରମେ ମୁଦ୍ରଣ କାର୍ଯ୍ୟ ଶେଷ ହୋଇଛି । ଏଗୁଡ଼ିକ ଖୁବ୍ ଶୀଘ୍ର ଛାତ୍ରଛାତ୍ରୀମାନଙ୍କୁ ବିନାମୂଲ୍ୟରେ ବଣ୍ଟନ କରାଯିବା ନିମନ୍ତେ ବ୍ୟବସ୍ଥା ଗ୍ରହଣ କରାଯିବ ।

ଚଳିତ ଆର୍ଥିକ ବର୍ଷରେ ନବମ ଓ ଦଶମ ଶ୍ରେଣୀ ଛାତ୍ରଛାତ୍ରୀମାନଙ୍କ ପାଇଁ ବଙ୍ଗଳା ପାଠ୍ୟପୁସ୍ତକର ଓଡ଼ିଆ ଅନୁବାଦ କାର୍ଯ୍ୟ ହାତକୁ ନେଇ ପୁସ୍ତକ ଯୋଗାଇବାପାଇଁ ଲକ୍ଷ୍ୟ ରଖାଯାଇଛି ।

**ଗ) ରାଜ୍ୟ ସରକାରଙ୍କଦ୍ୱାରା ୩୫୦୦ ସରକାରୀ ଉଚ୍ଚ ବିଦ୍ୟାଳୟର ପାଠାଗାରଗୁଡ଼ିକୁ ଶିକ୍ଷଣୀୟ ଓଡ଼ିଆ ପୁସ୍ତକ ଯୋଗାଣ ସମ୍ପର୍କରେ**

ଓଡ଼ିଶା ରାଜ୍ୟ ସରକାର ସରକାରୀ ଉଚ୍ଚ ବିଦ୍ୟାଳୟଗୁଡ଼ିକର ପାଠାଗାର ନିମନ୍ତେ ଆବଶ୍ୟକୀୟ ଶିକ୍ଷଣୀୟ ଓଡ଼ିଆ ପୁସ୍ତକ ଯୋଗାଇ ଦେବାପାଇଁ ଓଡ଼ିଆ ଭାଷା ପ୍ରତିଷ୍ଠାନକୁ କାର୍ଯ୍ୟଭାର ପ୍ରଦାନ କରି ମୋଟ ୧ କୋଟି ୪୦ ଲକ୍ଷ ଟଙ୍କା ଯୋଗାଇ ଦେଇଥିଲେ । ପ୍ରତିଷ୍ଠାନ ତରଫରୁ ଟେଣ୍ଡର ମାଧ୍ୟମରେ ଲେଖକ ଓ ବିଭିନ୍ନ ପ୍ରକାଶନ ସଂସ୍ଥାମାନଙ୍କଠାରୁ ପୁସ୍ତକ ଆହ୍ୱାନ କରାଯାଇଥିଲା । ସରକାରଙ୍କଦ୍ୱାରା ମନୋନୀତ ସଦସ୍ୟମାନଙ୍କୁ ନେଇ ପୁସ୍ତକ ଚୟନ କମିଟି ଗଠନ କରାଯାଇ ପୁସ୍ତକ ଚୟନ କରାଯାଇଥିଲା । ମାତ୍ର ମନୋନୀତ ପୁସ୍ତକ ତାଲିକା ଉପରେ ଅସନ୍ତୋଷ ପ୍ରକାଶ କରି ବିଭିନ୍ନ ବ୍ୟକ୍ତିବିଶେଷ / ପ୍ରକାଶନ ସଂସ୍ଥା ମାନ୍ୟବର ମୁଖ୍ୟମନ୍ତ୍ରୀ, ମାନ୍ୟବର ଗଣଶିକ୍ଷା ମନ୍ତ୍ରୀ, ମୁଖ୍ୟ ଶାସନ ସଚିବ ଏବଂ ପ୍ରମୁଖ ଶାସନ ସଚିବ, ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗଙ୍କୁ ଆବେଦନ କରିଥିଲେ । ସେ ସଂକ୍ରାନ୍ତରେ ମାନ୍ୟବର ଉଚ୍ଚ ନ୍ୟାୟାଳୟରେ ମଧ୍ୟ ବିଭିନ୍ନ ସମୟରେ ମୋକଦ୍ଦମା ରୁଜୁ କରାଯାଇଥିଲା । ମାନ୍ୟବର ଉଚ୍ଚ ନ୍ୟାୟାଳୟ (ଡବ୍ଲୁପିସି ନଂ-୧୭୨୧/୨୦୦୯, ତା.୬.୦୪.୦୯), ସଙ୍ଗତିକରଣ କମିଟି ମାଧ୍ୟମରେ ପୁସ୍ତକ ତାଲିକାର ପୁନଃ ଯାଞ୍ଚ ପାଇଁ ଆଦେଶ ଦେଇଥିଲେ । ନିର୍ବାଚିତ ପୁସ୍ତକ ତାଲିକା ସରକାରଙ୍କଦ୍ୱାରା ଅନୁମୋଦିତ ହେବାପରେ ପୁସ୍ତକ କ୍ରୟ ଓ ବଣ୍ଟନ ନିମନ୍ତେ ପଦକ୍ଷେପ ନିଆଯିବ ।

**ଘ) ଓଡ଼ିଆ ଭାଷା ପ୍ରତିଷ୍ଠାନର ନିଜସ୍ୱ ପାଠାଗାର**

ଓଡ଼ିଆ ଭାଷା ପ୍ରତିଷ୍ଠାନର ଏକ ନିଜସ୍ୱ ଗବେଷଣାତ୍ମକ ପାଠାଗାର ଅଛି । ଏହାକୁ ବିଶିଷ୍ଟ ଭାଷାବିତ୍ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ନାମରେ ନାମିତ କରିବାର ପ୍ରସ୍ତାବ ରହିଛି । ଏହି ପାଠାଗାରରେ ମୋଟ ୩୨୭୧ ସଂଖ୍ୟାରେ ବହି ରହିଛି । ଆଗାମୀ ବର୍ଷମାନଙ୍କରେ ଅଧିକ ସଂଖ୍ୟାରେ ଭାଷା ଓ ସାହିତ୍ୟ ସମ୍ପର୍କିତ ପୁସ୍ତକ ଓ ଦୁଷ୍ପ୍ରାପ୍ୟ ପତ୍ରପତ୍ରିକା ସଂଗ୍ରହ କରାଯାଇ ଏହାକୁ ଏକ ଗବେଷଣା ଉପଯୋଗୀ ପାଠାଗାରରେ ପରିଣତ କରିବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ।

ନିର୍ଦ୍ଦେଶକ
ଓଡ଼ିଆ ଭାଷା ପ୍ରତିଷ୍ଠାନ, ଭୁବନେଶ୍ୱର

- - - -

অতীত পৃষ্ঠারୁ :

# ଓଡ଼ିଶାରେ ଶିଳ୍ପ ପ୍ରସାର

ଡଃ ହରିବନ୍ଧୁ ମହାନ୍ତି

**ଓ**ଡ଼ିଶା ଗୋଟିଏ କୃଷି ପ୍ରଧାନ ପ୍ରଦେଶ । ଏଠାରେ ସେପରି କିଛି ବଡ଼ ଧରଣର କଳ-କାରଖାନା ନାହିଁ । ତେଣୁ ଶିଳ୍ପ କ୍ଷେତ୍ରରେ ଓଡ଼ିଶା ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ବହୁତ ପଛରେ ପଡ଼ିଛି । ଉପକରଣ ଅର୍ଥାତ୍ ଉପଯୁକ୍ତ କଞ୍ଚାମାଲ ଅଭାବରୁ ଯେ ଓଡ଼ିଶାରେ ଶିଳ୍ପ ପ୍ରସାର ଲାଭ କରି ନାହିଁ, ତାହା ନୁହେଁ, କାରଣ ଓଡ଼ିଶାରେ ଭିନ୍ନ ଭିନ୍ନ ଶିଳ୍ପ ପାଇଁ କଞ୍ଚାମାଲ ଯଥେଷ୍ଟ ପରିମାଣରେ ରହିଛି । ତେବେ ଏ ଅବାଞ୍ଛନୀୟ ପରିସ୍ଥିତିର କାରଣ କ'ଣ ?

ପ୍ରଥମେ ଶିଳ୍ପବିକାଶ ପାଇଁ କ'ଣ କ'ଣ ଦରକାର, ତାହା ବିଚାର କରାଯାଉ । ଶିଳ୍ପ ପାଇଁ ଲୋଡ଼ା, ସର୍ବପ୍ରଥମେ ଉପଯୁକ୍ତ କଞ୍ଚାମାଲପତ୍ର ନବା-ଆଣିବାର ସୁବିଧା, କୋଇଲା, ବିଦ୍ୟୁତ୍‌ଶକ୍ତି, ଦକ୍ଷ କାରିଗର, ଶ୍ରମିକ ଓ ବିଶେଷଜ୍ଞ, ଯନ୍ତ୍ରପାତି ଓ ସର୍ବଶେଷରେ ଖଟାଇବା ପାଇଁ ପାଣି ଓ ମୂଳଧନ । ଓଡ଼ିଶା ସେପରି ଧନୀ ପ୍ରଦେଶ ନୁହେଁ, ତେଣୁ ଏଠି ମୂଳଧନର ଅଭାବ । କିନ୍ତୁ ସେ ଅଭାବକୁ କେତେକାଂଶରେ ପରିପୂରଣ କରିବା ପାଇଁ ଓଡ଼ିଶାରେ ପ୍ରଚୁର କଞ୍ଚାମାଲ ରହିଛି । କଞ୍ଚାମାଲ ସାଧାରଣତଃ ଖଣିଜ, ବନ୍ୟ ଓ କୃଷିଜାତ ଦ୍ରବ୍ୟ - ଏହି ତିନି ପ୍ରକାରର ହୋଇଥାଏ । ଏ ତିନିପ୍ରକାର ମାଲଛଡ଼ା ଓଡ଼ିଶାରେ ଆଉ ଗୋଟିଏ କଞ୍ଚାମାଲ ଅସରନ୍ତି ଭଣ୍ଡାର ରହିଛି । ସେ ହେଉଛି ତାର ୨୫୦ ମାଇଲ ଲମ୍ୱା ଉପକୂଳ ଓ ସମୁଦ୍ର । ସମୁଦ୍ରର ଲୁଣ ଓ ମାଛକୁ ଭିତ୍ତି କରି ଓଡ଼ିଶା ଉପକୂଳରେ ନୌଚଳାଚଳ ଓ ବନ୍ଦରର ବ୍ୟବସ୍ଥା କରିବା ଛଡ଼ା ବି ଅନେକ ଶିଳ୍ପ ପ୍ରତିଷ୍ଠା କରାଯାଇପାରେ । ଏ ବିଭିନ୍ନ ଜାତୀୟ ପ୍ରାକୃତିକ ଶିଳ୍ପ-ସମ୍ପଦ ସମ୍ବନ୍ଧରେ ବର୍ତ୍ତମାନ ଗୋଟି ଗୋଟି କରି ଆଲୋଚନା କରାଯାଉ ।

ମୋଗଲବନ୍ଦୀ ଓ ଗଡ଼ଜାତଗୁଡ଼ିକର ମିଶ୍ରଣ ଫଳରେ ଓଡ଼ିଶାର ପ୍ରାକୃତିକ ଶିଳ୍ପ-ସଂପଦ ବର୍ତ୍ତମାନ ବହୁ ପରିମାଣରେ ବୃଦ୍ଧି ପାଇଛି । ଆଧୁନିକ ସଭ୍ୟତା ଲୌହ ଓ ଇସ୍ପାତ ଶିଳ୍ପ ଉପରେ ପ୍ରତିଷ୍ଠିତ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଭାରତର ସବୁଠାରୁ ବଡ଼ ଲୁହା କାରଖାନା ବର୍ତ୍ତମାନ ଓଡ଼ିଶାର ଠିକ୍ ସୀମାର ବାହାରେ ଅବସ୍ଥିତ । ଏହି କାରଖାନା ପାଇଁ ଲୁହା ମାଟି, ମାଙ୍ଗାନିଜ, କ୍ରୋମାଇଟ୍, ଚୂନପଥର, ଫାୟାର କ୍ଲେ ପ୍ରଭୃତି ଅତି ଆବଶ୍ୟକ କଞ୍ଚାମାଲଗୁଡ଼ିକ ଓଡ଼ିଶାର ମୟୂରଭଞ୍ଜ, କେନ୍ଦୁଝର ପ୍ରଭୃତି ଅଞ୍ଚଳରୁ ସରବରାହ କରାଯାଏ । ଭାରତରେ ବର୍ଷକୁ ସର୍ବମୋଟ ପ୍ରାୟ ୧୨ ଲକ୍ଷ ଟନ୍ ଲୁହା ଉତ୍ପାଦନ କରାଯାଇପାରେ । କିନ୍ତୁ ନାନା କାରଣରୁ ଆଜିକାଲି ପ୍ରକୃତ ଉତ୍ପାଦନ ପରିମାଣ ୮/୯ ଲକ୍ଷ ଟନ୍‌ରୁ ବେଶୀ ନୁହେଁ । ଏହା ତୁଳନାରେ ଆମେରିକାର କେବଳ ଯୁକ୍ତରାଷ୍ଟ୍ରରେ ବର୍ଷକୁ ପ୍ରାୟ ୯ କୋଟି ଅର୍ଥାତ୍ ଆମର ଶହେ ଗୁଣ ଲୁହା ତିଆରି ହୁଏ । ଆମରି ଆଡ଼େ ଲୁହା ଉତ୍ପାଦନ ପରିମାଣ କମିଗଲା ବେଳକୁ ତେଣେ ଦେଶରେ ଚାହିଦା ହୁ' ହୁ' ହୋଇ ବଢ଼ି ଚାଲିଛି । ତେଣୁ ବହୁତ ବେଶୀ ଦାମ ଦେଇ ବର୍ତ୍ତମାନ ବିଦେଶରୁ ଅତି ଆବଶ୍ୟକ ଲୁହା ଓ ଇସ୍ପାତ କିଣିବାକୁ ପଡୁଛି । ହିସାବ କରି ଦେଖାଯାଉଛି ଯେ, ଆମ ଦେଶରେ ବର୍ଷକୁ ପ୍ରାୟ ୩୦/୪୦ ଲକ୍ଷ ଟନ୍ ଲୁହା ଦରକାର । ତେଣୁ ଦେଶରେ ଲୁହା କାରଖାନା ବସାଇବା ବଡ଼ ଜରୁରୀ ହୋଇ ପଡ଼ିଛି । ଏଥିପାଇଁ ଭାରତ ସରକାର ବିଦେଶରୁ ତିନି ଦଳ ବିଶେଷଜ୍ଞ ଅଣାଇ, ଏ ବିଷୟ ପୁଙ୍ଖାନୁପୁଙ୍ଖ ଭାବରେ ଅନୁସନ୍ଧାନ କରାଇ ସେମାନଙ୍କର ଅଭିମତ ନେଇଛନ୍ତି । ଏହି ବିଶେଷଜ୍ଞମାନେ ଯେତେ ଶୀଘ୍ର ସମ୍ଭବ, ଭାରତବର୍ଷରେ ବର୍ଷକୁ ୧୦ ଲକ୍ଷ ଟନ୍ ଲୁହା ଉତ୍ପାଦନ କଲା ଭଳି ଦୁଇଟି କାରଖାନା ବସାଇବା ପାଇଁ ପରାମର୍ଶ ଦେଇଛନ୍ତି । ଏଥିପାଇଁ ମଧ୍ୟପ୍ରଦେଶର ଦୁର୍ଗତ ଓ ଓଡ଼ିଶାର ବଣାଇ ଅଞ୍ଚଳ ସବୁଠାରୁ ଉତ୍କୃଷ୍ଟ ସ୍ଥାନ ବୋଲି ବିବେଚିତ ହୋଇଅଛି । ଓଡ଼ିଶାର ବଣାଇ ଓ କେନ୍ଦୁଝର ସରହଦରେ ଉତ୍କୃଷ୍ଟ ଧରଣର ଲୁହାମାଟି ଯେତେ ଅଛି ବୋଲି ଭୂତତ୍ତ୍ୱ ବିଭାଗ ହିସାବ ଦେଖାଇ ଅଛନ୍ତି, ଭାରତବର୍ଷରେ ଅନ୍ୟ-କେଉଁଠି ଏତେ ବେଶୀ ଲୁହା ମାଟି ନାହିଁ । ଏହାର ଆନୁମାନିକ ପରିମାଣ ମୋଟରେ ପ୍ରାୟ ୧୭୦ କୋଟି ଟନ୍, ଅର୍ଥାତ୍ ବର୍ଷକୁ ୧୦ ଲକ୍ଷ ଟନ୍ କରି ବ୍ୟବହାର କଲେ ବି ଏହାକୁ ଦେଢ଼ ହଜାର ବର୍ଷରେ ବି ଶେଷ କରି

ହେବ ନାହିଁ । ବାସ୍ତବରେ ଏହା ଏକ ଅସରନ୍ତି ସମ୍ପଦ । ଆଜିକାଲି ବର୍ଷକୁ ୧୦ ଲକ୍ଷ ଟନ୍ ଲୁହା ତିଆରି କଲା ଭଳି ଗୋଟିଏ କାରଖାନା ବସାଇବାକୁ ପ୍ରାୟ ୭୦/୮୦ କୋଟି ଟଙ୍କା ଲାଗିବ । ବର୍ତ୍ତମାନ ଦେଶ କଠିନ ଅର୍ଥନୈତିକ ଦୁର୍ଗତିର ସମ୍ମୁଖୀନ ହୋଇଛି । ତେଣୁ ଲୁହା କାରଖାନା ବସାଇବା ପାଇଁ ବର୍ତ୍ତମାନ ୭୦/୮୦ କୋଟି ଟଙ୍କା ଆସିବ କୁଆଡୁ ? ଏପରି ଅବସ୍ଥାରେ ବାଧ ହୋଇ ଅପେକ୍ଷା କରିବା ଛଡ଼ା ଅନ୍ୟ ଉପାୟ ନାହିଁ । କିନ୍ତୁ ଏପରି ଖାଲି ଅନାଇ ବସି ରହିଲେ ତ ଆମର ଆର୍ଥିକ ଅବସ୍ଥା ଆପେ ଆପେ ସୁଧୁରି ଯିବ ନାହିଁ । ଏଥିପାଇଁ ଆମ୍ଭମାନଙ୍କୁ ନିର୍ଦ୍ଦିଷ୍ଟ କାର୍ଯ୍ୟପନ୍ଥା ସ୍ଥିର କରି ଶୀଘ୍ର ତଦନୁଯାୟୀ କାର୍ଯ୍ୟ କରିବାକୁ ହେବ । ଦେଶରେ ବିଭିନ୍ନ ଶିଳ୍ପ ବିକାଶ ଫଳରେ ଉତ୍ପାଦନ ବୃଦ୍ଧି ନ ପାଇଲେ ଦେଶର ଅର୍ଥନୈତିକ ଅବସ୍ଥାରେ ସହଜରେ ପରିବର୍ତ୍ତନ ଆସିବ ନାହିଁ । ବିଶେଷଜ୍ଞମାନଙ୍କ ମତରେ ଲୌହ ଶିଳ୍ପ ପ୍ରତିଷ୍ଠା ପାଇଁ ଓଡ଼ିଶା ଗୋଟିଏ ଉତ୍କୃଷ୍ଟ ସ୍ଥାନ ବିବେଚିତ ହୋଇଥିବାରୁ, ଓଡ଼ିଶାରେ ସର୍ବପ୍ରଥମେ ଗୋଟିଏ ଲୁହା କାରଖାନା ବସାଇବା ପାଇଁ ସବୁପ୍ରକାର ଉଦ୍ୟମ ହେବା ଉଚିତ । ଓଡ଼ିଶାରେ ଲୁହା କାରଖାନାଟିଏ ହେଲେ ତା' ସଙ୍ଗେ ଅନ୍ୟାନ୍ୟ ଅନେକ ପ୍ରକାର କଳ-କାରଖାନା ଆପେ ଆପେ ଗଢ଼ି ଉଠିବ ।

ଲୁହା ସହିତ ଭାନାଡିୟମ ନାମକ ଦୁଷ୍ପ୍ରାପ୍ୟ ଧାତୁଘଟିତ ପଥର ମୟୂରଭଞ୍ଜରେ ବହୁ ପରିମାଣରେ ଥିବାର ଜଣାଯାଇଅଛି । ସେଥିରୁ ଭାନାଡ଼ିୟମ୍ ଧାତୁ ନିଷ୍କାସନ ଓ ଫେରୋ-ଭାନାଡ଼ିୟମ ନାମକ ଧାତବ ମିଶ୍ରଣ ତିଆରି କରିବା ପାଇଁ ଗୋଟିଏ କମ୍ପାନୀ ଗଠିତ ହୋଇ କାର୍ଯ୍ୟ ଆରମ୍ଭ କରିଛି । କେନ୍ଦୁଝର, ବଣାଇ, ପାଟନା ଓ ରାୟଗଡ଼ା ପ୍ରଭୃତି ସ୍ଥାନରେ ଲୌହ ଓ ଇସ୍ପାତ ଶିଳ୍ପ ଓ ଅନ୍ୟାନ୍ୟ ଶିଳ୍ପ ପାଇଁ ଅତୀବ ଆବଶ୍ୟକୀୟ ମାଙ୍ଗାନିଜ ମଧ୍ୟ ପ୍ରଚୁର ପରିମାଣରେ ରହିଛି । ବର୍ତ୍ତମାନ ମାଙ୍ଗାନିଜ୍ କେବଳ କଞ୍ଚାମାଲ ରୂପେ ବିଦେଶକୁ ରପ୍ତାନୀ କରାଯାଉଛି । ଶସ୍ତାରେ ବୈଦ୍ୟୁତିକ ଶକ୍ତି ମିଳିଲେ, ତାହା ସାହାଯ୍ୟରେ ଏହି ମାଙ୍ଗାନିଜ୍‌କୁ ଫେରୋ-ମାଙ୍ଗାନିଜ୍ ନାମକ ଧାତବ ମିଶ୍ରଣରେ ପରିଣତ କରି ବିଦେଶକୁ ରପ୍ତାନୀ କଲେ ଏହା ଦେଶ ପକ୍ଷରେ ବିଶେଷ ଲାଭଦାୟକ ହେବ ଓ ଆମର ମୁଦ୍ରା ଅଭାବ ଅନେକାଂଶରେ ଦୂରୀଭୂତ ହେବ । କଟକ ନିକଟରେ ଗୋଟିଏ ଇଂରେଜ ଲୁହା କମ୍ପାନୀର ସହଯୋଗରେ ବର୍ଷକୁ ୬୦୦/୭୦୦ ଟନ୍ ଅକଳଙ୍କି ଲୁହା ଓ ଅନ୍ୟାନ୍ୟ ପ୍ରକାର ଆଲୟଷ୍ଟିଲ୍ ତିଆରି କରିବା ପାଇଁ ଗୋଟିଏ କାରଖାନା ବସାଇବାର ଯୋଗାଡ଼ ଚାଲିଛି । ଏହାଛଡ଼ା କେନ୍ଦୁଝରରେ ଯେଉଁ ବହୁମୂଲ୍ୟ କ୍ରୋମାଇଟ୍ ଡିପୋଜିଟ୍ ରହିଛି, ତାକୁ ବର୍ତ୍ତମାନ କଞ୍ଚାମାଲ ରୂପେ ରପ୍ତାନୀ ନ କରି ବୈଦ୍ୟୁତିକ ଶକ୍ତି ସାହାଯ୍ୟରେ ଫେରୋକ୍ରୋମିୟମ୍ ଓ କ୍ରୋମିୟମ୍ ଷ୍ଟିଲ୍ ତିଆରି କରି ରପ୍ତାନୀ କଲେ ଦେଶ ପ୍ରଭୂତ ଲାଭବାନ୍ ହେବ । ଓଡ଼ିଶାରେ ଗାଙ୍ଗପୁର, ସମ୍ବଲପୁର ଓ କୋରାପୁଟ ଜିଲ୍ଲାରେ ଚୂନପଥର ପ୍ରଭୃତି ପରିମାଣରେ ଅଛି । ଲୁହାମାଟିକୁ ବିଶୋଧିତ କରି ତହିଁରୁ କଞ୍ଚା ଲୁହା ତିଆରି କରିବା ପାଇଁ ଚୂନପଥର ବିଶେଷ ପ୍ରୟୋଜନ । ବର୍ତ୍ତମାନ ଗାଙ୍ଗପୁରର ବିଶ୍ରା ଚୂନପଥର ଖଣିରୁ ପଥର ନେଇ କୌଣସି କୌଣସି ଲୁହା କାରଖାନାରେ ବ୍ୟବହାର କରାଯାଉଅଛି । ବଣାଇରେ ଲୁହା କାରଖାନା ବସିଲେ ଏ ଖଣି କାରଖାନାକୁ ଖୁବ୍ ପାଖ ହେବ ଓ ଓଡ଼ିଶାର ଖଣିଜ ସଂପଦ ଓଡ଼ିଶାର ଶିଳ୍ପ ବିକାଶ ପାଇଁ କାମରେ ଲାଗିବ । ଆଜିକାଲି ସିମେଣ୍ଟ ଗୋଟିଏ ବଡ଼ ଦରକାରୀ ପଦାର୍ଥ । ସିମେଣ୍ଟର ପ୍ରଧାନ ଉପାଦାନ ହେଉଛି ଚୂନପଥର । ତେଣୁ ସିମେଣ୍ଟ କାରଖାନା ବସାଇବା ପାଇଁ ଚୂନପଥର ଏକାନ୍ତ ପ୍ରୟୋଜନ । ସାଧାରଣତଃ ଚୂନପଥର ଖଣି ନିକଟରେ ହିଁ ସିମେଣ୍ଟ କାରଖାନା ବସାଯାଇଥାଏ । ହୀରାକୁଦ ବନ୍ଧ, ଓଡ଼ିଶାର ରାଜଧାନୀ, ମହାନଦୀରେ ପୋଲ ଓ ରାସ୍ତାଘାଟ ନିର୍ମାଣ ଓ ଅନ୍ୟାନ୍ୟ ଉନ୍ନତିକର ଯୋଜନାଗୁଡ଼ିକ ସହଜରେ ଯେପରି ସିମେଣ୍ଟ୍ ଯୋଗାଇ ଦେଇ ହେବ । ସେଥିପାଇଁ ରାଜଗାଙ୍ଗପୁର ନିକଟରେ ଗୋଟିଏ ବଡ଼ ସିମେଣ୍ଟ କାରଖାନା ବସାଇବାକୁ ସ୍ଥିର କରାଯାଇଛି ଓ ସେଥିପାଇଁ ବିଦେଶରେ ବରାଦ ଦିଆଯାଇଥିବା ଯନ୍ତ୍ରପାତି ମଧ୍ଯ ତିଆରି ହୋଇଗଲାଣି । ନିକଟରେ ଏ କାରଖାନାର କାମ ତିଆରି ଆରମ୍ଭ ହେବ । ଆଧୁନିକ ଯୁଗରେ ଲୁହା ଓ ଇସ୍ପାତ ତଳକୁ ଆଲୁମିନିୟମ୍ ଓ ଆଲୁମିନିୟମ୍ ମିଶ୍ରିତ ଧାତୁର ବ୍ୟବହାର ଖୁବ୍ ବଢ଼ି ଚାଲିଛି । ଭବିଷ୍ୟତରେ ଏ ଧାତୁର ବ୍ୟବହାର ଆହୁରି ଖୁବ୍ ବଢ଼ିବ ବୋଲି ଅନୁମାନ କରାଯାଉଛି । ବିଭିନ୍ନ ଧରଣର ବିଶେଷତଃ ପ୍ରକାଣ୍ଡକାୟ ବୋମାବର୍ଷୀ ବ୍ୟୋମଯାନ ତିଆରି କରିବା ପାଇଁ ଆଲୁମିନିୟମ୍ ଏକାନ୍ତ ପ୍ରୟୋଜନ । ରେଳଡବା, ମଟରଗାଡ଼ି, ଗୃହ ସରଞ୍ଜାମ ଓ ବାସନ-ପତ୍ର ତିଆରି କରିବା ପାଇଁ ଆଲୁମିନିୟମ୍ ଅଧିକରୁ ଅଧିକ ବ୍ୟବହୃତ ହେଉଅଛି । ଶସ୍ତାରେ ପ୍ରଚୁର ପରିମାଣରେ ବିଦ୍ୟୁତ୍‌ଶକ୍ତି ନ ମିଳିଲେ ଆଲୁମିନିୟମ୍ ତିଆରି କରାଯାଇ ପାରିବ ନାହିଁ । ହୀରାକୁଦ ଯୋଜନା କାର୍ଯ୍ୟକାରୀ ହେଲେ ହୀରାକୁଦ ନିକଟବର୍ତ୍ତୀ ଅଞ୍ଚଳ ଗୋଟିଏ ଆଲୁମିନିୟମ୍ କାରଖାନା ବସାଇବା ପାଇଁ ଉପଯୁକ୍ତ ସ୍ଥାନ ହେବ ବୋଲି ବିଶେଷଜ୍ଞମାନେ ମତ ଦେଇଛନ୍ତି । ଆମ ଦେଶରେ ତମ୍ବା ବଡ଼ ଅଭାବ । ଆଜିକାଲି ତମ୍ବା ପରିବର୍ତ୍ତରେ ବହୁକ୍ଷେତ୍ରରେ ବ୍ୟବହାର ପାଇଁ ନାନାପ୍ରକାର ଆଲୁମିନିୟମ-ମିଶ୍ରିତ-ଧାତୁ ଉଦ୍ଭାବିତ ହୋଇଥିବାରୁ ଭାରତବର୍ଷରେ ଯେତେ

ଶୀଘ୍ର ସମ୍ଭବ, ଆଲୁମିନିୟମ୍ ତିଆରି କରିବା ପାଇଁ ବ୍ୟବସ୍ଥା ହେବା ଉଚିତ ।

ଏ ତ ଗଲା ଖଣିଜ ସମ୍ପଦ କଥା । ଏହାଛଡ଼ା ବି ଓଡ଼ିଶାରେ ଶିଳ୍ପ ଉପଯୋଗୀ ନାନାପ୍ରକାର ବନ୍ୟ ସମ୍ପଦ ରହିଛି । ଓଡ଼ିଶା ଜଙ୍ଗଲରୁ ବହୁତ କାଠ ବାହାରକୁ ଚାଲାଣ ହେଉଛି । ଓଡ଼ିଶାରେ ଗୋଟିଏ ହେଲେ ବଡ଼ କାଠ କାରଖାନା ନାହିଁ । ଜଙ୍ଗଲର କାଠରୁ ଦିଆସିଲି, ଝୋଟକଳ, ତାକୁଡ଼ି, ପ୍ଲାଇଉଡ୍ ପ୍ରଭୃତି ତିଆରି କରିବା ପାଇଁ ଭିନ୍ନ ଭିନ୍ନ ସ୍ଥାନରେ କାରଖାନା ବସାଇବା ପାଇଁ ଓଡ଼ିଶାରେ ଯଥେଷ୍ଟସୁବିଧା ଅଛି । ଓଡ଼ିଶାରୁ ବାଉଁଶ ଯାଇ ଅନ୍ୟତ୍ର କାଗଜ କଳରେ ବ୍ୟବହୃତ ହେଉଅଛି । ଓଡ଼ିଶାରେ ଯେତେ ବାଉଁଶ ଜଙ୍ଗଲ ଅଛି, ସେଥିରେ ଅନ୍ତତଃ ୩/୪ଟା କାଗଜ କଳ ଚାଲିପାରିବ ।

ମୁଁ ପ୍ରଥମରୁ କହି ରଖିଛି ଯେ, ଓଡ଼ିଶା ଗୋଟିଏ କୃଷିପ୍ରଧାନ ପ୍ରଦେଶ । କୃଷି ଲୋକମାନଙ୍କର ଜୀବିକା ଉପାର୍ଜନର ପ୍ରଧାନ ଅବଲମ୍ବନ ହୋଇଥିବାରୁ କୃଷିଜାତ ଦ୍ରବ୍ୟକୁ ଭିତ୍ତି କରି ଓଡ଼ିଶାରେ ଶିଳ୍ପ ପ୍ରତିଷ୍ଠିତ ହେବା ଉଚିତ । ଧାନ ଓଡ଼ିଶାର ପ୍ରଧାନ ଉତ୍ପନ୍ନଦ୍ରବ୍ୟ ହୋଇଥିବାରୁ ଓଡ଼ିଶାରେ ବର୍ତ୍ତମାନ ଶତାଧିକ ଧାନକଳ ଚାଲୁଛି । ପ୍ରଦେଶରେ ନୂଆ ଧାନକଳ ବସାଇବା ନିଷେଧ କରାଯାଇ ନଥିଲେ ମନେହୁଏ, ଗତ କେତେବର୍ଷ ମଧ୍ୟରେ ଆହୁରି ଅନେକ ଧାନକଳ ବସି ସାରନ୍ତାଣି । ଅଧିକାଂଶ ଧାନକଳ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଥିବାରୁ ବର୍ତ୍ତମାନର ଖାଦ୍ୟ ଯୋଜନା ଅନୁଯାୟୀ ଚାଉଳ ରପ୍ତାନୀକୁ ସାହାଯ୍ୟ କରିବା ପାଇଁ ଗଡ଼ଜାତ ଅଞ୍ଚଳରେ ଏ ଜାତୀୟ ଶିଳ୍ପର ପ୍ରସାର ପାଇଁ କ୍ଷେତ୍ର ରହିଛି ବୋଲି ମନେହୁଏ । ଓଡ଼ିଶାରେ ଗୋଟିଏ ମାତ୍ର ଚିନିକଳ ଅଛି । ସେ ବି ସେପରି କିଛି ବଡ଼ କଳ ନୁହେଁ । ଓଡ଼ିଶାରେ ପ୍ରଚୁର ଆଖୁ ଚାଷ କରି ଅନ୍ତତଃ ୩/୪ଟା ଚିନିକଳ ବସାଇବା ଦରକାର । ଯେତେବେଳେ ଅନ୍ୟଆଡ଼େ ଚିନିକଳ ନ ଥିଲା, ୬୦/୭୦ ବର୍ଷ ତଳେ ଗଞ୍ଜାମର ଆସ୍କାଠାରେ ବେଶ୍ ଗୋଟିଏ ବଡ଼ ଚିନିକଳ ବସାଯାଇଥିଲା । କିନ୍ତୁ ବର୍ତ୍ତମାନ ତାହା ଅକାମୀ ହୋଇ ପଡ଼ିରହିଛି ଓ ଆସ୍କା ଅଞ୍ଚଳରେ ଆଖୁଚାଷ କ୍ରମେ ଲୋପ ପାଇ ଯାଉଛି । ସୁଖର କଥା, ସେଠାରେ ଗୋଟିଏ ନୂଆ କଳ ବସାଇବା ପାଇଁ ଉଦ୍ୟମ କରାଯାଉଛି । କୁଜଙ୍ଗ, ପାରଳାଖେମୁଣ୍ଡି, ଜେନାପୁର, ଭଦ୍ରଖ ପ୍ରଭୃତି ଅଞ୍ଚଳରେ ଆଖୁଚାଷ ବଢ଼ାଇ ଚିନିକଳ ବସାଇଲେ, ଲୋକେ ଆଖୁଚାଷ କରି ବିହାର ଓ ଯୁକ୍ତପ୍ରଦେଶର ଚାଷୀମାନଙ୍କ ପରି ବେଶ୍ ଲାଭବାନ୍ ହୁଅନ୍ତେ । ଆମ ପ୍ରଦେଶରେ ତେଲର ଯେପରି ଅଭାବ, ତୈଳବୀଜ ଓ ଚିନାବାଦାମ ଚାଷ ଖୁବ୍ ବେଶୀ ହେବା ଉଚିତ । ଗଞ୍ଜାମର ଛତ୍ରପୁରଠାରେ ତୈଳବିଶୋଧନ ଓ ବନସ୍ପତି ବା ଭେଜିଟେବୁଲ୍ ଘିଅ ତିଆରି ପାଇଁ ଏବେ ଗୋଟିଏ କାରଖାନା ବସାଯାଇଛି । କିନ୍ତୁ କଞ୍ଚାମାଲ ପାଇଁ ଏହାକୁ ଅନ୍ୟ ପ୍ରଦେଶର ମୁଖାପେକ୍ଷୀ ହେବାକୁ ପଡୁଛି । ପ୍ରଦେଶରେ ଚିନାବାଦାମ ଚାଷ ନ ବଢ଼ିଲେ, ପର ଉପରେ ନିର୍ଭର କରି ଏ କାରଖାନା ଏମିତି କେତେଦିନ ଚାଲିବ ? ଖାଦ୍ୟଶିଳ୍ପ କଥା ଛାଡ଼ି ଦେଲେ ମଧ୍ୟ ବସ୍ତ୍ର ଶିଳ୍ପ ସମ୍ବନ୍ଧରେ ଠିକ୍ ସେହି କଥା, ସରକାରୀ ଅର୍ଥ ଓ ସାହାଯ୍ୟ ଫଳରେ ପ୍ରଦେଶରେ ବର୍ତ୍ତମାନ ଗୋଟିଏ ବଡ଼ ଲୁଗାକଳ ଚାଲୁ ହେଲାଣି ଓ ଅନ୍ୟ ଦୁଇଟିର ନିର୍ମାଣକାର୍ଯ୍ୟ ଚାଲିଛି, କିନ୍ତୁ ଏ କଳକୁ ତୁଳା ଯୋଗାଇବାର ବ୍ୟବସ୍ଥା କାହିଁ ? ପ୍ରଦେଶ ବାହାର କଥା ଛାଡ଼, ଏ କଳକୁ ତୁଳା ଯୋଗାଇବା - ଏପରିକି ଭାରତ ବାହାରୁ ସୁଦୂର ପୂର୍ବ ଆଫ୍ରିକା ଓ ଦକ୍ଷିଣ ଆମେରିକାର ବ୍ରାଜିଲ୍‌ରୁ ତୁଳା ଆଣିବାକୁ ପଡ଼ୁଛି । ଅଥଚ ଏପରି ପରମୁଖାପେକ୍ଷୀ ନ ହୋଇ ପ୍ରଦେଶ ମଧ୍ୟରେ କପାଚାଷ କରି ବସ୍ତ୍ର ସମ୍ବନ୍ଧରେ ଓଡ଼ିଶା ଆତ୍ମନିର୍ଭରଶୀଳ ହେବାର ଯେ ସୁବିଧା ନାହିଁ, ତାହା ନୁହେଁ । ଅନ୍ୟ ଦିଗରେ ଦେଖିଲେ, ଓଡ଼ିଶାର ଉପକୂଳବର୍ତ୍ତୀ କେତେକ ଅଞ୍ଚଳରେ ବର୍ତ୍ତମାନ ଯଥେଷ୍ଟ ଝୋଟଚାଷ ହେଉଛି - ଯହିଁରେ କି ଏକାଧିକ ଝୋଟକଳ ଚାଲିପାରେ । ଝୋଟର ଚାହିଦା ବଢ଼ିଲେ, ଉତ୍ପାଦନର ପରିମାଣ ଯଥେଷ୍ଟ ବୃଦ୍ଧି ପାଇବାର ମଧ୍ୟ ସୁବିଧା ଅଛି । କିନ୍ତୁ ପ୍ରଦେଶରେ ଗୋଟିଏ ହେଲେ ଝୋଟକଳ ନାହିଁ । ଏବେ ଗୋଟିଏ ଝୋଟକଳ ବସାଇବା ପାଇଁ କେହି କେହି ଚେଷ୍ଟା କରୁଛନ୍ତି ।

ଏଥିରୁ ଜଣାଯିବ ଯେ, ଓଡ଼ିଶାରେ କଞ୍ଚାମାଲର ଅଭାବ ନାହିଁ । ଅଭାବ କେବଳ ମାଲ ନେବା ଆଣିବା ପାଇଁ ରାସ୍ତାଘାଟ, ନଈ ନାଳ ଓ ବନ୍ଦର ପ୍ରଭୃତି । ମାଲ ନେବା ଆଣିବାର ଉପଯୁକ୍ତ ବ୍ୟବସ୍ଥା ନ ହେଲେ, ଆମର ଏ ପ୍ରାକୃତିକ ସମ୍ପଦର ପୁରା ସଦ୍‌ବ୍ୟବହାର ହୋଇପାରିବ ନାହିଁ । ଶିଳ୍ପପ୍ରସାର ପାଇଁ ଓଡ଼ିଶାର ବର୍ତ୍ତମାନ ଅନ୍ୟ ଏକ ଅଭାବ ହେଉଛି, ଶସ୍ତା ବିଦ୍ୟୁତ୍‌ଶକ୍ତି । ଶସ୍ତାରେ ଓ ପ୍ରଚୁର ପରିମାଣରେ ବିଦ୍ୟୁତ୍‌ଶକ୍ତି ନ ମିଳିଲେ, ଆଜିକାଲି ଯୁଗରେ ଶିଳ୍ପବିକାଶ ଅସମ୍ଭବ । ଏ ପ୍ରଧାନ ଅସୁବିଧାକୁ ଦୂର କରିବା ପାଇଁ ଓଡ଼ିଶା ସରକାର ସବୁ ପ୍ରକାର ବ୍ୟବସ୍ଥା କରି ଅଛନ୍ତି । ହୀରାକୁଦ ଓ ମାଛକୁଣ୍ଡ ଯୋଜନା କାର୍ଯ୍ୟକାରୀ ହେଲେ ଓଡ଼ିଶାରେ ଶିଳ୍ପୋନ୍ନତି ପାଇଁ ଅପର୍ଯ୍ୟାପ୍ତ ବିଦ୍ୟୁତ୍‌ଶକ୍ତି ମିଳିବ । ଏହା ହୀରାକୁଦ ଖୁବ୍ ବଡ଼ ବଡ଼ ୮/୧୦ଟି କାରଖାନାକୁ ବିଜୁଳି ଯୋଗାଇ ପାରିବ । କିନ୍ତୁ ଏଥିପାଇଁ ଆମକୁ ଆହୁରି ୩/୪ ବର୍ଷ ଅପେକ୍ଷା କରିବାକୁ ପଡ଼ିବ । ଏସବୁ ବୈଦ୍ୟୁତିକ ଯୋଜନା କାର୍ଯ୍ୟକାରୀ ହେଲେ, ଓଡ଼ିଶାରେ ଶିଳ୍ପକାରଖାନା ଯେ ଖୁବ୍ ଶୀଘ୍ର ବିସ୍ତାର ଲାଭ କରିବ, ଏଥିରେ

ସନ୍ଦେହ ନାହିଁ । କିନ୍ତୁ ଏ ସବୁଥିରୁ ପୁରା ଫାଇଦା ଉଠାଇବା ପାଇଁ ଓଡ଼ିଶା ଲୋକଙ୍କ ମନ କ୍ରମେ ଶିଳ୍ପ ଆଡ଼କୁ ଆକୃଷ୍ଟ ହେବା ଉଚିତ । ଓଡ଼ିଶାର ଧନ ଥିବା ଲୋକେ କଳ-କାରଖାନାରେ ଧନ ଖଟାଇବାରେ ସମ୍ପୂର୍ଣ୍ଣ ଅନଭ୍ୟସ୍ତ, କିନ୍ତୁ ସାଧାରଣ ଓଡ଼ିଆ, କାରିଗର ଓ ମୂଲିଆ ହିସାବରେ ବାହାର କଳକାରଖାନାରେ ଖଟି ଯେଉଁ ଅଭିଜ୍ଞତା ଅର୍ଜନ କରିଛି, ତାହା ପ୍ରଦେଶର ଶିଳ୍ପ-ବିକାଶରେ ବିଶେଷ ସାହଯ୍ୟ କରିବ । ଓଡ଼ିଶାରେ ଅଭାବ ପଡ଼ିବ - ବିଭିନ୍ନ ଶିଳ୍ପରେ ବିଶେଷଜ୍ଞ, ଇଞ୍ଜିନିୟର ଓ କଳକାରଖାନା ପରିଚାଳକମାନଙ୍କର, ଏ ଅଭାବ ପୂରଣ କରିବା ପାଇଁ ଓଡ଼ିଶା ସରକାର ବୃତ୍ତି ଦେଇ ଦେଶ-ବିଦେଶକୁ ଶହ ଶହ ଯୋଗ୍ୟ ଓଡ଼ିଆ ଛାତ୍ରଙ୍କୁ ଉଚ୍ଚଶିକ୍ଷା ପାଇଁ ପଠାଇଅଛନ୍ତି । ସେମାନେ ଫେରିଲେ, ଓଡ଼ିଶାର ଉପଯୁକ୍ତ ଲୋକର ଅଭାବ ରହିବ ନାହିଁ ।

ଏ ସବୁରୁ ଜଣାଯିବ ଯେ, ପ୍ରଦେଶରେ ଶିଳ୍ପକୁ ଉତ୍ସାହିତ କରିବା ପାଇଁ ପ୍ରାଦେଶିକ ସରକାର କିପରି ସବୁ ପ୍ରକାର ବ୍ୟବସ୍ଥା କରିବାରେ ଲାଗି ପଡ଼ିଛନ୍ତି । ଏ ଦିଗରେ ସଫଳ ହେବାକୁ ବହୁ ଶ୍ରମ, ଚେଷ୍ଟା ଓ ସମୟ ଦରକାର । ଏ ସବୁଥିରୁ ପୁରାପୁରି ଲାଭ ଉଠାଇବାକୁ ପ୍ରଦେଶର ଲୋକେ ମଧ୍ୟ ଯତ୍ନବାନ୍ ହେବା ଉଚିତ୍ ଓ ଅଣ୍ଟାଭିଡ଼ି ଆଗଭର ହୋଇ ବାହାରିବା ଉଚିତ୍ ।

ସୌଜନ୍ୟ : ଉତ୍କଳ ପ୍ରସଙ୍ଗ, ଅପ୍ରେଲ ୩୦ ଓ ମଇ ୧୫, ୧୯୫୦, (ପୃଷ୍ଠା-୫୫), ସୂଚନା ଓ ଲୋକ ସଂପର୍କ ବିଭାଗ



ପୁରୀ ଜିଲ୍ଲାସ୍ତରୀୟ ୬୩ତମ ସ୍ୱାଧୀନତା ଦିବସ ଉତ୍ସବରେ ମୁଖ୍ୟ ଅତିଥିଭାବେ ଯୋଗଦେବାକୁ ଆସୁଥିବା ଅର୍ଥ ଓ ଅବକାରୀ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇଙ୍କୁ ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ ଶ୍ରୀ ଦାମୋଦର ପାଢ଼ୀ ପ୍ୟାରେଡ୍ ସ୍ଥଳକୁ ପାଛୋଟି ନେଉଛନ୍ତି ।




ପୁରୀ ଶରଧାବାଲିଠାରେ ଅନୁଷ୍ଠିତ ପ୍ୟାରେଡ୍ ଉତ୍ସବରେ ମନ୍ତ୍ରୀ ଶ୍ରୀ ଘଡ଼ାଇ ପ୍ୟାରେଡ୍ ପରିଦର୍ଶନ କରୁଛନ୍ତି ।

# ଓଡ଼ିଶାରେ ଉପକୂଳ ଅବକ୍ଷୟ ସମସ୍ୟା

କ୍ଷୀରୋଦ ପ୍ରସାଦ ମହାନ୍ତି

ସମୁଦ୍ର କୂଳରେ ସୁନ୍ଦର ଘରଟିଏ କରି ସେଠାରେ ବସବାସ କରିବା ଓ ତାହାର ଫେନିଳ ଲହରୀମାଳାକୁ ଦେଖି ଆତ୍ମ ବିଭୋର ହେବା - ଏପରି ଭାବନା ଏବେ ମନୁଷ୍ୟ ମନରୁ ଧୀରେ ଧୀରେ ଅପସରି ଯିବାକୁ ଲାଗିଲାଣି । ସମୁଦ୍ର ଏବେ ଯେଉଁଭଳି ଭାବେ କୂଳ ଲଙ୍ଘନ କରୁଛି ଓ ତଟ ଅବକ୍ଷୟ କରୁଛି ସେଥିରେ ସମୁଦ୍ର ବେଳାଭୂମି ଆଉ ନିରାପଦ ନୁହେଁ ବୋଲି ସମୁଦ୍ରକୂଳବାସୀମାନେ ହୃଦୟଙ୍ଗମ କଲେଣି । ଏ ସମସ୍ୟା ଯେ କେବଳ ଓଡ଼ିଶାରେ ଦେଖା ଦେଇଛି, ତାହା ନୁହେଁ ଭାରତର ଅନ୍ୟ ଉପକୂଳବର୍ତ୍ତୀ ରାଜ୍ୟମାନଙ୍କୁ ସଂକ୍ରମିତ କରିଛି । ଗତ ଜୁଲାଇ ୨୨ ତାରିଖ ୨୦୦୯ ଦିନ ଆରବ ସାଗରରୁ ଉଚ୍ଚ ଜୁଆର ଆସି ମୁମ୍ବାଇ ମହାନଗରୀର ତଟଦେଶରେ ଥିବା ବସ୍ତି ଅଞ୍ଚଳରେ ଅନେକ କ୍ଷୟକ୍ଷତି କରିଛି । ଏହି ସମୟରେ ସମୁଦ୍ର ଜୁଆରର ଉଚ୍ଚତା ଯଥାକ୍ରମେ ୨୨ ତାରିଖ ବୁଧବାରରେ ୪.୮୫ ମିଟର, ୨୩ ତାରିଖ ଗୁରୁବାରରେ ୫.୧ ମିଟର ଓ ୨୪ ତାରିଖ ଶୁକ୍ରବାରରେ ୧୦୦ ବର୍ଷର ଉଚ୍ଚତମ ରେକର୍ଡ଼ ୫.୫ ମିଟର ଥିଲା । ବହୁସ୍ଥାନରେ ଜୁଆର, ତଟବର୍ତ୍ତୀ ଅଞ୍ଚଳରେ ଥିବା ସୁରକ୍ଷା ପ୍ରାଚୀରମାନଙ୍କୁ ଡେଇଁ ଥିଲେ ହେଁ ପୂର୍ବରୁ ସତର୍କ ଥିବା ଲୋକଙ୍କର ଜୀବନ ନଷ୍ଟ କରି ପାରିଲା ନାହିଁ ।(୧)

ବିଗତ ୯ ବର୍ଷ ମଧ୍ୟରେ ଅର୍ଥାତ୍ ୨୦୦୦ ମସିହାଠାରୁ ୨୦୦୯ ମସିହା ମଧ୍ୟରେ ସେପରି ଉଚ୍ଚତମ ସମୁଦ୍ର ଲହଡ଼ି ୫୨୯ କିଲୋମିଟର ଦୈର୍ଘ୍ୟବିଶିଷ୍ଟ ଓଡ଼ିଶାର ଉପକୂଳକୁ(୨) ଲଙ୍ଘନ କରି ପ୍ରଭୂତ କ୍ଷୟକ୍ଷତି କରିବାର ସୂଚନା ନଥିଲେ ମଧ୍ୟ ୧୯୯୯ ମସିହା ମହାବାତ୍ୟାରେ ସମୁଦ୍ରର କରାଳ ରୂପକୁ ଉପକୂଳବାସୀମାନେ ଏ ପର୍ଯ୍ୟନ୍ତ ଭୁଲି ପାରିନାହାନ୍ତି । ସେ ସମୟରେ ସମୁଦ୍ର ପାଣିରେ ୧୦ ହଜାରରୁ ଅଧିକ(୩) ଲୋକଙ୍କର ପ୍ରାଣହାନି ଘଟିଥିଲା । ୩୦୦ କି.ମି. ବେଗରେ ଗତି କରୁଥିବା ସେହି ବାତ୍ୟା ୩୬ ଘଣ୍ଟାରୁ ଅଧିକ ସମୟ ପ୍ରବାହିତ ହୋଇଥିଲା ଓ ସମୁଦ୍ର ଜୁଆର ୧୫ରୁ ୨୫ ଫୁଟ ଉଚ୍ଚରେ ୧୦ରୁ ୧୫ କି.ମି. ଯାଏଁ ସ୍ଥଳଭାଗକୁ ମାଡ଼ି ଆସିଥିଲା ।(୪)

ଏବେ ସମୁଦ୍ର ଅନ୍ୟ ଅଞ୍ଚଳ ପରି ପାରାଦୀପ ଉପକୂଳରେ କୂଳ ଲଙ୍ଘିବା ଆରମ୍ଭ କରି ଦେଇଛି । ଗତ ୧୯ ଜୁଲାଇ ୨୦୦୯ ତାରିଖରେ ବଙ୍ଗୋପସାଗରରେ ସୃଷ୍ଟି ହୋଇଥିବା ଲଘୁଚାପ ପ୍ରଭାବରେ ସମୁଦ୍ରଜଳ ସ୍ଥଳଭାଗରେ ଏକ କିଲୋମିଟର ପର୍ଯ୍ୟନ୍ତ ମାଡ଼ି ଆସିଥିଲା । ଏପରିକି ମହାନଦୀ ମୁହାଣ ମଧ୍ୟ ସମୁଦ୍ର କ୍ରୋଧର ଶିକାରରୁ ବାଦ୍ ପଡ଼ି ନଥିଲା । ସେହିପରି ଏରସମା ବ୍ଲକ୍‌ର ଶିଆଳୀ ଅଞ୍ଚଳ ମଧ୍ୟ ସମୁଦ୍ର ଜଳରେ ପ୍ଲାବିତ ହୋଇଥିଲା ।

ସମୁଦ୍ର ଜୁଆରରେ ହୋଇଥିବା କ୍ଷୟକ୍ଷତି ବିଷୟରେ ସୂଚନା ଦେଇ ପାରାଦୀପ ବନ୍ଦର ନିକଟସ୍ଥ ଉପକୂଳବର୍ତ୍ତୀ ଗ୍ରାମ ଷଣ୍ଢକୁଦର ଅଧିବାସୀ ଶ୍ରୀ ପ୍ରହଲାଦ ମାନା (୫୬) ନିଜ ସାକ୍ଷାତକାରରେ କହନ୍ତି - ମୋ ଘର ସମୁଦ୍ରଦ୍ୱାରା ନଷ୍ଟ ହୋଇଯିବା ପରେ ମୁଁ ଗତବର୍ଷ ଏକ ତିନି ପ୍ରକୋଷ୍ଠ ବିଶିଷ୍ଟ ଚାଳଛପର ଘର ନିର୍ମାଣ କରିଥିଲି, ଏହା ସମୁଦ୍ର କୂଳଠାରୁ ୧ କି.ମି. ଦୂରତାରେ ଥିଲା । ମୁଁ ଭାବୁଥିଲି ଏହି ଗୃହରେ ଆଉ ୫ ବର୍ଷ ରହିପାରିବି କିନ୍ତୁ ମୋର ଆଶା ଅଚିରେ ମଉଳି ଗଲା । ଗତ ଗୁରୁବାର, ତା.୧୬.୦୭.୦୯ରିଖ ଦିନ ସମୁଦ୍ର ଜୁଆର ମୋ' ଘର ସହ ଆଉ ୨୨ଟି ଘରକୁ ମଧ୍ୟ ଭସାଇ ନେଲା ।(୫)

ସମୁଦ୍ର ଜୁଆର ସ୍ଥଳଭାଗକୁ ମାଡ଼ି ଆସିବା ବ୍ୟତୀତ ଉପକୂଳ ଅବକ୍ଷୟ ସମସ୍ୟା ସମୁଦ୍ର କୂଳିଆ ଗାଁ ନନ୍ଦରା, କୁସୁନପୁର, ଶିଆଳୀ, ଓଲରା, ପଦ୍ମପୁର, ଗୋଡ଼ା, ହରିଶପୁର, ଡିଙ୍କିଆ, ଗୋବିନ୍ଦପୁର, ଗଡ଼କୁଜଙ୍ଗ, ତ୍ରିଲୋଚନପୁର, ମାହାଳ, ବାଲିଡିହ, ନୂଆଗଡ଼ ଗ୍ରାମର ଲୋକମାନଙ୍କୁ ବିଶେଷ ଭାବେ ବ୍ୟଥିତ କରିଛି । ସେଠାକାର ଲୋକେ ଉପକୂଳ ଅବକ୍ଷୟ ବିରୁଦ୍ଧରେ ଯୁଦ୍ଧ କରି ପରାଜିତ ନାୟକ ପରି ପଛଘୁଞ୍ଚା ଦେଉଥିବାବେଳେ ବିଶେଷକରି ଶିଆଳୀ, ବାଲିଡ଼ିହ ଓ ଓଲରାର ଲୋକେ ସେମାନଙ୍କ ଗାଁଗୁଡ଼ିକ କେତେ କମ୍ ଦିନରେ ସମୁଦ୍ର ଗର୍ଭରେ ଲୀନ ହୋଇଯିବ ତାହା ଗଣନା କରୁଛନ୍ତି । ଶିଆଳୀ ଓ ଓଲରା ଗାଁର ଲୋକଙ୍କ କହିବା ଅନୁସାରେ ଗତ ୧୦ ବର୍ଷ

ମଧ୍ୟରେ ସମୁଦ୍ର ସେଠାରେ ୨ କିଲୋମିଟର ବ୍ୟାପି ସ୍ଥଳଭାଗକୁ ଗ୍ରାସ କରିଅଛି । ଏବେ ବି ସମୁଦ୍ର ଏତେମାତ୍ରାରେ କୂଳ ଖାଇ ଚାଲିଛି ଯେ ଯଦି ସୁରକ୍ଷା ବ୍ୟବସ୍ଥା ନ ହେବ, ତେବେ ଆଉ ଦିନ କେତେଟା ଭିତରେ ଶିଆଳୀ ବେଳାଭୂମି ନଷ୍ଟ ହୋଇଯିବ । ପ୍ରକାଶିତ ତଥ୍ୟାନୁସାରେ ଶିଆଳୀଠାରେ ସମୁଦ୍ର କୂଳ ଖାଉଥିବା ସଂପର୍କରେ ଅନୁଧ୍ୟାନ ପାଇଁ କେନ୍ଦ୍ରୀୟ ଦଳ ବର୍ଷକ ତଳେ ସେଠାକୁ ଆସିଥିଲେ ଓ ସେଠାରେ ସମୁଦ୍ର ତଟର ପାଚେରୀ (ସି ୱାଲ) ନିର୍ମାଣ ପାଇଁ ଏବେ ୯ କୋଟି ଟଙ୍କାର ଏକ ପ୍ରକଳ୍ପ ମଧ୍ୟ ମଂଜୁର ହୋଇଛି ।(୬) କିନ୍ତୁ ଏତେ କମ୍ ଟଙ୍କାରେ କିପରି ପ୍ରକଳ୍ପ ଶେଷ ହେବ ତାହା ସମସ୍ତଙ୍କ ମନରେ ପ୍ରଶ୍ନବାଚୀ ସୃଷ୍ଟି କରିଛି । ଡିଙ୍କିଆ ଗ୍ରାମର ଅଧିବାସୀ ଶ୍ରୀ ଚିତ୍ତ ସ୍ୱାଇଁ କହନ୍ତି ସମୁଦ୍ର କୂଳ ଛାଡ଼ି ନିରାପଦ ଦୂର ସ୍ଥାନକୁ ପଳାଇ ଯିବା ପାଇଁ ଅନେକଙ୍କର ପ୍ରୟାସ ରହିଛି । ସଂପ୍ରତି ପାରାଦୀପ ବନ୍ଦରର ଉତ୍ତର ପାର୍ଶ୍ୱରେ କୂଳକ୍ଷୟ ହେବାର ଦୃଶ୍ୟ ଦେଖିବାକୁ ମିଳୁଛି । ସମୁଦ୍ରର ଅଶାନ୍ତ ରୂପକୁ ଶାନ୍ତ କରିବାକୁ ଯଦିଓ ସରକାର ସେପରି କିଛି ବଡ଼ଧରଣର ବ୍ୟବସ୍ଥା କରି ନାହାନ୍ତି କିନ୍ତୁ ଛୋଟ ମୋଟ ଜୁଆର ସମୟରେ ସମୁଦ୍ର ଜୁଆର ଯେପରି ସ୍ଥଳଭାଗକୁ ନ ଆସି ପାରିବ ଓ କୂଳକ୍ଷୟ ନ କରି ପାରିବ ସେଥିପାଇଁ ବ୍ୟବସ୍ଥା କରିଛନ୍ତି । ପାରାଦୀପର ଉତ୍ତରପାର୍ଶ୍ୱରେ ଥିବା ନେହେରୁ ବଙ୍ଗଳାଠାରେ ବଡ଼ ବଡ଼ ପଥରଖଣ୍ଡମାନ ପକାଯାଇ ସମୁଦ୍ର ପାଣି ଅଟକା ଯାଇପାରିଛି । ଏହା ହୋଇ ନ ଥିଲେ ସେଠାରେ ସମୁଦ୍ର ଯେଉଁଭଳି ଭାବେ ଉଗ୍ରରୂପ ଧାରଣ କରୁଛି, ତାହା ପ୍ରଭାବରେ ନେହେରୁ ବଙ୍ଗଳା ଓ ପାରାଦୀପ ବନ୍ଦରର ଭିତ୍ତିପ୍ରସ୍ତର ସ୍ମାରକୀ ଦେଖିବାକୁ ମିଳନ୍ତା ନାହିଁ ।

ଉପକୂଳ ଅବକ୍ଷୟ ପ୍ରସଙ୍ଗରେ ପାରାଦୀପ ନିକଟସ୍ଥ ବେଳାଭୂମିର ୭୦୦ ମିଟର ପରିସର ଭିତରେ ଥିବା ଭାରତୀୟ ତୈଳ ନିଗମ ଲିମିଟେଡ଼ର ଉପସାଧାରଣ ପରିଚାଳକ ଶ୍ରୀ ଏମ୍.ଏମ୍. ମହାନ୍ତି କହନ୍ତି - 'ଆମେ ସଂପ୍ରତି ବେଳାଭୂମି ଅବକ୍ଷୟ ବିପଦର ସମ୍ମୁଖୀନ ହୋଇନାହୁଁ । ବିଗତ କିଛି ବର୍ଷ ଧରି ସମୁଦ୍ର ତଟବର୍ତ୍ତୀ ଗ୍ରାମଗୁଡ଼ିକରେ ବସବାସ କରୁଥିବା ଅନେକ ପରିବାର ଗୃହଶୂନ୍ୟ ହୋଇଛନ୍ତି ଏବଂ ଯେଉଁ ପରିମାଣରେ ତଟ ଅବକ୍ଷୟ ହେଉଛି ତାହାର ସ୍ଥାୟୀ ପ୍ରତିକାର କରାନଗଲେ ସେମାନଙ୍କର ସ୍ଥିତି ଏଠାରେ ବନ୍ଦ ହୋଇଯିବା'(୭)

ଉପକୂଳ ଅବକ୍ଷୟର ଏକ କାରଣ ହେଉଛି ଜଙ୍ଗଲ ବିନାଶ । ଏ ବିଷୟରେ ସୂଚନା ଦେଇ ଟାଇମ୍ ସମ୍ବାଦ କହେ - ଉପକୂଳବର୍ତ୍ତୀ ଗ୍ରାମଗୁଡ଼ିକ ୧୯୫୦ ପର୍ଯ୍ୟନ୍ତ ହେନ୍ତାଳ ବଣ (mangroove forest)ରେ ପୂର୍ଣ୍ଣ ଥିଲା । ୧୯୬୦ ଦଶକରେ ବନ୍ଦର କାର୍ଯ୍ୟ ଆରମ୍ଭ ହେବାରୁ ତାହାକୁ ସବୁ ନଷ୍ଟ କରି ଦିଆଗଲା । ଫଳରେ, ପାରାଦୀପ ବନ୍ଦର ବଡ଼ ତଟ ଅବକ୍ଷୟର ସମ୍ମୁଖୀନ ହେଉଛି । ଯଦିଓ ଅବକ୍ଷୟକୁ ରୋକିବା ପାଇଁ ସମୁଦ୍ର ପାଚେରୀ (sea wall) ନିର୍ମାଣ କରାଯାଇଛି, ତଥାପି ବନ୍ଦରର ଉତ୍ତରପାର୍ଶ୍ୱ ଯେଉଁଠାରେ ପାଚେରୀ ନାହିଁ, ସେଠାରେ ଅବକ୍ଷୟ ଲାଗି ରହିଛି ।

ସେହିପରି କେନ୍ଦ୍ରାପଡ଼ା ଜିଲ୍ଲା ରାଜନଗର ବ୍ଲକ୍ ଅଧୀନସ୍ଥ ସାତଭାୟା ପଞ୍ଚାୟତର କାନପୁର, ଏକକୁଳା, ହାବେଳି ଗଣ୍ଡ ଓ ସାନ ଗହିରମଥା ଗ୍ରାମଗୁଡ଼ିକ ସମୁଦ୍ର ଆକ୍ରୋଶର ଶିକାର ହୋଇଛନ୍ତି । ଟାଇମସ୍ ତା.୨୮.୦୯.୦୫ରେ ପ୍ରକାଶିତ ଖବରାନୁସାରେ ସେଠାକାର ଅଧିବାସୀ ଶ୍ରୀ ସରୋଜ ରାଉତ କହନ୍ତି - ଗତ ୫୦ ବର୍ଷ ମଧ୍ୟରେ ତଟ ଅବକ୍ଷୟ ଆମକୁ ଅତିକମ୍‌ରେ ୭ ଥର ଘର ପରିବର୍ତ୍ତନ କରିବାକୁ ବାଧ୍ୟ କରିଛି ଓ ସ୍ଥାନୀୟ ସରପଞ୍ଚ ଶ୍ରୀ ନିଗମ ରାଉତ ଏ ପ୍ରସଙ୍ଗରେ କହନ୍ତି - ସାତଭାୟାର ଲୋକେ ସମୁଦ୍ର କୂଳ ଛାଡ଼ି ଦୂରସ୍ଥାନକୁ ଯିବା ପାଇଁ ଅତି ବ୍ୟଗ୍ର ଭାବରେ ଚାହିଁ ବସିଛନ୍ତି । ସେହି ଅଞ୍ଚଳର ତଟ ଅବକ୍ଷୟକୁ ଆକଳନ କରି ରାଜନଗର ବି.ଡି.ଓ. କହନ୍ତି ୧୯୩୦ ମସିହା ବନ୍ଦୋବସ୍ତ ମାନଚିତ୍ର (settlement map)ରେ ସାତଭାୟାର ମୂଳ ରକବା (area) ୩୫୦ ବର୍ଗ କିଲୋମିଟର ଥିଲା । ଏବେ ତାହା କମି ଆସି ୧୪୦ ବର୍ଗ କିଲୋମିଟରରେ ପହଞ୍ଚିଛି ।

କାନପୁର ଗ୍ରାମର ଶତ୍ରୁଘ୍ନ ନାୟକ ଗତ ତା.୨୮.୦୯.୦୫ରିଖରେ ଟାଇମସ୍ ଅଫ୍ ଇଣ୍ଡିଆକୁ ସାକ୍ଷାତକାର ଦେଇ କହନ୍ତି - ଗତ ଦୁଇବର୍ଷ ମଧ୍ୟରେ ପ୍ରାୟତଃ ୭୦ଟି ପରିବାର ଗୃହଶୂନ୍ୟ ହୋଇଛନ୍ତି ଓ ଅନ୍ୟ ୧୪ଟି ପରିବାର ଗତ ସପ୍ତାହରେ ସେଠାରୁ ଘରଛାଡ଼ି ଅନ୍ୟ ନିରାପଦ ସ୍ଥାନକୁ ଯିବାକୁ ସଜବାଜ ହେଉଛନ୍ତି । ପ୍ରାୟ ୨୨୦୦ ଲୋକସଂଖ୍ୟା ବିଶିଷ୍ଟ ସେହି ଅଞ୍ଚଳ ସମୁଦ୍ରରେ ବିଲୀନ ହେବାକୁ ବସିଲାଣି, ତାହା ଆଉ ବେଶି ଦିନ ବାକି ନାହିଁ ।

ଓଡ଼ିଶା ଉପକୂଳରେ ଥିବା ଗୋପାଳପୁର ନିକଟରେ ମଧ୍ୟ ସମୁଦ୍ର ତଟ-କ୍ଷୟ କରୁଛି । ଏପରି ଏକ ସ୍ପର୍ଶକାତର ସମସ୍ୟାକୁ ସରକାର ଓ ପରିବେଶବିତ୍‌ମାନେ ଆଲୋଚନା କରି ପ୍ରତିରୋଧ ବ୍ୟବସ୍ଥା ଗ୍ରହଣ କରିବାକୁ ଦାବି ହେଉଛି । କେହି କେହି କହୁଛନ୍ତି ଏହାର କାରଣ ହେଉଛି ଜାଗତିକ ଉଷ୍ମତା (Global Warming) । ଜାଗତିକ ଉଷ୍ମତା ଫଳରେ ସମୁଦ୍ରର ଜଳସ୍ତର ବୃଦ୍ଧି ହେବାକୁ ଲାଗୁଛି ଓ ସ୍ଥଳଭାଗର ପତନ ଘଟୁଛି । ଏହା ମଧ୍ୟ

ଏକ କାରଣ ହୋଇପାରେ କିନ୍ତୁ ଏ ବିଷୟରେ ଅନ୍ୟ କାରଣଗୁଡ଼ିକ ଆଲୋଚନା ହେବା ଦରକାର ।

'ଗଞ୍ଜାମର ତିନୋଟି ଗ୍ରାମକୁ ସମୁଦ୍ର ଗାଡ଼ି ଆସିଲା' ଶୀର୍ଷକ ଏକ ଖବର 'ଖବର' ସମ୍ବାଦପତ୍ରର ପ୍ରଥମ ପୃଷ୍ଠାରେ ନିକଟରେ ପ୍ରକାଶ ପାଇଛି । ଆଉ ଏକ ଛୋଟ ହେଡ଼ିଂରେ ବିପଦରେ ୪୦ଟି ଗାଁ' ବୋଲି ମଧ ଏହି ପ୍ରଥମ ସମ୍ବାଦରେ ଉଲ୍ଲେଖ ରହିଛି । ପ୍ରକାଶିତ ସମ୍ବାଦରେ କୁହାଯାଇଛି, ଉଲ୍ଲେଖଯୋଗ୍ୟ, ସମଗ୍ର ରାଜ୍ୟର ୪୮୦ କିଲୋମିଟର ବେଳାଭୂମି ରହିଥିବା ବେଳେ ଗଞ୍ଜାମ ଜିଲ୍ଲାରେ ରହିଛି ୭୫ କିଲୋମିଟର । ଗଞ୍ଜାମ ଉପକୂଳରେ ଗତ କିଛି ମାସ ମଧରେ ସମୁଦ୍ର ପଟୁ ଆତଙ୍କ ବଢ଼ି ଚାଲିଛି । ବିଗତ ୩ ବର୍ଷ ଧରି ଗଞ୍ଜାମ ଉପକୂଳରେ ସମୁଦ୍ରର ଉଗ୍ର ରୂପ ଦେଖିବାକୁ ମିଳିଛି ଏବଂ ଗତ ଜୁଲାଇରେ ୨ଟି ଲଘୁଚାପ ଯୋଗୁଁ ପ୍ରାୟ ୨୦ ଦିନ ସମୁଦ୍ର ଅଶାନ୍ତ ରହିଥିଲା । ଜନବସତି ସ୍ଥାନାନ୍ତରିତ ପାଇଁ ପ୍ରଶାସନର ପ୍ରସ୍ତାବରେ ସମୁଦ୍ର ନିକଟରେ ରହି ମାଛ ମାରିବାକୁ ଚାହୁଁଥିବା ନୋଳିଆମାନେ ରାଜି ହେଉ ନଥିବା ବେଳେ ବିପର୍ଯ୍ୟୟ ପରିଚାଳନା ବେଳେ ଅସଲ ସମସ୍ୟା ସୃଷ୍ଟି ହେଉଛି । ଏପରିକି ସି.ଆର୍.ଜେଡ୍ (ଉପକୂଳ ନିୟନ୍ତ୍ରଣ ଆଇନ) ଅଧୀନରେ ଆସୁଥିବା ଅଞ୍ଚଳ ଯୋଗୁଁ ରିଲିଫ୍ ଦେବାରେ ମଧ ପ୍ରତିବନ୍ଧକ ଆସୁଛି । ସେପ୍ଟେମ୍ବର ୨୦୦୬ରୁ ମାର୍ଚ୍ଚ ୨୦୦୭ ମଧ୍ୟରେ ଗୋପାଳପୁରଠାରେ ସମୁଦ୍ର ୨୫ ମିଟର ମାଡ଼ି ଆସିଛି । ପ୍ରବଳ ଜୁଆର ମାଡ଼ରେ ସମୁଦ୍ରର ସୁରକ୍ଷା ପ୍ରାଚୀର ଭୁଷୁଡ଼ି ପଡ଼ିବା ସଙ୍ଗେ ସଙ୍ଗେ ସେଠାରେ ଥିବା ତଟବର୍ତ୍ତୀ ହୋଟେଲଗୁଡ଼ିକର କ୍ଷୟକ୍ଷତି ହୋଇଥିଲା । ଗୋପାଳପୁରସ୍ଥିତି ଲାଇଟ ହାଉସ୍ (ବତୀଘର)ଠାରୁ ଦୁଇ କିଲୋମିଟର ବ୍ୟାପୀ ଅଞ୍ଚଳ ସମୁଦ୍ର ବାଲିରେ ପୋତି ହୋଇଯାଇଥିବା ଦେଖାଯାଇଥିଲା ।

ବିଶିଷ୍ଟ ପରିବେଶବିତ୍ ଲଇକ୍ ଫତେହଲୀଙ୍କ ମତରେ ଭାରତ ମହାସାଗର ଓ ବଙ୍ଗୋପସାଗରରେ ଯାହାସବୁ ଘଟେ, ତା'ର ପ୍ରଭାବ ଆମ ଦେଶ ଉପରେ ପଡ଼ିଥାଏ । ମାତ୍ର ଆମର ମୁଖ୍ୟ ଦାୟିତ୍ୱ ହେଉଛି ଆମେ ଆମର ଉପକୂଳ ଅଞ୍ଚଳର ପ୍ରାକୃତିକ ଅବସ୍ଥାର ସୁରକ୍ଷା କରିବା ।

ଦୁର୍ଭାଗ୍ୟ ଆମେ ସବୁବେଳେ ଉପକୂଳ ଅଞ୍ଚଳରୁ ଅଧିକ ସ୍ୱାଧୀନତା ପାଇବାକୁ ଆଶା କରୁଛୁଁ ଓ ଉପକୂଳବର୍ତ୍ତୀ ଗୋଟିଏ ଅଞ୍ଚଳକୁ ପୋତି ଆମ ନଗରର ଆଉ ଏକ ଅଞ୍ଚଳ ସୃଷ୍ଟି କରିବାକୁ ଚେଷ୍ଟା କରୁଛୁ । ଉଦାହରଣ ସ୍ୱରୂପ, ବମ୍ବେରେ ଆମେ ମେରାଇନ ଡ୍ରାଇଭ ଓ ନରିମ୍ୟାନ ପଏଣ୍ଟ ଅଞ୍ଚଳକୁ ଉନ୍ନତ କରିବା ଫଳରେ ସମୁଦ୍ର ଅନ୍ୟ ଅଞ୍ଚଳକୁ ଖାଇଯାଇ ଭରଶୋଭା ଗ୍ରାମକୁ ନଷ୍ଟ କରି ଦେଇଛି । ମହାବଳୀ ପାଟଣାରେ ଗୋଟିଏ ମନ୍ଦିର ସମୁଦ୍ର ଭିତରେ ଲୀନ ହେବା ଅବସ୍ଥାରେ ରହିଛି ଏବଂ ଆମେ ସମୁଦ୍ରକୁ ପଛକୁ ଘୁଞ୍ଚାଇବାକୁ ଚେଷ୍ଟା କରି ସେଠାରେ ବାଲି ପୋତୁଛୁଁ । ସ୍ଥାନୀୟ ବାସିନ୍ଦାଙ୍କ ଅଭିଯୋଗ ଯେ ସମୁଦ୍ର ଲହଡ଼ିର ଗତିପଥ ଏହାଦ୍ୱାରା ପରିବର୍ତ୍ତିତ ହେଉଛି । ଆମେ ଭୁଲିଯାଉଛୁଁ ଯେ ପାଣିକୁ କେବେ ହେଲେ ଦବାଇ ରଖାଯାଇ ପାରିବ ନାହିଁ ଏବଂ ଯଦି ଆମେ ଏକ ବର୍ଗଫୁଟ ଅଞ୍ଚଳ ଜଳଭାଗରୁ ଜଳ ଉଠାଇନେବା, ସେହି ସ୍ଥାନ ଅନ୍ୟ ପ୍ରକାରରେ ପୂରଣ ହେବ ଯେଉଁଥିପାଇଁ ଆମେ ହୁଏତ୍ ପ୍ରସ୍ତୁତ ନ ଥିବା କିମ୍ବା ତାହାକୁ ଆମେ ପସନ୍ଦ କରିବା ନାହିଁ ।(୮)

ବାସ୍ତବିକ ପ୍ରାକୃତିକ ସମୁଦ୍ର ସୀମାରେଖା ଯାହାକି ସମୁଦ୍ରର ଏକ ଅଂଶ, ତା'ର ପ୍ରାଧାନ୍ୟ ଏବେ ବଢ଼ି ଚାଲିଛି । ବହୁଦେଶ ସମୁଦ୍ର କୂଳରେ ଜଳଜ ଜାତୀୟ ପାର୍କ ଓ ବାଓସ୍ଫିୟର ଭଣ୍ଡାର ନିର୍ମାଣ କଲେଣି । ଆମ ଭବିଷ୍ୟତ ବଂଶଧରଙ୍କ ପାଇଁ ଏକ ମନୋହର ଉପକୂଳ ଯୋଗାଇଦେବା ସକାଶେ ଆମେ ଉପୂଳର ସୁରକ୍ଷା ଓ ଉନ୍ନତି କଥା ନମ୍ରତାର ସହ ଚିନ୍ତା କରିବା ଦରକାର ।

**ସହାୟକ ତଥ୍ୟାବଳୀ**


୧. ମୁମ୍ବାଇ ସୁରକ୍ଷା - ସମ୍ବାଦ, ଜୁଲାଇ ୨୫, ୨୦୦୯ରେ ପ୍ରକାଶିତ । ମୁମ୍ବାଇରେ ୧୦୦ ବର୍ଷର ଉଚ୍ଚତମ ଜୁଆର - ସମ୍ବାଦ, ଜୁଲାଇ ୨୫, ୨୦୦୯ରେ ପ୍ରକାଶିତ ।

୨. ସିଂହ, ବି.ଏନ୍., ଓଡ଼ିଶାର ଭୂଗୋଳ - ଅନୁବାଦକ ହେମନ୍ତ କୁମାର ଦାସ, ପୃ.୧୫ ।

୩. ବିଶ୍ୱରଞ୍ଜନ - ବାତ୍ୟା ଓଡ଼ିଶୀ, ପୃ.୩୯

୪. ବିଶ୍ୱରଞ୍ଜନ - ଏଜନ, ପୃ.୯

୫. Senapati Ashis, Erosion Threat Looms Oveer Paradeep Port - Published in TOI, July 21, 2009

୬. ବିବେକାନନ୍ଦ ସ୍ୱାଇଁ - କୂଳ ଲଙ୍ଘୁଛି ସମୁଦ୍ର, ବିପଦରେ ବନ୍ଦର ସହର - ସମ୍ବାଦ ୧୭ ଜୁଲାଇ, ୨୦୦୯ରେ ପ୍ରକାଶିତ

୭. Senapati Ashis - ibid (ଏଜନ)

୮. ଲଇକ୍ ଫତେହଲୀ - ଆମ ପରିବେଶ - ଓଡ଼ିଆ ଅନୁବାଦ - ପ୍ରମୋଦ କୁମାର ମହାପାତ୍ର, ପୃ.୧୦୪-୧୦୬

୯. ଗଂଜାମର ୩ଟି ଗ୍ରାମକୁ ସମୁଦ୍ର ମାଡ଼ି ଆସିଲା, ପ୍ରଥମ ପୃଷ୍ଠା 'ଖବର'-୭ ସେପ୍ଟେମ୍ବର, ୨୦୦୯



ହରେକୃଷ୍ଣ ମହତାବ ରାଜ୍ୟ ଗ୍ରନ୍ଥାଗାର
ଭୁବନେଶ୍ୱର

# ଓଡ଼ିଶାର ଗୌରବ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍

ସୁଶୀଳ କୁମାର ବାଗ୍



ସଚିବାଳୟ ପରିସରରେ କଳାକାରମାନଙ୍କ ଗହଣରେ ମୁଖ୍ୟମନ୍ତ୍ରୀ

ଓଡ଼ିଶାର କଳା ଓ ସଂସ୍କୃତି ମହାନ୍ । ମହାନ୍ ଓଡ଼ିଶାର ନୃତ୍ୟ ଓ ସଂଗୀତ । ସଂସ୍କୃତି- ସଂପନ୍ନ ଓଡ଼ିଶା । ପ୍ରତିଟି ଓଡ଼ିଆ ଆଜି ଗର୍ବିତ ଓଡ଼ିଶାର କଳା ଓ ସଂସ୍କୃତିକୁ ନେଇ - ଗର୍ବିତ ମଧ ଓଡ଼ିଶାର ଗାରିମାମୟ ନୃତ୍ୟ ଓ ସଂଗୀତକୁ ନେଇ । ବହୁ ଶିଳ୍ପୀ, ଲେଖକ ଓ କଳାକାରଙ୍କୁ ଜନ୍ମ ଦେଇ ଏ ଭୂମି ହୋଇଛି ପବିତ୍ର । ନିଜ ସଂସ୍କୃତି ଓ ପରମ୍ପରାର ମହତ୍ୱକୁ ବଞ୍ଚାଇ ରଖିବା ପାଇଁ ଅହରହ ଜାରି ରିହଛି ଓଡ଼ିଆ ପୁଅର ଉଦ୍ୟମ । ନିଜ ପ୍ରତିଭାକୁ ପ୍ରସ୍ଫୁଟିତ କରିବା ପାଇଁ ନିଷ୍ଠା ଓ ଆନ୍ତରିକତା ସହ ସାଧନାରତ ଓଡ଼ିଶାର କଳାକାରମାନେ ।

ଓଡ଼ିଶାର ପର୍ବପର୍ବାଣି, ନୃତ୍ୟ ଓ ସଂଗୀତ, କଳା ଓ ସଂସ୍କୃତି ଏବଂ ସବୁ କିଛିର ସ୍ୱାଦ ନିଆରା ଓ ସ୍ୱତନ୍ତ୍ର । ଓଡ଼ିଶୀ, ଗୋଟି ପୁଅ, ଛଉ, କାଠି, ମେଢ଼, ନାଗ, କଣ୍ଢେଇ, ସମ୍ବଲପୁରୀ ଆଦି ନୃତ୍ୟ ଆଜି ଦେଶବିଦେଶରେ ବେଶ୍ ପରିଚିତ । ଏହା ସହିତ ଓଡ଼ିଶାର ଆଦିବାସୀ ନାଚଗୁଡ଼ିକର ମଧ ରହିଛି ଏକ ସ୍ୱତନ୍ତ୍ର ଗାରିମା । କେବଳ ଓଡ଼ିଶା ନୁହେଁ, ରାଜ୍ୟ ବାହାରେ ମଧ ଓଡ଼ିଶାର ନୃତ୍ୟ-ଗୀତ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି ଏବଂ ଓଡ଼ିଶାର ଗର୍ବ, ଗୌରବକୁ ବଜାୟ ରଖିଛି ।

ପ୍ରତିଭାକୁ କେବେ ରୋକି ପାରିନି ବାଧା ଓ ପ୍ରତିବନ୍ଧକ । ନିଷ୍ଠା ଓ ସାଧନା ମଣିଷକୁ ଚଢ଼ାଏ ସଫଳତାର ସିଢ଼ି । ଆଉ ଏକଥା ପ୍ରମାଣିତ ହୋଇଯାଇଛି ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍‌ର ଚିତ୍ତାକର୍ଷକ ନୃତ୍ୟ ପ୍ରଦର୍ଶନରୁ । ନୂଆଦିଲ୍ଲୀରେ କଲର୍ସ୍ ଚ୍ୟାନେଲର 'ଇଣ୍ଡିଆଜ୍ ଗଟ୍ ଟାଲେଣ୍ଟ' ଟିଭି ପ୍ରଦର୍ଶନୀରେ ଅଂଶ ଗ୍ରହଣ କରି ପ୍ରଥମ ହୋଇ ରେକର୍ଡ଼ ସୃଷ୍ଟି କରିଛି ଓଡ଼ିଶାର 'ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍' । ଏକ ଜାତୀୟସ୍ତରର ପ୍ରତିଯୋଗିତାରେ ସଫଳତା ପାଇ ସୁନାମ ଅର୍ଜନ କରିଛି । କେବଳ ଭାରତରେ ନୁହେଁ ସାରା ବିଶ୍ୱରେ ଏବେ ଚର୍ଚ୍ଚାରେ ଏହି ଡ୍ୟାନ୍ସ ଗ୍ରୁପ୍ ।

### ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍

ବ୍ରହ୍ମପୁର ସହରର ଏକ ଛୋଟିଆ ବସ୍ତି ଆମ୍ବପୁଆ ଆଜି ସାରା ବିଶ୍ୱରେ ପରିଚିତ । ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି କେବଳ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍ ଯୋଗୁଁ । ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍ କୌଣସି ପ୍ରଫେସନାଲ ଡ୍ୟାନ୍ସ ଗ୍ରୁପ୍ ନୁହେଁ । ମାତ୍ର ୪ ବର୍ଷ ତଳେ ଗଠିତ ହୋଇଥିଲା ଏହି ଡ୍ୟାନ୍ସ ଗ୍ରୁପ୍ । ଏହାର ପ୍ରତିଷ୍ଠାତା ହେଉଛନ୍ତି ବ୍ରହ୍ମପୁରର ଶ୍ରୀ ଟି. କ୍ରିଷ୍ଣା ମୋହନ ରେଢ୍ଢି - ନୃତ୍ୟ ଓ

ସଂଗୀତରେ ରୁଚି ରଖୁଥିବା ଜଣେ ଯୁବ କଳାକାର । ନୃତ୍ୟ ଓ ସଂଗୀତ ପ୍ରତି ସମର୍ପିତ ଜଣେ ଯୁବ ପ୍ରତିଭା ସେ । **ପ୍ରତିଷ୍ଠିତ ଡ୍ୟାନ୍ସରଙ୍କୁ ନେଇ ଏହା ଗଠିତ ହୋଇନଥିଲା । ଏହାର ସଦସ୍ୟମାନେ ହେଉଛନ୍ତି କୁଲି ଓ ମଜୁରିଆ ଶ୍ରେଣୀର ଯୁବକମାନେ । କିଏ ଇଟା ଭାଟିରେ କାମ କରେ ତ କିଏ ଘର ତିଆରି କାମ କରନ୍ତି । ଆଉ ଅବା କିଏ ଟ୍ରକ୍‌ରେ ବାଲି, ଇଟା, ପଥର ବୋଝେଇ କାମ କରନ୍ତି । କିଏ ରାଜମିସ୍ତ୍ରୀ ତ କିଏ ଶ୍ରମିକ ଅବା କିଏ ମଜୁରିଆ । କିନ୍ତୁ ସନ୍ଧ୍ୟା ହେଲେ ସମସ୍ତ ଏକତ୍ର ହୁଅନ୍ତି ଆମ୍ବପୁଆର ଦଣ୍ଡକାଳୀ ମନ୍ଦିର ବେଢ଼ାରେ । ଆରମ୍ଭ ହୁଏ ନାଚ ଶିଖିବା ।** ପ୍ରତି ଦିନ ପ୍ରାୟ ତିନି ଚାରି ଘଣ୍ଟା ଚାଲେ ନୃତ୍ୟ ଅଭ୍ୟାସ । ପ୍ରଥମରୁ ୧୮ ଜଣ ଯୁବକଙ୍କୁ ନେଇ ଗଠିତ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍‌ରେ ଏବେ ଅଛନ୍ତି ୨୫ ଜଣ କଳାକାର । ସମସ୍ତଙ୍କ ବୟସ ୧୩ରୁ ୨୫ ବର୍ଷ ମଧ୍ୟରେ । ଏହି ଡ୍ୟାନ୍ସ ଗ୍ରୁପ୍ ଏବେ ଜାତୀୟସ୍ତରରେ ସ୍ୱୀକୃତି ପାଇସାରିଛି - ଏକ ଷ୍ଟାର୍ ଡ୍ୟାନ୍ସ ଗ୍ରୁପ୍‌ର ମର୍ଯ୍ୟାଦା ପାଇ ସାରିଛି ।

ଆଶ୍ଚର୍ଯ୍ୟର କଥା ଯେ, ପଦ୍ମନାଭ ଅଲ୍ ଇଣ୍ଡିଆ ବଡ଼ି ବିଲଡ଼ର୍ ଫେଡ଼େରେସନ୍‌ଦ୍ୱାରା ଆୟୋଜିତ ପ୍ରତିଯୋଗିତାରେ ଚତୁର୍ଥ ସ୍ଥାନ ଅଧିକାର କରିଥିଲେ । ସେହିପରି ୨୦୦୧ରେ 'ଉତ୍କଳ କୁମାର' ଏବଂ 'ଗଞ୍ଜାମଶ୍ରୀ' ପୁରସ୍କାର ପାଇଥିଲେ ।

### ଇଣ୍ଡିଆଜ୍ ଗଟ୍ ଟାଲେଣ୍ଟ

ଜାତୀୟସ୍ତରର କଲର୍‌ସ୍ ଚ୍ୟାନେଲ ପକ୍ଷରୁ ଆୟୋଜିତ ହୋଇଥିଲା ଇଣ୍ଡିଆଜ୍ ଗଟ୍ ଟାଲେଣ୍ଟ ସୋ । ପ୍ରଥମେ ଏହି ସୋ ପାଇଁ ଅଡ଼ିସନ୍ ଟେଷ୍ଟ ହୋଇଥିଲା ଦିଲ୍ଲୀ, ଚେନ୍ନାଇ, କୋଲକାତା ପରି ମେଟ୍ରୋସିଟିମାନଙ୍କରେ । ଅଡ଼ିସନ୍ ଟେଷ୍ଟ ପାଇଁ ଆବେଦନ କରିଥିଲେ ୪୫ ହଜାର କଳାକାର । ସେମାନଙ୍କ ମଧ୍ୟରୁ ମନୋନୀତ କରାଯାଇଥିଲା ୧୯୪ ଜଣଙ୍କୁ । ସେମାନଙ୍କ ଭିତରେ ଥିଲେ ଓଡ଼ିଶା ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍ । ଆରମ୍ଭ ହୋଇଥିଲା ପ୍ରତିଯୋଗିତା । ପ୍ରାରମ୍ଭିକ ପର୍ଯ୍ୟାୟରେ ପୁଣି ମନୋନୀତ ହେଲେ ୪୫ ଜଣ । ପୁଣି ସେମାନଙ୍କ ମଧ୍ୟରେ ହେଲା ପ୍ରତିଯୋଗିତା । ସେଥିରୁ ୧୫ ଜଣଙ୍କୁ ପଠାଗଲା ସେମିଫାଇନାଲ ରାଉଣ୍ଡକୁ । ଆଉ ସବୁ ରାଉଣ୍ଡରେ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍ ନୃତ୍ୟ ପ୍ରଦର୍ଶନ କରୁଥିଲେ ବେଶ୍ ଉଚ୍ଚକୋଟୀର ।

ପ୍ରଥମ ପର୍ଯ୍ୟାୟରେ ପ୍ରିନ୍ସ ଗ୍ରୁପ୍ ପରିବେଷଣ କରିଥିଲା 'ଓ କିଷନର ହେ' । ଏହାର ନୃତ୍ୟ ଓ ଗୀତ ଉଭୟ ଥିଲା ହୃଦୟସ୍ପର୍ଶୀ ଓ ମନୋମୁଗ୍ଧକର । ସେମିଫାଇନାଲ୍ ରାଉଣ୍ଡରେ ପ୍ରିନ୍ସ ଗ୍ରୁପ୍ ପ୍ରଦର୍ଶନ କରିଥିଲେ ଦେଶାତ୍ମବୋଧକ ସଂଗୀତ 'ସାରେ ଜହାଁ ସେ ଅଚ୍ଛା' । ଆଧୁନିକ ଓ ଲୋକନୃତ୍ୟର ସମ୍ମିଶ୍ରଣର ଧୂନ୍‌କୁ ନେଇ ପ୍ରଦର୍ଶିତ କରାଯାଇଥିଲା ଏ ନୃତ୍ୟ । 'ସାରେ ଜହାଁ ସେ ଅଚ୍ଛା' ସଂଗୀତର ଧୂନ୍ ତାଳେ ତାଳେ ପ୍ରିନ୍ସ ଗ୍ରୁପ୍‌ର କଳାକାରଙ୍କ ନୃତ୍ୟ ପ୍ରଦର୍ଶନ ଥିଲା ଏକାନ୍ତ ହୃଦୟସ୍ପର୍ଶୀ ଯାହା ସ୍ତବ୍ଧ କରିଦେଇଥିଲା ସାରା ଦେଶବାସୀଙ୍କୁ । ସ୍ତମ୍ଭୀଭୂତ ହୋଇଯାଇଥିଲେ ଦର୍ଶକ ଓ ବିଚାରକମାନେ । ସବୁଠୁଁ ଅଧିକ ଚକିତ କରିଥିଲା ଦୁଇ ଜଣ ଭିନ୍ନକ୍ଷମ କଳାକାରଙ୍କ ଚମତ୍କାର ନୃତ୍ୟ । ସେ ଦିନର ନୃତ୍ୟ ଯିଏ ବି ଦେଖିଥିବେ ନିଶ୍ଚିତଭାବେ ଦେହରେ ଶିହରଣ ଖେଳି ଯାଇଥିବ, ରୋମାଞ୍ଚ ସୃଷ୍ଟି ହୋଇଥିବ ଶରୀରରେ, ଲୋମ ଟାଙ୍କୁରି ଉଠିଥିବ । ଆଖିକୁ ଜକେଇ ଆସିଥିବ ଲୁହ । ଏଭଳି ଅନୁଭବରେ ସେ ଦିନ ଶିହରିତ ହୋଇଥିଲେ ଦେଶର ଅଗଣିତ କଳାପ୍ରେମୀ । ସମସ୍ତଙ୍କ ମୁହଁରେ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍‌ର ଭୁରି ଭୁରି ପ୍ରଶଂସା ।

### ଭିନ୍ନକ୍ଷମଙ୍କ ଚମତ୍କାରିତା

ଆକର୍ଷଣର କେନ୍ଦ୍ର ବିନ୍ଦୁ ଥିଲେ ପ୍ରିନ୍ସ ଗ୍ରୁପ୍‌ର ଦୁଇ ଭିନ୍ନକ୍ଷମ କଳାକାର । ପଦ୍ମନାଭ ବେହେରା ଓ ଟୁଲୁ ତାରିଣୀ । ଦୁଇ ଭିନ୍ନକ୍ଷମ କଳାକାରଙ୍କ ନୃତ୍ୟ ପ୍ରଦର୍ଶନ ସ୍ତମ୍ଭୀଭୂତ କରିଥିଲା ଦର୍ଶକଙ୍କୁ । ଆଚମ୍ବିତ ହୋଇଥିଲେ ବିଚାରକମାନେ । ୧୩ ବର୍ଷର ଟୁଲୁ । ବ୍ରହ୍ମପୁର କେ.ସି. ଟାଉନ୍ ହାଇସ୍କୁଲର ସପ୍ତମ ଶ୍ରେଣୀର ଛାତ୍ର ଓ ୨୫ ବର୍ଷୀୟ ପଦ୍ମନାଭ ବେହେରା । ଯୁକ୍ତ ଦୁଇ ପରେ ଡୋରି ବନ୍ଧା ହୋଇଥିଲା ତାଙ୍କ ପାଠ ପଢ଼ାରେ ଆଉ ଏବେ କିନ୍ତୁ ସେ ଟ୍ୟୁସନ୍ କରୁଛନ୍ତି । ଭିନ୍ନକ୍ଷମ ହେଲେ ବି ହାର୍ ମାନି ନାହାନ୍ତି । ସକ୍ଷମ ପିଲାଟିଏ ପରି ସେମାନେ ମଧ୍ୟ ଜାରି ରଖିଥିଲେ ତାଙ୍କ ନୃତ୍ୟ ସାଧନା । ସାଥୀ କଳାକାରମାନଙ୍କ ସହ ସେମାନେ ମଧ୍ୟ ଶିଖୁ ଥିଲେ ନୃତ୍ୟ । ପଦ୍ମନାଭ ଓ ଟୁଲୁ ହେଉଛନ୍ତି ଗୁରୁଶିଷ୍ୟ । ଟୁଲୁଙ୍କ ଟ୍ୟୁସନ୍ ମାଷ୍ଟର ହେଉଛନ୍ତି ପଦ୍ମନାଭ ବେହେରା । ଆଉ ପଦ୍ମନାଭଙ୍କ ପ୍ରେରଣାରେ ଟୁଲୁ ଯୋଗ ଦେଇଥିଲେ ପ୍ରିନ୍‌ସ ଡ୍ୟାନ୍ସ ଗ୍ରୁପ୍‌ରେ । ଟୁଲୁଙ୍କ ଆଗ୍ରହ ଓ ଉତ୍ସାହ ଦେଖି ଗ୍ରୁପ୍‌ର ମୁଖ୍ୟ କ୍ରିଷ୍ଣା ମୋହନ ରେଡ୍ଡି ସାମିଲ କରାଇଥିଲେ ନିଜ ଦଳରେ । କିନ୍ତୁ ପ୍ରତିଦିନ ବ୍ରହ୍ମପୁରରୁ ୮ କିଲୋମିଟର ଦୂର ଆମ୍ବପୁଆ ଯାଇ ନାଚ ଶିଖିବା ଥିଲା ଟୁଲୁଙ୍କ ପାଇଁ ଏକ କଷ୍ଟକର ବ୍ୟାପାର । କିନ୍ତୁ ଏଥିରେ ତାଙ୍କୁ ସହଯୋଗ କଲେ ଦଳର ଅନ୍ୟ ସଦସ୍ୟମାନେ । ପ୍ରତିଦିନ ସେମାନେ ଟୁଲୁଙ୍କ ବ୍ରହ୍ମପୁର ଆମ୍ବପୁଆକୁ ନେବା ଆଣିବା କରନ୍ତି ।




ଲୋକପ୍ରିୟ ଘରୋଇ ଟିଭି ଚାନେଲ 'କଲର୍ସ୍'ର ଜାତୀୟସ୍ତରୀୟ ନୃତ୍ୟ ପ୍ରତିଯୋଗିତାରେ ଶ୍ରେଷ୍ଠ ବିବେଚିତ ଓଡ଼ିଶାର 'ପ୍ରିନ୍ସ ଡ୍ୟାନସ ଗ୍ରୁପ୍'ର ମନୋମୁଗ୍ଧକର ନୃତ୍ୟ ପରିବେଷଣ



ରାଜ୍ୟ ସଚିବାଳୟ ପରିସରରେ 'ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍'ର କଳାକାରମାନଙ୍କୁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଅଭିନନ୍ଦନ ଜଣାଉଛନ୍ତି । (୨୭.୦୮.୦୯)

କେତେବେଳେ ଆମ୍ବପୁଆର ମନ୍ଦିର ବେଢ଼ାରେ ତ କେତେବେଳେ ଗୋପାଳପୁର ସମୁଦ୍ର କୂଳର ବାଲିପଠାରେ ଚାଲୁଥିଲା ନୃତ୍ୟ ଅଭ୍ୟାସ । ସେପଟେ ପଦ୍ମନାଭ ଭିନ୍ନକ୍ଷମ ହେଲେ ମଧ୍ୟ ପାଠପଢ଼ାର ବେଶ୍ ପାରଙ୍ଗମ । ଟ୍ୟୁସନ୍ କରି ସେ ନିଜର ଗୁଜୁରାଣ ମେଣ୍ଟାନ୍ତି । ପୁରୁଣା ବ୍ରହ୍ମପୁର ଅଞ୍ଚଳରେ ଛାତ୍ରଛାତ୍ରୀମାନଙ୍କୁ ଟ୍ୟୁସନ୍ ପଢ଼ାନ୍ତି । ଆଶ୍ଚର୍ଯ୍ୟର କଥା ଯେ, ପଦ୍ମନାଭ ଅଲ୍ ଇଣ୍ଡିଆ ବଡ଼ି ବିଲଡ଼ର୍ ଫେଡ଼େରେସନ୍‌ଦ୍ୱାରା ଆୟୋଜିତ ପ୍ରତିଯୋଗିତାରେ ଚତୁର୍ଥ ସ୍ଥାନ ଅଧିକାର କରିଥିଲେ । ସେହିପରି ୨୦୦୧ରେ 'ଉତ୍କଳ କୁମାର' ଏବଂ 'ଗଞ୍ଜାମଶ୍ରୀ' ପୁରସ୍କାର ପାଇଥିଲେ ।

ନାଚ ଓ ଗୀତ ପ୍ରତି ପଦ୍ମନାଭଙ୍କ ରହିଛି ପ୍ରବଳ ଆକର୍ଷଣ । ଏପରିକି 'ବନ୍ଦେ ମାତରମ୍' ନାମକ ଏକ ନୃତ୍ୟ ଦଳ ଗଠନ କରିଥିଲେ ସେ । ପରବର୍ତ୍ତୀ ସମୟରେ ଯୋଗ ଦେଇଥିଲେ କ୍ରିଷ୍ଣାଙ୍କ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍‌ରେ । ଦୃଢ଼ ଇଚ୍ଛାଶକ୍ତି ଓ ସାଧନା ବଳରେ ଜଣେ ଅସାଧ୍ୟକୁ ମଧ୍ୟ ସାଧନ କରିପାରେ ଏକଥା ପ୍ରମାଣିତ କରିଛନ୍ତି ପଦ୍ମନାଭ ଓ ଟୁଲୁ । ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍‌ର ଆକର୍ଷଣର କେନ୍ଦ୍ର ବିନ୍ଦୁ ହେଉଛନ୍ତି ଏହି ଦୁଇ ଭିନ୍ନକ୍ଷମ କଳାକାର । ଭିନ୍ନକ୍ଷମ ହେଲେବି ସେମାନେ ବେଶ୍ ପାରଙ୍ଗମ ସେମାନେ, ଅନ୍ୟମାନଙ୍କ ଭଳି ନାଚ-ଗୀତ ପରିବେଷଣ କରିପାରିବେ, ଏହା ଦେଖାଇ ଦେଇଛନ୍ତି 'ଇଣ୍ଡିଆଜ୍ ଗଟ୍ ଟାଲେଣ୍ଟ' ସୋ'ରେ ଏହି ଦଳ ।

### ତାଜୁବ୍ ଦର୍ଶକ ଓ ବିଚାରକ

୨୦୦୯ ଅଗଷ୍ଟ ୨୨ ତାରିଖ । ସମୟ ରାତି ୮ଟା ଆରମ୍ଭ ହେଲା 'ଇଣ୍ଡିଆଜ୍ ଗଟ୍ ଟ୍ୟାଲେଣ୍ଟ'ର ଗ୍ରାଣ୍ଡ ଫାଇନାଲ । ଆଉ ସମସ୍ତଙ୍କ ନଜର ଥାଏ 'ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍' ଉପରେ । ପ୍ରିନ୍ସ ଗ୍ରୁପ୍ ପ୍ରଦର୍ଶନ କଲେ ଭଗବାନ୍ ବିଷ୍ଣୁଙ୍କ ଦଶାବତାର । ନୃତ୍ୟର ରଚନା ସହ କଷ୍ଟ୍ୟୁମ୍ ସବୁ ଥିଲା ସଂପୂର୍ଣ୍ଣ ନିଆରା । ଏକ ପୌରାଣିକ କଥାକୁ ଆଧୁନିକ ଶୈଳୀରେ ପରିବେଷଣ କରାଯିବା ଥିଲା ଏହି ନୃତ୍ୟର ସ୍ୱାତନ୍ତ୍ର୍ୟ । କ୍ରିଷ୍ଣାଙ୍କ ପୁରା ଟିମ୍‌ର କଳାକାରଙ୍କ ଚମତ୍କାର ନୃତ୍ୟ ଦେଖି ତାଜୁବ୍ ହୋଇଯାଇଥିଲେ ଦର୍ଶକ ଓ ବିଚାରକମାନେ । ସମସ୍ତଙ୍କ ମୁହଁରେ ଜୟ ହୋ ପ୍ରିନ୍ସ ଗ୍ରୁପ୍ ।

ବାଃ ବାଃରେ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍ । ବିଚାରକ ଶେଖର କପୁର, ସୋନାଲି ବେନ୍ଦ୍ରେ ଓ କିରଣ ଖେର୍ ପ୍ରିନ୍ସ ଗ୍ରୁପ୍ର ପ୍ରଶଂସା ନ କରି ରହିପାରିଲେ ନାହିଁ । ଯେତେବେଳେ ଅଭିନେତ୍ରୀ ରାଣୀ ମୁଖାର୍ଜୀ ଚାମ୍ପିଅନ୍ ଘୋଷଣା କଲେ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍‌କୁ ସେତେବେଳେ ଖୁସିରେ ବିଭୋର ହୋଇଯାଇଥିଲେ ପ୍ରିନ୍ସ ଗ୍ରୁପ୍‌ର ସମସ୍ତ କଳାକାର । ଭଗବାନଙ୍କୁ କୃତଜ୍ଞତା ଜଣାଉଥାନ୍ତି ମନେ ମନେ । ତାଙ୍କ ପରିଶ୍ରମ ସାର୍ଥକ ହୋଇଛି ବୋଲି । 'ଇଣ୍ଡିଆଜ୍ ଗଟ୍ ଟେଲେଣ୍ଟ'ର ଗ୍ରାଣ୍ଡ ଫାଇନାଲ ବିଜେତା ଭାବେ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍‌କୁ ମିଳିଲା ୫୦ ଲକ୍ଷ ଟଙ୍କାର ଚେକ୍ ଓ ମାରୁତି ରିଜ୍ କାର୍ ଉପହାର । ଏହି ସଫଳତାରେ ରାତାରାତି ପ୍ରିନ୍ସ ଗ୍ରୁପ୍‌କୁ ଷ୍ଟାର୍‌ର ଇମେଜ୍ ମିଳିଲା । ଦିନ ମଜୁରିଆ କଳାକାରମାନେ ବଢ଼ି ଗଲେ ସୁପର୍ ଷ୍ଟାର୍ ।

### ଶୁଭେଚ୍ଛାର ସୁଅ

ସେମିଫାଇନାଲ ରାଉଣ୍ଡରେ ପ୍ରିନ୍ସ ଗ୍ରୁପ୍‌ର ନୃତ୍ୟ ଅଭିଭୂତ କରିଥିଲା ସାରା ଦେଶବାସୀଙ୍କୁ । ଆଉ ଫାଇନାଲ ରାଉଣ୍ଡରେ ପ୍ରିନ୍ସ ଗ୍ରୁପ୍‌କୁ ବିଜୟୀ କରାଇବା ପାଇଁ କେବଳ ଓଡ଼ିଶାରେ ନୁହେଁ ସାରା ଦେଶର ବିଭିନ୍ନ ଅଞ୍ଚଳରେ ଚାଲିଲା ମୋବାଇଲ ଏସ୍‌ଏମ୍ଏସ୍ ବାର୍ତ୍ତାର ଅଭିଯାନ । ଓଡ଼ିଶାର ବ୍ରହ୍ମପୁର, ଭୁବନେଶ୍ୱର ପରି ବିଭିନ୍ନ ସହରରେ ଲାଗିଲା ବଡ଼ ବଡ଼ ହୋଡ଼ିଂ । ଖବରକାଗଜ ଓ ଇଲେକ୍‌ଟ୍ରୋନିକ୍ସ ଗଣମାଧ୍ୟମରେ ପ୍ରକାଶିତ ଓ ପ୍ରଚାରିତ ହେଲା ବିଜ୍ଞାପନ । ସବୁଠି ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍‌କୁ ଏସ୍‌ଏମ୍ଏସ୍ ମାଧ୍ୟମରେ ବିଜୟୀ କରାଇବା ପାଇଁ ଅନୁରୋଧ । ଏପରିକି ସହରଠାରୁ ଗାଁ ପର୍ଯ୍ୟନ୍ତ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କଠାରୁ ଆରମ୍ଭ କରି ସ୍କୁଲ କଲେଜ ଛାତ୍ରଛାତ୍ରୀ, ପୁରୁଷ, ମହିଳା, ସରକାରୀ କର୍ମଚାରୀ, ରାଜନେତା ସମସ୍ତେ ଏସ୍.ଏମ୍.ଏସ୍. କରି ଭୋଟ୍ ଦେଲେ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍‌କୁ । ବିଭିନ୍ନ କର୍ପୋରେଟ୍ ସଂସ୍ଥାଗୁଡ଼ିକୁ ମଧ୍ୟ ଜୋର୍‌ଦାର୍ କଲେ ଏସ୍.ଏମ୍.ଏସ୍. ଅଭିଯାନକୁ । ପୁଣି କେଉଁ ମନ୍ଦିରରେ ପ୍ରିନ୍ସ ଗ୍ରୁପ୍‌ର ବିଜୟ ପାଇଁ ଚାଲିଲା ପୂଜାର୍ଚ୍ଚନା ତ କେଉଁଠି ଜଳିଲା ଦୀପ । କେଉଁଠି ରୋଡ୍ ସୋ ତ କେଉଁଠି ଏସ୍.ଏମ୍.ଏସ୍. ଭୋଟିଂ ପାଇଁ ଶୋଭାଯାତ୍ରା । ସାରା ଓଡ଼ିଶାବାସୀ ଏକାଠି ହୋଇଥିଲେ ପ୍ରିନ୍ସକୁ ବିଜୟର ମୁକୁଟ ପିନ୍ଧାଇବା ପାଇଁ । ଦିନ-ରାତି ଲାଗି ପଡ଼ିଥିଲେ ସମସ୍ତେ ।

### ମୁଖ୍ୟମନ୍ତ୍ରୀଙ୍କ ଅଭିନନ୍ଦନ

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଶୁଭେଚ୍ଛା ଓ ଆଶୀର୍ବାଦ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍‌କୁ ଉତ୍ସାହିତ କରିଥିଲା - ନୃତ୍ୟ ପରିବେଷଣ ପାଇଁ ପ୍ରେରଣା ଦେଇଥିଲା । ସେମିଫାଇନାଲରେ ସଫଳତା ପରେ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍‌ର ମୁଖ୍ୟ କ୍ରିଷ୍ଣାଙ୍କୁ ଅଭିନନ୍ଦନ ଜଣାଇଥିଲେ ମୁଖ୍ୟମନ୍ତ୍ରୀ, ଯାହା ତାଙ୍କୁ ଅଧିକ ସାହସ ଓ ଶକ୍ତି ଯୋଗାଇଥିଲା । ସେ ଅନୁଭବ କରିଥିଲେ ଯେ ତାଙ୍କ ପଛରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ସହ ସାରା ଓଡ଼ିଶାବାସୀ ଅଛନ୍ତି । ଆଉ ପଛକୁ ନ ଚାହିଁ କ୍ରିଷ୍ଣା ଲାଗି ପଡ଼ିଥିଲେ

ଫାଇନାଲ ରାଉଣ୍ଡରେ କେମିତି ସଫଳତା ପାଇବେ ଓ କେମିତି ବିଜୟୀ ହେବ ପ୍ରିନ୍ସ ଗ୍ରୁପ୍ ! କେମିତି ଉଜ୍ଜ୍ୱଳ କରିବେ ଓଡ଼ିଶାର ନାଁ ! ଦିନ ରାତି ଏକ କରି ଦେଇଥିଲେ ନୃତ୍ୟ ଅଭ୍ୟାସରେ । ଦଳର ସବୁ କଳାକାରଙ୍କ ପରିଶ୍ରମ ଓ ନିଷ୍ଠା ଯୋଗୁଁ ସେ ଚାମ୍ପିଆନ୍ ମଧ ହେଲେ । ଗ୍ରାଣ୍ଡ ଫାଇନାଲରେ ଚାମ୍ପିଆନ୍ ହେବା ପରେ ପୁଣି ମୁଖ୍ୟମନ୍ତ୍ରୀ ଶୁଭେଚ୍ଛା ଜଣାଇଥିଲେ ପ୍ରିନ୍ସର ମୁଖ୍ୟ କ୍ରିଷ୍ଣାଙ୍କୁ । ପୁରୁଷୋତ୍ତମପୁର ରାସ୍ତାରେ ଶୀତଳାପଲ୍ଲୀଠାରେ ଡ୍ୟାନ୍ସ ଏକାଡ଼େମୀ ପ୍ରତିଷ୍ଠା ପାଇଁ ୪ ଏକର ଜମି ଯୋଗାଇ ଦିଆଯିବ ବୋଲି ମୁଖ୍ୟମନ୍ତ୍ରୀ ପ୍ରତିଶ୍ରୁତି ଦେଇଛନ୍ତି । ଓଡ଼ିଶାକୁ ପ୍ରିନ୍ସ ଗ୍ରୁପ୍ ଫେରିବା ପରେ ସ୍ୱତନ୍ତ୍ର ଭାବେ ସଚିବାଳୟଠାରେ ଦଳର ସମସ୍ତଙ୍କ କଳାକାରଙ୍କୁ ସମ୍ବର୍ଦ୍ଧିତ କରିଥିଲେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ । ଯାହା ଏହି କଳାକାରମାନଙ୍କ ପାଇଁ ଥିଲା ଏକ ନିଆରା ଅନୁଭୂତି । ପ୍ରିନ୍ସ ଡ୍ୟାନ୍ସ ଗ୍ରୁପକୁ ରାଜ୍ୟ ସରକାର ବିଶ୍ୱ ପ୍ରତିଯୋଗିତା ପାଇଁ ପଠାଇବେ । ସଚିବାଳୟଠାରେ ପ୍ରିନ୍ସ ଗ୍ରୁପକୁ ରାଜ୍ୟ ସରକାର ବିଶ୍ୱ ବିଜୟ ପାଇଁ ପଠାଇବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଭୁବନେଶ୍ୱରଠାରେ ଆସନ୍ତା ଜାନୁଆରୀ ମାସରେ ହେବାକୁ ଥିବା ନ୍ୟାସନାଲ ଗେମ୍‌ସରେ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍ ନୃତ୍ୟ ପରିବେଷଣ କରିବେ ବୋଲି ମୁଖ୍ୟମନ୍ତ୍ରୀ ମଧ ଘୋଷଣା କରିଛନ୍ତି । ସେହିପରି ୨୦୧୦ ଅକ୍ଟୋବରରେ ଦିଲ୍ଲୀରେ ହେବାକୁ ଥିବା କମନ୍ ୱେଲ୍‌ଥ ଗେମ୍‌ସରେ ମଧ ଏହି ଗ୍ରୁପ୍ ନୃତ୍ୟ ପରିବେଷଣ କରିବାକୁ ମୁଖ୍ୟମନ୍ତ୍ରୀ କେନ୍ଦ୍ର କ୍ରୀଡ଼ା ମନ୍ତ୍ରୀ ଏମ୍.ଏସ୍. ଗିଲ୍‌ଙ୍କୁ ପତ୍ର ଲେଖିବେ ବୋଲି କହିଛନ୍ତି । ପୂର୍ବରୁ ମୁଖ୍ୟମନ୍ତ୍ରୀ ଘୋଷଣା କରିଥିଲେ ଯେ ଓ.ଏମ୍.ସି. ଜରିଆରେ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପକୁ ଲଣ୍ଡନ ଓ ନ୍ୟୁୟର୍କ ପଠାଯିବ । ସେଠାରେ ସେମାନେ ନୃତ୍ୟ ପରିବେଷଣ କରିବା ସହ ବିଦେଶରେ ଜ୍ଞାନ ଆହରଣ କରିବେ । ମୁଖ୍ୟମନ୍ତ୍ରୀଙ୍କ ଏହି ପ୍ରତିଶ୍ରୁତି ଓ ପ୍ରେରଣା ଆଗାମୀ ଦିନରେ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପକୁ ଆହୁରି ଆଗକୁ ବଢ଼ିବା ପାଇଁ ବାଟ ଦେଖାଇବ ନିଶ୍ଚିତ ଭାବେ ।

**ସଫଳତାର ପାହାଚ**

କେବଳ ଇଣ୍ଡିଆଜ ଗଟ୍ ଟ୍ୟାଲେଣ୍ଟ ସୋ'ରେ ନୁହେଁ ଏହା ପୂର୍ବରୁ ବହୁ ସୋ'ରେ ନୃତ୍ୟ ପ୍ରଦର୍ଶନ କରି ପ୍ରିନ୍ସ ଗ୍ରୁପକୁ ବେଶ୍ ସଫଳତା ମିଳିଛି । 'ଜେମିନି ଟିଭି'ର 'ଡ୍ୟାନ୍ସ ବେବି ଡ୍ୟାନ୍ସ', ଇଟିଭି ଓଡ଼ିଶାର 'ୱାନ୍ ଟୁ ଚା ଚା' ଆଦି କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରି ଉଚ୍ଚକୋଟୀର ନୃତ୍ୟ ପ୍ରଦର୍ଶନ କରିଥିଲେ ସେମାନେ । ଯାହା ଦର୍ଶକଙ୍କୁ ଅଭିଭୂତ କରିଥିଲା ପ୍ରିନ୍ସ ଡ୍ୟାନ୍ସ ଗ୍ରୁପର ନୃତ୍ୟ । ଏହା ବ୍ୟତୀତ ମା' ଟିଭି, ଇ-ଟିଭି ତେଲୁଗୁ, ଜି-ଟିଭି ତେଲୁଗୁ, ସୋନି ଟିଭିରେ ଆଦିରେ ଚମତ୍କାର ନୃତ୍ୟ ପରିବେଷଣ କରି ଦର୍ଶକଙ୍କୁ ଚକିତ କରିଛନ୍ତି । ଓଡ଼ିଶା ସମେତ ମୁମ୍ବାଇ, ଦିଲ୍ଲୀ, କୋଲକାତା, ଗୌହାଟି, ରାଜସ୍ଥାନ, ଗୁଜରାଟ, ହାଇଦ୍ରାବାଦ ଆଦି ସ୍ଥାନରେ ନୃତ୍ୟ ପରିବେଷଣ କରି ଦର୍ଶକମାନଙ୍କ ହୃଦୟକୁ ଜୟ କରି ପାରିଛନ୍ତି । ଆଉ ସଫଳତାର ଗୋଟିଏ ପରେ ଗୋଟିଏ ସିଢ଼ି ଚଢ଼ିବାର ଲାଗିଛନ୍ତି । 'ଇଣ୍ଡିଆଜ୍ ଗଟ୍ ଟାଲେଣ୍ଟ' ସୋରେ ଚାମ୍ପିଆନ୍ ହେବା ପ୍ରିନ୍ସ ଏବେ ଭାରତର କିଙ୍ଗ । ନୃତ୍ୟ ପରିବେଷଣ ପାଇଁ ଦେଶବିଦେଶରୁ ନିମନ୍ତ୍ରଣ ଆସିବାରେ ଲାଗିଛି । ଜାତୀୟ ସ୍ତରରେ ଏକ ବଡ଼ ସଫଳତା ପାଇବା ପରେ ପ୍ରିନ୍ସ ଗ୍ରୁପର କଳାକାରମାନଙ୍କ ମନୋବଳ ଓ ଉତ୍ସାହ ଦ୍ୱିଗୁଣିତ ହୋଇଛି । ଆଗକୁ ଆହୁରି ଅଧିକ କିଛି କରି ଦେଖାଇବା ପାଇଁ ସେମାନଙ୍କ ଭିତରେ ସୃଷ୍ଟି ହୋଇଛି ଆଗ୍ରହ ଓ ଉତ୍ସାହ । ଆମ୍ବପୁଆର ଦିନ ମଜୁରିଆ ଯୁବ କଳାକାରମାନଙ୍କୁ ନେଇ ପ୍ରିନ୍ସ ଗ୍ରୁପର ମୁଖ କ୍ରିଷ୍ଣାଙ୍କ ରହିଛି ଅନେକ ସ୍ୱପ୍ନ ଓ ଲକ୍ଷ୍ୟ ।

ଓଡ଼ିଶାକୁ ଫେରିବା ପରେ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପକୁ ଦିଆଯାଇଥିଲା ଉଚ୍ଛ୍ୱସିତ ସମ୍ବର୍ଦ୍ଧନା । ଅନେକ ବ୍ୟକ୍ତି ବିଶେଷ ଓ ଅନୁଷ୍ଠାନ ସହଯୋଗର ହାତ ବଢ଼ାଇଲେ । ଅନୁଗୁଳର କାଂଶୁ କନ୍‌ସଲ୍‌ଟାନ୍ସୀ ପକ୍ଷରୁ ପୁରୀରେ ଦୁଇ ହଜାର ବର୍ଗ ଫୁଟର ଏକ ପ୍ଲଟ୍ ଯୋଗାଇ ଦିଆଯାଇଛି । ଓଡ଼ିଶା ଗର୍ବ ଓ ଗୌରବ ପ୍ରିନ୍ସ ଡ୍ୟାନ୍ସ ଗ୍ରୁପକୁ ବିଭିନ୍ନ ମହଲରୁ ଶୁଭେଚ୍ଛା ଓ ଅଭିନନ୍ଦନ ଆସିବାରେ ଲାଗିଛି । ଏଥିରୁ ଜଣାପଡ଼ି ଯାଉଛି ପ୍ରିନ୍ସ ଗ୍ରୁପର ଲୋକପ୍ରିୟତା ।

ବ୍ରହ୍ମପୁର ଆମ୍ବପୁଆର ପ୍ରିନ୍ସ ଡ୍ୟାନ୍ସ ଗ୍ରୁପର ସଫଳତାରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ, ଓଡ଼ିଶାରେ ପ୍ରତିଭାର ଅଭାବ ନାହିଁ । କେବଳ ଦରକାର ସୁଯୋଗ ଓ ପ୍ରୋତ୍ସାହନ । ଓଡ଼ିଶାର କଳାକାର ବିଶ୍ୱ ଦରବାରରେ ନିଶ୍ଚୟ ଗୌରବର ବାନା ଉଡ଼ାଇବେ ଏହା ନିଃସନ୍ଦେହରେ କୁହାଯାଇପାରେ । ତେବେ ଆସନ୍ତୁ ଆମେ ସମସ୍ତେ ଏକାଠି ହୋଇ ଓଡ଼ିଶା କଳା ଓ ସଂସ୍କୃତିକୁ ବଞ୍ଚାଇ ରଖିବା ସଙ୍ଗେ ସଙ୍ଗେ ପ୍ରଚାର ଓ ପ୍ରସାର କରିବା ଓଡ଼ିଶାର କୀର୍ତ୍ତି ଓ ଗୌରବମୟ କଳା ଓ ସଂସ୍କୃତିର ।

ଏଫ୍-୩୯/୧, ରେଣ୍ଟାଲ କଲୋନି
ପୋ- ଆଇ.ଆର୍.ସି. ଭିଲେଜ୍, ନୟାପଲ୍ଲୀ
ଭୁବନେଶ୍ୱର-୭୫୧୦୧୫

# ସ୍ୱାଇନ୍ ଫ୍ଲୁ : ସଚେତନତା ଓ ଚିକିତ୍ସା ପଦ୍ଧତି

ଡାଃ ତ୍ରୈଲୋକ୍ୟନାଥ ମହାରଣା

**ସ**ମଗ୍ର ବିଶ୍ୱରେ ଏଡ୍ସ ପରେ ଏବେ ଯେଉଁ ସଂକ୍ରାମକ ବ୍ୟାଧି ଆତଙ୍କ ସୃଷ୍ଟି କରି ବସିଛି ତାକୁ ସ୍ୱାଇନ୍ ଫ୍ଲୁ ବୋଲି ନାମକରଣ କରାଯାଇଛି । ମେକ୍ସିକୋ, ଆମେରିକା ଆଦି ୭୪ଟି ଦେଶରେ ଗତ ଏପ୍ରିଲ ମାସରୁ ଏହି ଇନ୍‌ଫ୍ଲୁଏଞ୍ଜା ଭୂତାଣୁର ସଂକ୍ରମଣ ଯୋଗୁଁ ଅନେକ ଲୋକ ପୀଡ଼ିତ ହୋଇ ମୃତ୍ୟୁବରଣ କରିଛନ୍ତି । ଆମ ଦେଶରେ ଏବେ ୧୨ ଶହରୁ ଉର୍ଦ୍ଧ୍ୱ ସାଧାରଣ ରୋଗୀ ବର୍ତ୍ତମାନ ଏ ରୋଗର ବାହକ ଭୂତାଣୁଦ୍ୱାରା ସଂକ୍ରମିତ ଓ ଏହି ସ୍ୱାଇନ ଫ୍ଲୁଦ୍ୱାରା ପୀଡ଼ିତ ହୋଇ ଥିବା ଖବର ପ୍ରଚାର ହେବା ପରେ ଦେଶରେ ଏକ ଆତଙ୍କର ବାତାବରଣ ସୃଷ୍ଟି ହୋଇଛି । ଏ ମଧ୍ୟରେ ପୁନେ, ବାଙ୍ଗାଲୋର, ଅହମ୍ମଦାବାଦ, ନାସିକ, ଚେନ୍ନାଇ, ମୁମ୍ବାଇ, ରାୟପୁର ଆଦି ସହରରେ କେଇଘଣ୍ଟା ମଧ୍ୟରେ ୨୬ ଜଣଙ୍କ ମୃତ୍ୟୁ ଖବର ଦେଶବାସୀଙ୍କୁ ଆତଙ୍କିତ କରି ପକାଇ ଥିଲା । ଆମ ରାଜ୍ୟରେ ୧୯ ଜଣଙ୍କ ସ୍ୱାବ (ପାଟିର ଲାଳ) ପରୀକ୍ଷା ପରେ ୨ ଜଣଙ୍କ ସ୍ୱାବ ପଜେଟିଭ ଆସିବା ପରେ ୨ ଜଣଙ୍କୁ ସ୍ୱାଇନ ଫ୍ଲୁ ହୋଇଥିବା ପ୍ରମାଣିତ ହୋଇସାରିଛି । ଏ ମଧ୍ୟରେ ପୁନେରେ କାମ କରୁଥିବା ଗଞ୍ଜାମ ତୁମ୍ବାର ଗଣେଶ ନାୟକଙ୍କ ସ୍ୱାଇନ ଫ୍ଲୁଜନିତ ମୃତ ଦେହ ରାଜ୍ୟରେ ପହଞ୍ଚିବା ଏବଂ ନିଜ ଗ୍ରାମ ଲୋକେ ତାଙ୍କ ଶବର ସଂସ୍କାର ପାଇଁ ଆଗେଇ ନ ଆସିବା ଆଦି ପ୍ରଚାରିତ ହେବା ପରେ ରାଜ୍ୟରେ ସ୍ୱାଇନ ଫ୍ଲୁ ଆତଙ୍କ ବଢ଼ିଯାଇଛି । ଦାଦନ ଶ୍ରମିକ ଥିବା ରାଜ୍ୟ ଓଡ଼ିଶାକୁ ସ୍ୱାଇନ ଫ୍ଲୁ ରୋଗୀଙ୍କ ସଂଖ୍ୟା ବେଶ ବଢ଼ିଯିବାର ସମ୍ଭାବନା ରହିଛି । ଏହାକୁ ଦେଖି ଏ ରୋଗର କାରଣ ଇତିବୃତ୍ତି, ପ୍ରତିଷେଧକ, ଚିକିତ୍ସା ଏବଂ ସ୍ୱଦେଶୀୟ ପୁରାତନ ଚିକିତ୍ସା ଶାସ୍ତ୍ର ଆୟୁର୍ବେଦରେ ବର୍ଣ୍ଣିତ ଚିକିତ୍ସା ସୂତ୍ର ସଂପର୍କରେ ସାଧାରଣରେ ସଚେତନତା ସୃଷ୍ଟି ପାଇଁ ଏ ଲେଖା ଉଦ୍ଦିଷ୍ଟ ।

ସ୍ୱାଇନ ଇନ୍ ଫ୍ଲୁଏଞ୍ଜା ହେଉଛି ଘୁଷୁରୀମାନଙ୍କ ଏକ ସଂକ୍ରମିତ ରୋଗ ଯାହାକି ସ୍ୱାଇନ ଇନ୍ ଫ୍ଲୁଏଞ୍ଜା ଭୂତାଣୁ - କ ଯୋଗୁଁ ସୃଷ୍ଟି ହୋଇଥାଏ । ଘୁଷୁରୀମାନଙ୍କଠାରେ ଏ ରୋଗର ସଂକ୍ରମିତ ହାର ଅଧିକ । ମାତ୍ର ଏମାନଙ୍କ ମୃତ୍ୟୁହାର ୧.୪% ଥାଏ । ଏ ରୋଗର ଭୂତାଣୁ ବାୟୁ ମାଧ୍ୟମରେ କିମ୍ବା ଆକ୍ରାନ୍ତ ଘୁଷୁରୀର ପ୍ରତ୍ୟକ୍ଷ ବା ପରୋକ୍ଷ ସଂସ୍ପର୍ଶରେ ଆସିଲେ ସୁସ୍ଥ ଘୁଷୁରୀଙ୍କଠାରେ ଏ ରୋଗ ସୃଷ୍ଟି କରିଥାଏ । ଘୁଷୁରୀଙ୍କଠାରେ ଏ ରୋଗ ବର୍ଷସାରା ଦେଖାଦେଲେ ମଧ ଶୀତଋତୁରେ ଏ ରୋଗର ମାତ୍ରା ଅଧିକ ଥାଏ । ଏ ରୋଗର ଭୂତାଣୁର ଉପସର୍ଗ ଏଚ୍-୧, ଏନ୍-୧ ସାଧାରଣ ଭାବେ ଦେଖାଦିଏ । ଘୁଷୁରୀମାନଙ୍କଠାରେ ଅନ୍ୟ ଉପସର୍ଗ ଭୂତାଣୁ ଏଚ୍-୧ ଏନ୍-୨, ଏଚ୍-୩, ଏନ୍-୧ ଏଚ୍-୩, ଏନ୍-୨ ମଧ୍ୟ ଏ ରୋଗ ସୃଷ୍ଟି କରିଥାଏ । ଘୁଷୁରୀମାନେ ଆଭିଆନ ଇନ୍‌ଫ୍ଲୁଏଞ୍ଜା ବା ବାର୍ଡ଼ ଫ୍ଲୁ, ମଣିଷର ଋତୁକାଳୀନ ଇନ୍‌ଫ୍ଲୁଏଞ୍ଜା ଏବଂ ସ୍ୱାଇନ୍ ଇନ୍‌ଫ୍ଲୁଏଞ୍ଜା ଭୂତାଣୁଦ୍ୱାରା ସଂକ୍ରମିତ ହୋଇଥାନ୍ତି । ସାଧାରଣତଃ ସ୍ୱାଇନ ଇନ୍‌ଫ୍ଲୁଏଞ୍ଜା ଘୁଷୁରୀ ଜାତିର ଏକ ନିର୍ଦ୍ଦିଷ୍ଟ ରୋଗ ଯାହାକି ମନୁଷ୍ୟକୁ ଆଜି ସଂକ୍ରମିତ କରିଛି ।

ଏହି ଭୂତାଣୁର ରୂପ ଗୋଲାକୃତି ଏବଂ ୮ଟି ଜିନ୍‌ର ସମଷ୍ଟିରେ ଏକ କ୍ଷୁଦ୍ର ପ୍ୟାକେଟ ଯାହାକି ପ୍ରୋଟିନ୍ ଦ୍ୱାରା ଆଚ୍ଛାଦିତ ଏ ଭୂତାଣୁର ବଂଶବୃଦ୍ଧି କେବଳ ଜୀବନ୍ତ ଜୀବକୋଷ ମାଧ୍ୟମରେ ଜୀବକୋଷର ଡି.ଏନ୍.ଏ. ଓ ଅନ୍ୟାନ୍ୟ ଧର୍ମଗୁଣକୁ ନେଇ ସୃଷ୍ଟି ହୋଇଥାଏ । ଶରୀର ପାଇଁ ଅନେକ ଭୂତାଣୁ ବିଶେଷ କ୍ଷତିକାରକ ହୋଇ ନଥିବା ବେଳେ ଫ୍ଲୁ ଭୂତାଣୁ କ୍ଷତି ଘଟାଇ ଥାଏ । ସ୍ୱାଇନ ଫ୍ଲୁ ଭୂତାଣୁ ଅନ୍ୟ ରୋଗଠାରୁ ସ୍ୱତନ୍ତ୍ର । ଏହା ପକ୍ଷୀ, ଘୁଷୁରୀ ଜାତିର ଏବଂ ମନୁଷ୍ୟର ୩ ଗୋଟି ଭୂତାଣୁ ଜିନ୍‌ର ସମଷ୍ଟିରେ ସଂଗଠିତ ଯାହାକି ଅନ୍ୟ କେଉଁଠାରେ ଦେଖାଯାଏ ନାହିଁ । ତେଣୁ ଏହି ରୋଗ ବିରୋଧରେ ଲଢ଼ିବାର ରୋଗ ପ୍ରତିଷେଧକ ଶକ୍ତି ବା ଇମ୍ୟୁନ୍ ପାୱାର ମନୁଷ୍ୟଠାରେ ସୃଷ୍ଟି ହୋଇପାରି ନଥାଏ । ୧୯୧୮ ମସିହାରେ ଏ ଭୂତାଣୁ କୁକୁଡ଼ାଠାରେ ଉତ୍ପତ୍ତି ହୋଇଥିଲା । ପରେ ମନୁଷ୍ୟଙ୍କୁ ସଂକ୍ରମିତ କରିଥିଲା ।

ସେହି ବର୍ଷ ଏ ପ୍ରକାର ଭୂତାଣୁ ଉପସର୍ଗ ଏଚ୍-୧ ଏନ୍-୧ ଘୁଷୁରୀଠାରୁ ଏକ ୫ ବର୍ଷ ବାଳକଠାରେ ମେକ୍ସିକୋର ଭେରାକ୍ରୁଜଠାରେ ପ୍ରକାଶ କରିଥିଲା ଓ ସେଠାରୁ ଅନ୍ୟ ମନୁଷ୍ୟଙ୍କୁ ମଧ୍ୟ ସଂକ୍ରମିତ କରିଥିଲା । ୧୯୧୮ରୁ ୧୯୧୯ ମସିହା ମଧ୍ୟରେ ସମଗ୍ର ବିଶ୍ୱରେ ୧୦ ନିୟୁତ ଲୋକଙ୍କୁ ଏଚ୍-୧, ଏନ୍-୧ ଭୂତାଣୁ ମୃତ୍ୟୁମୁଖରେ ପକାଇଥିଲା । ସ୍ୱାଇନ ଫ୍ଲୁ ଭୂତାଣୁ ଉପରି ଭାଗରେ ୨ ପ୍ରକାର ଗ୍ଲାଇକୋ ପ୍ରୋଟିନ, ପ୍ରୋଜେକ୍ସନ ଯଥା- ହିମାଗ୍ଲୁଟିନ ଓ ନିୟୁରାମିନି ଡେଜ୍ ନିହିତ ଥାଏ, ଯାହା ପାଇଁକି ଏ ଭୂତାଣୁର ସଂକ୍ରମଣ ଏବଂ ବଂଶୋବୃଦ୍ଧିରେ ଯଥେଷ୍ଟ ସାହାଯ୍ୟ କରେ । ଏହି ଏଚ୍ ପ୍ରୋଟିନରୁ ୧୬ ଉପସର୍ଗ ଥିବା ସ୍ଥଳେ ଏନ୍-ପ୍ରୋଟିନରୁ ୯ ଉପସର୍ଗ ଆଣ୍ଟିଜେନିକ ପ୍ରୋଟିନ ଉକ୍ତ ଭୂତାଣୁରେ ନିହିତ ଥାଏ । ଏହାଦ୍ୱାରା ଏହି ଭୂତାଣୁ ଏଚ୍-୧୬ x ଏନ୍-୮ ବା ୧୪୪ ପ୍ରକାର ଭୂତାଣୁର ରୂପ ବା ଆକାର ସୃଷ୍ଟି ହେବାର ସମ୍ଭାବନା ଥାଏ । ଏଣୁ ଏ ଭୂତାଣୁ ମନୁଷ୍ୟ ଶରୀରରେ ସଂକ୍ରମିତ ହେବାପରେ ଏନ୍ ପ୍ରୋଟିନ୍ ଜୀବକୋଷ ମଧ୍ୟକୁ ବାଟ ସୃଷ୍ଟି କରେ । ଯାହାଦ୍ୱାରା ସେ ରାସ୍ତା ଦେଇ ସୃଷ୍ଟି ନୂତନ ଭୂତାଣୁ ଅନ୍ୟ ଜୀବକୋଷକୁ ଶୀଘ୍ର ସଂକ୍ରମିତ କରିଚାଲେ ।

ସ୍ୱାଇନ୍ ଫ୍ଲୁ ଇନ୍ ଫ୍ଲୁଏଞ୍ଜା (ଏଚ୍-୧, ଏନ୍-୧) ରୋଗର ଲକ୍ଷଣଦ୍ୱାରା ଶରୀର ମଧ୍ୟରେ ଜ୍ୱର ଲାଗି ରହିବା, କାଶ, କଫ ଓ ଗଳା ବା ତଣ୍ଟି ଦରଜ ହେବା, ମୁଣ୍ଡବିନ୍ଧା, ଶରୀର ଅଷ୍ଟାଙ୍ଗ ଘୋଳାବିନ୍ଧା ବା ଦରଜ ହେବା, ତରଳ ଝାଡ଼ା, ବାନ୍ତି ହେବା ନିଃଶ୍ୱାସ ପ୍ରଶ୍ୱାସରେ କଷ୍ଟ ଅନୁଭବ କରିବା, ଦୁର୍ବଳତା ଅନୁଭବ ଆଦି ଲକ୍ଷଣ ପ୍ରକାଶ ପାଏ । ଅନେକଠାରେ ଏ ରୋଗ ବିନା ଲକ୍ଷଣରେ ସଂକ୍ରମିତ ହେବା ସହ ଇନ୍ ଫ୍ଲୁଏଞ୍ଜା ବା ନିମୋନିଆ ଆକ୍ରାନ୍ତ ହୋଇ ମୃତ୍ୟୁମୁଖରେ ପଡ଼ିଥାଏ । ଏଣୁ ଏ ପ୍ରକାର ଲକ୍ଷଣ ପ୍ରକାଶ ପାଇଲେ ୧ରୁ ୭ ଦିନ ମଧ୍ୟରେ ରୋଗ ପ୍ରତି ଧ୍ୟାନ ଦେବା ଜରୁରୀ । ପିଲାମାନଙ୍କ କ୍ଷେତ୍ରରେ ୧ରୁ ୭ ଦିନ ଏବଂ ବୟସ୍କଙ୍କ କ୍ଷେତ୍ରରେ ୧ରୁ ୩ ଦିନ ବିଶେଷ ଧ୍ୟାନ ଦେବା ଜରୁରୀ ।

ସାତଦିନ ପର୍ଯ୍ୟନ୍ତ ଘରେ ରହିବା ବା ଡାକ୍ତରଖାନାର ସ୍ୱତନ୍ତ୍ର କୋଠରୀ (isolated room)ରେ ରହିବା ସହିତ ସଂପୂର୍ଣ୍ଣ ଲକ୍ଷଣ ହ୍ରାସ ପାଇବାର ୨୪ ଘଣ୍ଟା ପର୍ଯ୍ୟନ୍ତ ବାହାରକୁ ଯିବାକୁ ନିବୃତ୍ତ ବା ଦୂରେଇ ରୁହନ୍ତୁ । କାରଣ ଏହାଦ୍ୱାରା ଅନ୍ୟମାନଙ୍କୁ ସଂକ୍ରମିତ ଆଶା ଅଧିକ । ଏ ଭୂତାଣୁ ଅଧିକ ଉତ୍ତାପରେ ଆପେ ଆପେ ନଷ୍ଟ ହୋଇଯାନ୍ତି । ଶିଶୁମାନଙ୍କର ଠିକ୍ ଭାବରେ ଖାଇବା, ପିଇବା, ଶୋଇବା ପ୍ରତି ଧ୍ୟାନ ଦେବା ସହ ଏ ରୋଗରୁ ରକ୍ଷା ପାଇବାର ଉପାୟ ଶିକ୍ଷା ଦେବାଦ୍ୱାରା ସଂକ୍ରମଣକୁ ପ୍ରତିହତ କରାଯାଇପାରିଥାଏ ।

ବିଶ୍ୱସ୍ୱାସ୍ଥ୍ୟ ସଂଗଠନ ବା ଡବ୍ଲ୍ୟୁ.ଏଚ୍.ଓ. ଏହି ସାଇନ ଫ୍ଲୁ ବିରୋଧରେ ପ୍ରତିଷେଧକ ଟୀକା ପ୍ରସ୍ତୁତି ପାଇଁ ପ୍ରୟାସ ଜାରି ରଖିଛି । ଏଯାବତ୍ ଏ ରୋଗର ଚିକିତ୍ସା ପାଇଁ ୨ ପ୍ରକାର ଔଷଧ ବ୍ୟବହୃତ ହେଉଛି । ପ୍ରଥମଟି ଅଡାମାଣ୍ଟନ୍ସ (ଆମାଣ୍ଟାଡ଼ିନ୍ ଓ ରେମାଣ୍ଟାଡ଼ିନ୍) ଓ ଦ୍ୱିତୀୟଟି ହେଉଛି ଭୂତାଣୁର ନିଉରାମିନିଡ଼େକ୍ ଇନ୍ ହିଟଟର (ଓସେଲଟାମିଭିର ଓ ଜାନାମିଭିର) । ତେବେ ପୂର୍ବରୁ ବ୍ୟବହାର ହେଉଥିବା ଔଷଧ ବର୍ତ୍ତମାନ ଆଉ କାର୍ଯ୍ୟକରୁ ନାହିଁ । ବର୍ତ୍ତମାନ ଏ ଇନ୍‌ଫ୍ଲୁଏଞ୍ଜା ଭୂତାଣୁର ଔଷଧ ପ୍ରତି ରେଜିଷ୍ଟାନ୍ସ ବୃଦ୍ଧି ଯୋଗୁଁ ଆଣ୍ଟି ଭାଇରାଲ ଔଷଧ ମଧ୍ୟ ଠିକ୍ କାର୍ଯ୍ୟ କରୁନାହିଁ । ତେବେ ଏଥିପାଇଁ ମିଳୁଥିବା ଔଷଧ (ଟାମିଫ୍ଲୁ) ଚିକିତ୍ସକଙ୍କ ବିନା ଅନୁମତିରେ ବ୍ୟବହାର ଓ ଗ୍ରହଣ କରନ୍ତୁ ନାହିଁ । ଆଣ୍ଟି ଭାଇରାଲ୍ ଔଷଧ ଫ୍ଲୁର ଲକ୍ଷଣକୁ ହ୍ରାସ କରିବାରେ ସାହାଯ୍ୟ କରେ । ତେବେ ସାଧାରଣ ଫ୍ଲୁରେ ଏହାର କୌଣସି ଆବଶ୍ୟକତା ନଥାଏ । ପରିସ୍ଥିତି ଦେଖି ଆଣ୍ଟି ଭାଇରାଲ ଔଷଧ ଗ୍ରହଣ କରାଯାଇଥାଏ । ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ଲହାକୁ ମହାମାରୀ ବୋଲି ଘୋଷଣା କରିଛି । ଏଣୁ ପ୍ରତିରୋଧ ଏ ରୋଗ ପାଇଁ ସର୍ବାଗ୍ରେ ଜରୁରୀ । ଏହା ଏକ ସଂକ୍ରମିତ ବା ଏୟାର୍ ବର୍ଣ୍ଣ ରୋଗ । ଏଣୁ ସଂକ୍ରମିତ ବ୍ୟକ୍ତିଠାରୁ ନିଜକୁ ଦୂରେଇ ରଖିବା ଜରୁରୀ । ଏଥିପାଇଁ ସମ୍ଭାବ୍ୟ ରୋଗୀକୁ ଆପଣ ମାସ୍କ ବା ମୁଖରେ କପଡ଼ା ବାନ୍ଧିବାକୁ ପରାମର୍ଶ ଦିଅନ୍ତୁ ।

ତେବେ ଶିଶୁଙ୍କଠାରେ ଘନ ଘନ ନିଃଶ୍ୱାସପ୍ରଶ୍ୱାସ ନେବା, ଶ୍ୱାସ କ୍ରିୟାରେ କଷ୍ଟ ଅନୁଭବ କରିବା, ଶରୀରର ଚର୍ମ ନୀଳ କିମ୍ବା ଧୂସର ପଡ଼ିଯିବା, ଅଧିକ ପାନୀୟ ଗ୍ରହଣ କରି ନପାରିବା, ଭୟଙ୍କର କିମ୍ବା ଲଗାତର ବାନ୍ତି ହେବା, ଉଠି ନ ପାରିବା କିମ୍ବା କାହାସହ କଥାବାର୍ତ୍ତା କରି ନ ପରିବା, ଅଧିକ ବିରକ୍ତିଭାବ ପ୍ରକାଶ କରିବା, ଜ୍ୱର ଓ କାଶ, କଫ ସ୍ୱାଇନ୍‌ଫ୍ଲୁର ଲକ୍ଷଣ, ଏଣୁ ଚିକିତ୍ସା ଜରୁରୀ ଥାଏ ।

ବୟସ୍କଙ୍କଠାରେ ଶ୍ୱାସକ୍ରିୟାରେ ଜଟିଳତା, ଘନଘନ ଶ୍ୱାସ-ପ୍ରଶ୍ୱାସ ନେବା, ତଳିପେଟରେ, ଛାତିରେ ଯନ୍ତ୍ରଣା ଅନୁଭବ କରିବା, ମୁଣ୍ଡ ବୁଲାଇବା, ବିଭ୍ରାନ୍ତବୋଧ, ବାନ୍ତି, ଜ୍ୱର, ଝାଡ଼ା, କାଶ, କଫ ସୃଷ୍ଟି ସ୍ୱାଇନ୍ ଫ୍ଲୁଜନିତ ଲକ୍ଷଣ ଓ ଏହାର ତୁରନ୍ତ ଚିକିତ୍ସା ଦରକାର ।

ସଂକ୍ରମିତ ରୋଗୀ ଶରୀରରୁ ଏହି ଭୂତାଣୁ ବାୟୁ ମଣ୍ଡଳକୁ ଆସିବା ପରେ ଏହାର ସଂକ୍ରମଣ ସମୟ ଅର୍ଥାତ୍ ଜୀବନ କାଳ ୨ ଘଣ୍ଟାରୁ ୮ ଘଣ୍ଟା ସମୟ ରହିଥାଏ । **ଭୂତାଣୁ ଥିବା ସ୍ଥାନ ବା**

**ଅଂଶକୁ ଯଦି ଜଣେ ସୁସ୍ଥ ବ୍ୟକ୍ତି ଛୁଇଁବା ପରେ ହାତକୁ ପାଟି, ନାକ କିମ୍ବା ଆଖି ସଂସ୍ପର୍ଶରେ ଆଣେ, ତେବେ ସଂକ୍ରମିତ ହୋଇଥାଏ । ରୋଗୀର କଫ, ଛିଙ୍କ ଓ ଶ୍ଳେଷ୍ମାରେ ଏହି ଭୂତାଣୁ ବାୟୁମଣ୍ଡଳକୁ ଆସି ସୁସ୍ଥ ଶରୀରକୁ ସଂକ୍ରମିତ କରିଥାଏ । ଏପରିକି ଏହି ବୁନ୍ଦା କୌଣସି ବସ୍ତୁର ପୃଷ୍ଠ ଭାବରେ ଲାଗି ରହିଲେ ଏବଂ ଏହାକୁ ସୁସ୍ଥ ବ୍ୟକ୍ତି ଯଦି ୨ରୁ ୮ ଘଣ୍ଟା ମଧ୍ୟରେ ଛୁଇଁ ଥାଏ ତେବେ ସଂକ୍ରମିତ ଆଶଙ୍କା ରହିଛି ।** ସ୍ୱାଇନ ଫ୍ଲୁର ଭୟଙ୍କର ରୂପରେ ନିମୋନିଆ ଏବଂ ଫୁସ୍ ଫୁସ୍ ଅକାମୀ ହୋଇ ଶ୍ୱାସ ପ୍ରଶ୍ୱାସ କ୍ରିୟା ବନ୍ଦ ହୋଇ ରୋଗୀର ମୃତ୍ୟୁ ହୁଏ । ରୋଗୀର ରକ୍ତ ନମୂନା, ଗଳାର ନାଳ (ସ୍ରାବ)ର ପରୀକ୍ଷା ପରେ ଏ ରୋଗର ସ୍ପଷ୍ଟତା ଜଣାପଡ଼େ । ଏଥିପାଇଁ ଲାବରୋଟାରୀ ଟେଷ୍ଟର ଆବଶ୍ୟକତା ଥାଏ । ଏଥିପାଇଁ ଡାକ୍ତରଙ୍କ ପରାମର୍ଶ ଗୁରୁତ୍ୱପୂର୍ଣ୍ଣ ।

ସ୍ୱାଇନ୍ ଫ୍ଲୁ ଆୟୁର୍ବେଦୀୟ ନାମକରଣ ଓ ସଫଳ ଚିକିତ୍ସା ସୂତ୍ର ପୁରାତନ ଚିକିତ୍ସା ପନ୍ଥା ମଧ୍ୟରେ ରହିଛି । ଏ ରୋଗର ଲକ୍ଷଣ ବାତ ଶ୍ଳେଷ୍ମିକ ଜ୍ୱର । ଏ ଲକ୍ଷଣ ସହ ସ୍ୱାଇନ ଫ୍ଲୁ ଲକ୍ଷଣ ସାମଞ୍ଜସ୍ୟ ରହୁଛି । ଏଥିରେ ଶରୀରରେ ଶ୍ଳେଷ୍ମା (କଫ) ଏବଂ ବାତ (ବାୟୁ)ର ଦୋଷ କାରଣରୁ ସୃଷ୍ଟି । ଆୟୁର୍ବେଦରେ ମଧ୍ୟ ଉଲ୍ଲେଖ ଅଛି ଏହି ବାତୋଶ୍ଳେଷ୍ମିକ ଜ୍ୱର (ଇନ୍‌ଫ୍ଲୁଏଞ୍ଜା) ବାତ ଓ ଶ୍ଳେଷ୍ମା ଗତ କାରଣରୁ ସନ୍ନିପାତ ଜ୍ୱର ଲକ୍ଷଣର ମଧ୍ୟ ସମାନତା ଥାଏ । ଏ କାରଣରୁ ଏହା ସଂପୂର୍ଣ୍ଣ ସଂକ୍ରାମକ ।

ଏଥିରେ ଭୂତାଣୁ (ଭାଇରସ୍) ଉତ୍ପତ୍ତି ହୋଇ ବାୟୁଦ୍ୱାରା ସଂକ୍ରମିତ କରିଚାଲେ । ଏଥିରେ ଶରୀର ଶ୍ୱାସ ଓ ପ୍ରଶ୍ୱାସଦ୍ୱାରା ସୁସ୍ଥ ଶରୀର ସଂକ୍ରମିତ ହୁଏ ବୋଲି ଉଲ୍ଲେଖ ରହିଛି । ଏ ରୋଗର ନିଦାନ, କ୍ଷଣ, ଚିକିତ୍ସା ଆଦି ସ୍ୱାଇନ ଫ୍ଲୁ ସହିତ ସମାନ ।

ଏ ରୋଗ ଶିରଶୂଳ, ଜ୍ୱର, କମ୍ପ, ବାନ୍ତି, ଅଙ୍ଗମର୍ଦ୍ଦ, ଛାତିରେ ତୀବ୍ର ପୀଡ଼ା, କାଶ, କଫ, ଅଙ୍ଗର ଅବସାଦ, ଦୁର୍ବଳତା, ଝାଡ଼ା ଆଦି ଲକ୍ଷଣ ପ୍ରକାଶ କରେ ।

ତେବେ ଚିକିତ୍ସା ସୂତ୍ରରେ ରୋଗୀକୁ ସଂପୂର୍ଣ୍ଣ ବିଶ୍ରାମ ନେବାକୁ ପରାମର୍ଶ ଦିଆଯାଇଛି । ଲଙ୍ଘନ, ପାଚନ, ଯବାଗୁ ଆଦି ବିଧାନ କରିବା ଜରୁରୀ । ଦୋଷ ପ୍ରବଳ ହେବାଦ୍ୱାରା ବୃହତ୍ କସ୍ତୁରୀ ଭୈରବ, ନାଗବଲ୍ଲୀର ରସ ପ୍ରୟୋଗ କରିବାକୁ ପରାମର୍ଶ ଦିଆଯାଇଛି । ରୋଗୀ ଶୀଘ୍ର ଦୁର୍ବଳ ହୋଇପଡ଼େ । ଏଣୁ ପଥ୍ୟ ବ୍ୟବସ୍ଥାରେ ଉଷ୍ମ ଜଳସେବନ, ଯବାଗୁ ମଣ୍ଡ, ହାଲୁକା ଖାଦ୍ୟ ଗ୍ରହଣ କରିବା ଜରୁରୀ । ଔଷଧ ବ୍ୟବସ୍ଥାରେ ତ୍ରିଭୁବନ କୀର୍ତ୍ତିରସ, ଶୁଦ୍ଧ ଟଙ୍କଣ, ମକରଧ୍ୱଜ, ମହାଲକ୍ଷ୍ମୀ ବିଳାସ ରସ, କୃଷ୍ଣ ଚତୁର୍ମୁଖ, ବିଷମ ଜ୍ୱରାନ୍ତକ ଲୌହ, ବୃ ଚନ୍ଦ୍ରୋଦୟ ମକର ଧ୍ୱଜ, ସଂଜୀବନୀ ବଟୀ, ମହା ମୃତ୍ୟୁଞ୍ଜୟ ରସ, ଅମୃତାରିଷ୍ଟ ଦଶମୂଳାକ୍ୱାଥ, ମହାଦ୍ରାକ୍ଷାରିଷ୍ଟ, କନକାସବ ପ୍ରଭୃତି ବହୁ ଔଷଧର ପ୍ରୟୋଗ ଉଲ୍ଲେଖ ରହିଛି । ସ୍ୱାଇନ ଫ୍ଲୁର ପ୍ରତିରୋଧ ପାଇଁ ନିମ୍ନୋକ୍ତ ବିଧି ଉପରେ ଗୁରୁତ୍ୱ ଦେବା ଆବଶ୍ୟକ ।

୧. ପ୍ରତ୍ୟହ ଗୁଳୁଚୀ ସ୍ୱରସ, ତୁଳସୀ ସ୍ୱରସ, ବାସଙ୍ଗ ସ୍ୱରସ ୩ ଚାମଚରେ ୧ ଚାମଚ ମହୁ ମିଶାଇ ଖାଲିପେଟରେ ପିଇବାଦ୍ୱାରା ଏଥିରୁ ରକ୍ଷା ମିଳେ ଓ ଶରୀରରେ ରୋଗ ପ୍ରତିଷେଧକ ଶକ୍ତି ବୃଦ୍ଧି ହୁଏ ।

୨. ଗୁଳୁଚୀ, ହଳଦୀ, ଲିମ୍ବ, ଶୁଣ୍ଠି, ଗୋଲମରିଚ ଓ ପିପ୍ପଳୀ ଚୂର୍ଣ୍ଣକୁ ସମାନ ମାତ୍ରାରେ ୫ ଗ୍ରାମ ପରିମିତ ଦିନକୁ ୨ ଥର ମହୁ ସହ ସେବନ କରିବାଦ୍ୱାରା ଏ ରୋଗର ପ୍ରତିଷେଧକ ରୂପେ କାର୍ଯ୍ୟ କରେ ।

୩. ଅଦା ରସ, ତୁଳସୀ ରସ, ବାସଙ୍ଗ ରସ ମିଶ୍ରିତ କରି ମହୁ ମିଶାଇ ୨ ଓଳି ସେବନ କଲେ ଏଥିରୁ ରକ୍ଷା ମିଳେ । ରୁମାଲରେ କିମ୍ବା ନସ୍ୟ ଭାବରେ ନୀଳଗିରି ତୈଳ, ଷଡ଼ବିନ୍ଦୁ ତୈଳ ବ୍ୟବହାର କଲେ ଏ ରୋଗର ପ୍ରତିଷେଧକ ହୋଇଥାଏ ।

ପ୍ରତ୍ୟହ ଆସନ ପ୍ରାଣାୟାମ କରିବାଦ୍ୱାରା ଶରୀରରେ ଶକ୍ତି ଉତ୍ପନ୍ନ ହୁଏ । ଏହା ଏ ଭୂତାଣୁ ସହ ଲଢ଼ିବା ପାଇଁ ରୋଗ ପ୍ରତିରୋଧକ ଶକ୍ତି ଉପନ୍ନ କରେ । ସେ ଭଳି ହୋମିଓପ୍ୟାଥିକ ଚିକିତ୍ସାରେ ମଧ୍ୟ ତୁଳସୀ ରସରୁ ପ୍ରସ୍ତୁତ (ଓସିମମ୍ ସାନ୍‌ଟ୍ରମ) ଶଂଖିଆ ବିଷରୁ ପ୍ରସ୍ତୁତ (ଆର୍‌ସେନିକ୍), ଜେଲସିୟମ, ଆଲିୟମ ସିମ୍ପା, ଫେରମ ଫସ୍ ଆଦି ଔଷଧ ସ୍ୱାଇନ ଫ୍ଲୁକୁ ପ୍ରତିଷେଧକ ବା ଚିକିତ୍ସାରେ ଉପଯୋଗ କରାଯାଇ ପାରୁଛି । ସଫଳତା ମଧ୍ୟ ମିଳୁଛି ।

ଏ ରୋଗର ଚିକିତ୍ସା ବିଧାନରେ ପ୍ରଥମେ ସୁସ୍ଥ ଲୋକଙ୍କର ରୋଗ ପ୍ରତିରୋଧକ ଶକ୍ତି ବଢ଼ାଇବା, ସ୍ୱାଇନ୍ ଫ୍ଲୁ ଆକ୍ରାନ୍ତ ରୋଗୀର ଚିକିତ୍ସା ଏବଂ ଅନ୍ୟ ରୋଗର କେତେକ ଲକ୍ଷଣ ଥାଇ ସ୍ୱାଇନ୍ ଫ୍ଲୁ ଚିକିତ୍ସା ଆବଶ୍ୟକ ହୁଏ । ଏଥିସହ ପ୍ରତିଷେଧକ ବ୍ୟବସ୍ଥାକୁ ପ୍ରଚାରିତ କରିବା, ଗୁରୁତ୍ୱ ଦେବାଦ୍ୱାରା ଏହାକୁ ସହଜରେ ପ୍ରତିରୋଧ କରାଯାଏ ।

୧. ଅସୁସ୍ଥ ବ୍ୟକ୍ତିଙ୍କଠାରୁ ଦୂରେଇ ରୁହନ୍ତୁ । ଏ କ୍ଷେତ୍ରରେ ଘରେ ରୁହନ୍ତୁ । ସ୍କୁଲ, କଲେଜ କିମ୍ବା କାର୍ଯ୍ୟାଳୟକୁ ଯାଆନ୍ତୁ ନାହିଁ । ଅନ୍ୟମାନେ ଆକ୍ରାନ୍ତ ହେବାର ଆଶଙ୍କା ବେଶୀ ।

୨.  ଜନ ଗହଳିପୂର୍ଣ୍ଣ ସ୍ଥାନରେ ଅଧିକ ସମୟ ବିତାନ୍ତୁ ନାହିଁ ।

୩.  ରହୁଥିବା ଘର ଝରକା ଖୋଲି ବାୟୁ ଚଳାଚଳ ବ୍ୟବସ୍ଥା କରନ୍ତୁ ।

୪.  ସୁଷମ ଖାଦ୍ୟ, ପାନୀୟ, ବିଶ୍ରାମ, ନିଦ୍ରା ବ୍ୟବସ୍ଥା କରନ୍ତୁ । ପୁଷ୍ଟିକର ଖାଦ୍ୟ, ଶାରୀରିକ ସୁସ୍ଥତା ପ୍ରତି ଧ୍ୟାନ ଦେବା ଆବଶ୍ୟକ । ପଶୁମାଂସ ଖାଦ୍ୟ ସେବନଠାରୁ ନିଜକୁ ଦୂରେଇ ରଖନ୍ତୁ ।

୫.  ଖାଇବା ଓ ବିଶ୍ରାମ ନେବା ପୂର୍ବରୁ ଗୋଡ଼ହାତ, ମୁହଁ ସଂପୂର୍ଣ୍ଣ ଭାବେ ପରିଷ୍କାର କରନ୍ତୁ ।

୬.  ଟ୍ରେନ୍, ଜନଗହଳି ରାସ୍ତାରେ ଯାତ୍ରାବେଳେ ମାସ୍କ ରୁମାଲ ଦେଇ ମୁହଁ ବନ୍ଦ ରଖନ୍ତୁ ।

୭.  କାଶିବା, ଛିଙ୍କିବା ବେଳେ ପାଟି ଓ ନାକରେ ରୁମାଲ ଦେଇ କାଶନ୍ତୁ । ଛେପ, ଖଙ୍କାର ଏଣେତେଣେ ପକାନ୍ତୁ ନାହିଁ ।

ଅଧିକ ସୂଚନା ଓ ଯୋଗାଯୋଗ ପାଇଁ ୦୬୭୪-୨୩୯୦୪୬୬, ୦୬୭୪-୦୩୯୦୬୮୮, ୦୧୧-୨୩୯୧୪୦୧କୁ ଡାକନ୍ତୁ । ସବିଶେଷ ତଥ୍ୟ ଜାଣିବା ପାଇଁ www.swinefluindia.com ଏବଂ www.swineflue_india.org ଭଳି ୱେବ୍‌ସାଇଟ୍‌କୁ ନିୟମିତ ଦେଖନ୍ତୁ ।

ଆମ ରାଜ୍ୟରେ ସହର ତଳି ଆବର୍ଜନା ପୂର୍ଣ୍ଣସ୍ଥାନ, ରେଳଷ୍ଟେସନ୍‌ର ତଳି ଅଞ୍ଚଳ, ଯେଉଁଠାରେ କାଦୁଅପଙ୍କ ଓ ଆବର୍ଜନା ଏ ରୋଗର ଆଶଙ୍କାକୁ ଅଧିକ କରେ ସେଠାରୁ ନିଜକୁ ଦୂରେଇ ରଖିବା ଆବଶ୍ୟକ ।

ଆମ ରାଜ୍ୟର ପ୍ରାଦେଶିକ ସଂକ୍ରମଣ ସୁରକ୍ଷା ବ୍ୟବସ୍ଥାକୁ କଡ଼ାକଡ଼ି କରିବା ଜରୁରୀ । ସ୍ୱାଇନ ଫ୍ଲୁର ପରୀକ୍ଷା ପାଇଁ ଘରୋଇ ପରୀକ୍ଷାଗାରକୁ ଅନୁମତି ଦେବା ଦରକାର । ବିଭିନ୍ନ ରାଷ୍ଟ୍ରରେ ତଥା ଆମଦେଶରେ ଯେଉଁ ଅନୁପାତରେ ଏହି ରୋଗୀଙ୍କ ସଂଖ୍ୟା ବଢ଼ିବାରେ ଲାଗିଛି, ତାକୁ ଦେଖି ସରକାର, ସ୍ୱେଚ୍ଛାସେବୀ ସଂଗଠନ, ବିଭିନ୍ନ ବେସରକାରୀ ସଂଗଠନ ଏ ରୋଗର ଚିକିତ୍ସା ପ୍ରତିଷେଧକ ମାର୍ଗ ପ୍ରତି ଗୁରୁତ୍ୱ ଦେଇ ପ୍ରଚାର କଲେ, ଏଥିରୁ ଆମେ ମୁକ୍ତି ପାଇପାରିବା । ନଚେତ୍ ଜନ ଜୀବନ ଦୁର୍ବିସହ ହୋଇ ପଡ଼ିବାର ଆଶା ଓ ଆଶଙ୍କାକୁ ଏଡ଼ାଇ ଦିଆଯାଇନପାରେ । ଏଥିପାଇଁ ସମସ୍ତଙ୍କ ସହଯୋଗ ଦରକାର । ସରକାରୀ, ବେସରକାରୀ ଭାବେ କାର୍ଯ୍ୟରତ ସମସ୍ତ ଚିକିତ୍ସକ ରୋଗର ଠିକ୍ ଆକଳନ କରି ଓ ତଥ୍ୟ ଜାଣି ଚିକିତ୍ସାରେ ସହଯୋଗ କରିବା ଉଚିତ ।

ଶ୍ରୀ ପୁରୁଷୋତ୍ତମ ଆୟୁର୍ବେଦିକ ଚିକିତ୍ସା ମନ୍ଦିର
(ଭାରତୀୟ ଭେଷଜ ଓ ହୋମିଓପ୍ୟାଥିକ ସ୍ୱାସ୍ଥ୍ୟ ପ୍ରତିଷ୍ଠାନ)
ବାଲୁଗାଁ, ଖୋର୍ଦ୍ଧା-୭୫୨୦୩୦

---




ପୁରୀଠାରେ ସ୍ୱାଧୀନତା ଦିବସର ପ୍ୟାରେଡ଼ ଉତ୍ସବରେ ଛାତ୍ରଛାତ୍ରୀଙ୍କଦ୍ୱାରା ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ ।

ସୌଜନ୍ୟ : ଜିଲ୍ଲା ସୂଚନା ଓ ଲୋକ ସଂପର୍କ କାର୍ଯ୍ୟାଳୟ, ପୁରୀ

# ଲୀଳାମୟୀ ମାତା ଆଦିଶକ୍ତି

ବିଚିତ୍ରାନନ୍ଦ ବାରିକ

**ଏ** ସୃଷ୍ଟିର କୋଣ ଅନୁକୋଣରେ ମା’ ଆଦିଶକ୍ତିଙ୍କ ଲୀଳା ଅନୁଭୂତ ହୋଇଥାଏ । ଶକ୍ତି ସାଧକମାନଙ୍କ ଲାଗି ମାଆ ଆଦିଶକ୍ତି ବିଶ୍ୱମୟୀ । ଏହି ବିଶ୍ୱ ତାଙ୍କର ଚିନ୍ମୟ ମୂର୍ତ୍ତି । ସମସ୍ତ ରୂପ ରଙ୍ଗ ମାତା ଆଦିଶକ୍ତିଙ୍କଠାରୁ ଉତ୍ପନ୍ନ । ଏକଥା ତତ୍ତ୍ୱଚିନ୍ତନଦ୍ୱାରା ସର୍ବଦା ଅନୁଭବ କରିହୁଏ । ସେ ଆଦି, ସେ ମଧ୍ୟ ଓ ସେ ଅନ୍ତ ଅଟନ୍ତି । ତାଙ୍କ ବିନା ଏ ଜୀବନ ଓ ଜଗତର ଅସ୍ତିତ୍ୱ ନାହିଁ । ଏହି କାରଣରୁ ମହର୍ଷି ଏବଂ ସିଦ୍ଧଯୋଗୀମାନେ ସମ୍ପୂର୍ଣ୍ଣ ବିଶ୍ୱକୁ ମାତା ବିଶ୍ୱମୟୀଙ୍କ ଚିନ୍ମୟ ମୂର୍ତ୍ତି ବୋଲି କହିଛନ୍ତି ।



ଋଷିବାଣୀ ପ୍ରକରଣରେ ବ୍ୟାଖ୍ୟା କରାଯାଇଥିବା ପଚିଶଟି ମନ୍ତ୍ରରେ ଆଦିଶକ୍ତିଙ୍କ ଅଙ୍ଗଭୂଷଣ ଛଅ ଜଣ ଦେବୀଙ୍କର ସ୍ୱରୂପ ଚିନ୍ତନ ରହିଛି । ଏହି ଦେବୀମାନେ ହେଲେ ନନ୍ଦା, ରକ୍ତଦନ୍ତିକା, ଶାକମ୍ଭରୀ, ଦୁର୍ଗା, ଭୀମା ଓ ଭ୍ରମରୀ । ଏମାନଙ୍କର ସ୍ୱରୂପ ପ୍ରତିପାଦନ ହୋଇଥିବାରୁ ଏହାକୁ ମୂର୍ତ୍ତି ରହସ୍ୟ କୁହାଯାଇଥାଏ । ଭଗବତୀଙ୍କର ଛଅ ରୂପ ମୂଳ ଶକ୍ତିର ଛ’ ଗୋଟି ଆୟାମ । ଏଗୁଡ଼ିକର ଅନୁଭବରେ ସକଳ ସୃଷ୍ଟିର ଅନୁଭବ ନିହିତ । ନନ୍ଦା ଆଦିଶକ୍ତିଙ୍କର ପ୍ରଥମ ମୂର୍ତ୍ତି । ତାଙ୍କ ଶ୍ରୀଅଙ୍ଗକାନ୍ତି କନକ ସମାନ । ସେ ସୁନେଲି ରଙ୍ଗର ବସ୍ତ୍ର ଆଭୂଷଣ ଧାରଣ କରିଥାନ୍ତି । ତାଙ୍କୁ ଇନ୍ଦିରା, କମଳା, ଲକ୍ଷ୍ମୀ, ଶ୍ରୀ ତଥା ରୁକ୍ମୀ ଭୁଜାସନା ଆଦି ନାମରେ ଡକାଯାଏ । ଏହି ମହାଦେବୀ ଉପାସନା ଦ୍ୱାରା ପ୍ରସନ୍ନ ହୋଇ ତିନି ଲୋକକୁ ଉପାସକଙ୍କର ଆଧାର କରି ଦିଅନ୍ତି । ମାତା ଆଦିଶକ୍ତିଙ୍କର ଦ୍ୱିତୀୟ ମୂର୍ତ୍ତି ରୂପ ହେଉଛି ରକ୍ତ ଦନ୍ତିକା । ସେ ସକଳ ଭୟହାରୀ । ତାଙ୍କ ଉପାସନାକାରୀଙ୍କୁ ଭୟ କେବେହେଲେ ସ୍ପର୍ଶ କରିପାରେ ନାହିଁ । ରକ୍ତବର୍ଣ୍ଣ ତାଙ୍କ ପ୍ରିୟ । ତାଙ୍କ ଦେହର ରଙ୍ଗ ବି ନାଲ । ରକ୍ତରଙ୍ଗର ବସ୍ତ୍ର ଧାରଣକାରିଣୀ ଏହି ମହାଦେବୀଙ୍କ ଅସ୍ତ୍ରଶସ୍ତ୍ର, ନେତ୍ର, କେଶ, ନଖ ଓ ଦନ୍ତ ସବୁକିଛି ରକ୍ତବର୍ଣ୍ଣ । ତେଣୁ ତାଙ୍କୁ ରକ୍ତଦନ୍ତିକା କୁହାଯାଏ । ତାଙ୍କୁ ମଧ୍ୟ ରକ୍ତଚାମୁଣ୍ଡା ଯୋଗେଶ୍ୱରୀ କୁହାଯାଏ । ସେ ନିଜର ଉପାସକ ଭକ୍ତଙ୍କୁ ସମସ୍ତ ପ୍ରକାର ସହାୟତା ଦେଇଥାନ୍ତି ।

ମାତା ଆଦିଶକ୍ତିଙ୍କର ତୃତୀୟ ମୂର୍ତ୍ତିରୂପ ଶାକମ୍ଭରୀ ଦେବୀ । ତାଙ୍କ ଶରୀର ନୀଳ ରଙ୍ଗ । ସେ ପରମେଶ୍ୱରୀ କମଳରେ ବାସ କରନ୍ତି । ସେ ଶାକ ସମୃଦ୍ଧ ଅନନ୍ତ ମନୋବାଞ୍ଛିତ ରସଯୁକ୍ତ ତଥା କ୍ଷୁଧା, ତୃଷ୍ଣା ତଥା ମୃତ୍ୟୁଭୟ ନଷ୍ଟକାରୀ, ପୁଷ୍ପ ପଲ୍ଲବ, ମୂଳ ଆଦି ଫଳଦ୍ୱାରା ସମ୍ପନ୍ନ ଅଟନ୍ତି । ତାଙ୍କୁ ହିଁ ଶାକମ୍ଭରୀ, ଶତାକ୍ଷୀ ଓ ଦୁର୍ଗା ବୋଲି କୁହାଯାଇଛି । ମାତାଙ୍କ ଦୁର୍ଗା ମୂର୍ତ୍ତି ଶୋକରହିତ ଏବଂ ଦୁଷ୍ଟ ଦମନକାରୀ । ସେ ହିଁ ପାପ ଓ ବିପତ୍ତି ଉଦ୍ଧାରକାରୀ । ସେ ମଧ୍ୟ ଉମା, ଗୌରୀ, ସତୀ, ଚଣ୍ଡୀ, କାଳିକା ଓ ପାର୍ବତୀ ଯେଉଁ ମନୁଷ୍ୟ ଶାକମ୍ଭରୀ ଓ ଦୁର୍ଗାଙ୍କର ଉପାସନା କରିଥାଏ, ସେ ଶୀଘ୍ର ଅନ୍ନ, ପାନ ଓ ଅମୃତରୂପୀ ଅକ୍ଷୟ ଫଳପ୍ରାପ୍ତି ହୋଇଥାଏ ।

ଆଦିଶକ୍ତିଙ୍କ ପଞ୍ଚମ ମୂର୍ତ୍ତି ରୂପର ନାମ ହେଉଛି ଭୀମା । ଏହି ଦେବୀଙ୍କର ମୂର୍ତ୍ତିର ରଙ୍ଗ ମଧ୍ୟ ନୀଳ । ତାଙ୍କର ରୂପ ଭୟାନକ । ସେ ନିଜ ହାତରେ ଚନ୍ଦ୍ରହାସ ନାମକ ଖଡ୍ଗ, ଡମ୍ବରୁ, ମସ୍ତକ ଓ ପାନପତ୍ର ଧାରଣ କରିଥାନ୍ତି । ତାଙ୍କୁ ହିଁ ଏକ ବୀରା, କାଳରାତ୍ରି, ତଥା କାମଦା କୁହାଯାଏ । ମାତା ଆଦିଶକ୍ତି ଭଗବତୀଙ୍କର ଷଷ୍ଠ ମୂର୍ତ୍ତି ରୂପ ନାମ ଭ୍ରାମରୀ ମହାଦେବୀ । ସେ ତାଙ୍କର ତେଜୋମଣ୍ଡଳ

କାରଣରୁ ଦୁର୍ଦ୍ଧର୍ଷ ଦେଖାଯାଆନ୍ତି । ତାଙ୍କର ଅଙ୍ଗରାଗ ଅନେକ ରଙ୍ଗଯୁକ୍ତ । ସେ ଚିତ୍ରବିଚିତ୍ର ଆଭୂଷଣରେ ବିଭୂଷିତ । ଚିତ୍ର ଭ୍ରମରପାଣି ଓ ମହାମାରୀ ଆଦି ନାମରେ ତାଙ୍କୁ ସ୍ତୁତି କରାଯାଏ । ତାଙ୍କ ଗୁଣ କୀର୍ତ୍ତନକାରୀର ସମସ୍ତ କାମନା ସ୍ୱତଃ ପୂରଣ ହୋଇଥାଏ ।

ଋଷିମାନେ କହନ୍ତି ଯେ ଏହି ମୂର୍ତ୍ତି ରହସ୍ୟର ପରମ ଗୋପନୀୟ ରହସ୍ୟ ହେଉଛି ଧ୍ୟାନ । ଧ୍ୟାନ ପ୍ରକ୍ରିୟାଦ୍ୱାରା ଏମାନଙ୍କର ସମସ୍ତ ରହସ୍ୟ ସାଧକର ଚେତନାରେ ପ୍ରକଟ ହୋଇଥାଏ । ଉକ୍ତ ପ୍ରକ୍ରିୟାରେ ସଲଗ୍ନ ସାଧକ ଗୋଟିଏ ସମୟରେ ଜଣେ ଦେବୀଙ୍କର ଗୋଟିଏ ଧ୍ୟାନ ସାଧନା କରିବା କର୍ତ୍ତବ୍ୟ । ଏହି ସାଧନାରେ ଦେବୀଙ୍କ ଦୈବୀ ରୂପ ପ୍ରକଟ ହୋଇଥାଏ । ଧ୍ୟାନର ଏହି ପ୍ରକ୍ରିୟା ସାଧକର ଅସ୍ତିତ୍ୱରେ ଶକ୍ତିର ସର୍ବଥା ନୂତନ ସ୍ରୋତ ଖୋଲିଥାଏ । ଏହା ସହିତ ସେଥିରେ ରୂପାନ୍ତର ଓ ଆଧ୍ୟାତ୍ମିକ ପରିବର୍ତ୍ତନର ଏକ ଗଭୀର ପ୍ରକ୍ରିୟା ଘଟିଥାଏ, ଯାହାର ପ୍ରଭାବରେ ଉପାସକ ଆଦିଶକ୍ତିଙ୍କ ସହିତ ଜଡ଼ିତ ହୋଇ ଆଧ୍ୟାତ୍ମିକ ଶକ୍ତି ଏବଂ ବିଭୂତିର ଭଣ୍ଡାର ପାଲଟିଯାଏ । ଏହା ମୂର୍ତ୍ତି ରହସ୍ୟର ଅନ୍ତିମ ପ୍ରକରଣରେ ସପ୍ତସତୀ ପାଠର ମହିମା କୁହାଯାଇଛି -

'ସପ୍ତ ଜନ୍ମା ଜିତୈର୍ଘୋରୈ
ବ୍ରହ୍ମ ହତ୍ୟା ସମୈରପି
ପାଠ ମାତ୍ରେଣ ମନ୍ତ୍ରାଣାଂ
ମୁଜ୍ୟତେ ସର୍ବକିଲ୍ୱିଷୈଃ ।

ଏହାର ଅର୍ଥ ହେଉଛି - 'ଶ୍ରୀଦୁର୍ଗା ସପ୍ତସତୀ ମନ୍ତ୍ରଗୁଡ଼ିକ ପାଠ ମାତ୍ରକେ ମନୁଷ୍ୟ ସାତ ଜନ୍ମରେ ଉପାର୍ଜିତ ବ୍ରହ୍ମହତ୍ୟା ସଦୃଶ ଘୋର ପାତକ ଏବଂ ସମସ୍ତ କଳୁଷରୁ ମୁକ୍ତ ହୋଇଯାଏ ।'

ଶ୍ରୀଦୁର୍ଗା ସପ୍ତସତୀର ପ୍ରତ୍ୟେକ ଶ୍ଳୋକ ମହାମନ୍ତ୍ର ଅଟେ । ଏହା ଅର୍ଥ ଓ ଭାବ ଅନୁସାରେ ସାଧକକୁ ପ୍ରତ୍ୟେକ ସୁଫଳ ପ୍ରଦାନ କରିଥାଏ । ପ୍ରୟୋଗ କର୍ତ୍ତାକୁ ତାର ସଂକଳ୍ପ ଅନୁସାରେ ମାତା ଆଦିଶକ୍ତି ସୁଫଳ ନ ଦେଇ ରହି ପାରନ୍ତି ନାହିଁ । ମା' ଆଦିଶକ୍ତିଙ୍କ ସାଧକ ତା'ର ଆଚରଣ, ବ୍ୟବହାର ଏବଂ ଖାଦ୍ୟପେୟରେ ସଦାଚରଣ ଏବଂ ତପଶ୍ଚରଣରେ ଠିକ୍ ଭାବ ପ୍ରଦର୍ଶନ କରିପାରିଲେ ସେ ମା'ଙ୍କର ଅହେତୁକ କୃପା ଲାଭ କରିପାରନ୍ତି ।

ଶ୍ରୀଦୁର୍ଗା ସପ୍ତସତୀର ମନ୍ତ୍ରମାଳା ସ୍ୱୟଂ ଆଦିଶକ୍ତିଙ୍କର ପ୍ରଭାବଶାଳୀ ମନ୍ତ୍ର ମୂର୍ତ୍ତି ପାଠ ସାଧନା ହିଁ ଏହାର ଧ୍ୟାନ ଓ ଅର୍ଚ୍ଚନା ବିଧି । ଯେଉଁ ମନୁଷ୍ୟ ଏହାକୁ ନିଜର କରେ, ଆପଣାଏ ତାର ବାଞ୍ଛିତ ଫଳ ତାକୁ ଅବଶ୍ୟ ମିଳିଥାଏ ।

'ସର୍ବରୂପମୟୀ ଦେବୀ
ସର୍ବଂ ଦେବୀମୟଂ ଜଗତ୍ ।
ଅତୋହଂ ବିଶ୍ୱରୂପାଂ
ତାଂ ନମାମି ପରମେଶ୍ୱରୀଂ ।

'ଦେବୀ ସର୍ବମୟୀ ଏବଂ ସମ୍ପୂର୍ଣ୍ଣ ଜଗତ ଦେବୀମୟ ଅଟେ । ଅତଃ ମୁଁ ସେହି ବିଶ୍ୱରୂପା ପରମେଶ୍ୱରୀଙ୍କୁ ନମସ୍କାର କରୁଛି ।

ମାତାଙ୍କର ଏହି ବିଶ୍ୱମୂର୍ତ୍ତିକୁ ଉପାସନା କରୁଥିବା ମନୁଷ୍ୟ ସ୍ୱୟଂ ସମସ୍ତ ତତ୍ତ୍ୱଜ୍ଞାନର ଗହନ ଭେଦଗୁଡ଼ିକୁ ଜାଣିପାରେ ।

ସୂଚକ
ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର



# ସୂଚନା ଓ ଲୋକ ସଂପର୍କ ବିଭାଗର କାର୍ଯ୍ୟାବଳୀ (୨୦୦୮-୦୯)

**ସୂ**ଚନା ଓ ଲୋକ ସଂପର୍କ ବିଭାଗ ସରକାର ଓ ଜନସାଧାରଣଙ୍କ ମଧ୍ୟରେ ଯୋଗସୂତ୍ର ରକ୍ଷା କରିବାରେ ସହାୟକ ହୋଇଥାଏ । ଏହି ବିଭାଗ କେବଳ ଯେ ସରକାରଙ୍କ ନୀତିନିୟମ ଓ କାର୍ଯ୍ୟକ୍ରମ ସମ୍ପର୍କରେ ଜନସାଧାରଣଙ୍କୁ ଅବଗତ କରାଇଥାଏ, ତା'ନୁହେଁ ପରନ୍ତୁ ସମସ୍ତ ଜନ କଲ୍ୟାଣାଭିମୁଖୀ ଉନ୍ନୟନମୂଳକ କାର୍ଯ୍ୟକ୍ରମ ଓ ପରିକଳ୍ପନାଗୁଡ଼ିକର ସଫଳ କାର୍ଯ୍ୟକାରିତା ନିମନ୍ତେ ଜନସହଯୋଗ ଆଣିବାରେ ସରକାରଙ୍କୁ ବିଶେଷ ସାହାଯ୍ୟ କରିଥାଏ । ଏହିସବୁ କାର୍ଯ୍ୟକ୍ରମକୁ ଅଧିକ ଲୋକାଭିମୁଖୀ କରିବା ପାଇଁ ତଥା କାର୍ଯ୍ୟକ୍ରମର ସଫଳ ରୂପାୟନ ନିମନ୍ତେ ପ୍ରତ୍ୟେକ ଜିଲ୍ଲା ଏବଂ ଉପଖଣ୍ଡ ସଦର ମହକୁମାରେ ବିଭାଗୀୟ କାର୍ଯ୍ୟାଳୟମାନ ରହିଛି ।




### ସାଙ୍ଗଠନିକ ବ୍ୟବସ୍ଥା

ଏହି ବିଭାଗଟି ପ୍ରଥମେ ସ୍ୱରାଷ୍ଟ୍ର ବିଭାଗର ଏକ ଅଂଶ ଭାବେ ପ୍ରତିଷ୍ଠା କରାଯାଇ ସ୍ୱରାଷ୍ଟ୍ର (ଲୋକ ସମ୍ପର୍କ) ବିଭାଗ ନାମରେ ନାମିତ କରାଯାଇଥିଲା । ପରବର୍ତ୍ତୀ ସମୟରେ ୧୯୭୮ ଜୁଲାଇ ୮ ତାରିଖରୁ ଏହା ସ୍ୱରାଷ୍ଟ୍ର ବିଭାଗରୁ ଅଲଗା ହୋଇ ସୂଚନା ଓ ଲୋକ ସଂପର୍କ ବିଭାଗ ନାମରେ ସ୍ୱତନ୍ତ୍ର ଭାବେ କାର୍ଯ୍ୟ କରିଆସୁଛି । ସମ୍ପ୍ରତି ଏହି ବିଭାଗର ପ୍ରଶାସନିକ ନିୟନ୍ତ୍ରଣରେ ୩୨ଗୋଟି ପ୍ରଚାର ଜିଲ୍ଲା (ଭୁବନେଶ୍ୱର ଓ ରାଉରକେଲା ସମେତ) କାର୍ଯ୍ୟ କରୁଅଛି । ପ୍ରତ୍ୟେକ ଜିଲ୍ଲା ଜଣେ ଲେଖାଏଁ ସୂଚନା ଓ ଲୋକ ସଂପର୍କ ଅଧିକାରୀଙ୍କ ଦ୍ୱାରା ପରିଚାଳିତ ହେଉଛି । ରାଜ୍ୟର ୩ ଗୋଟି ରାଜସ୍ୱ ଜୋନ୍‌ର ସଦର ମହକୁମା ଯଥା-କଟକ, ସମ୍ବଲପୁର ଓ ବ୍ରହ୍ମପୁରଠାରେ ୩ଜଣ ଉପନିର୍ଦ୍ଦେଶକଙ୍କୁ ଅବସ୍ଥାପିତ କରାଯାଇଛି । ଏହି ଉପନିର୍ଦ୍ଦେଶକମାନେ ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀମାନଙ୍କ କାର୍ଯ୍ୟାବଳୀକୁ ତଦାରଖ କରନ୍ତି ।

ବିଭାଗର ସମୁଦାୟ କର୍ମଚାରୀ ସଂଖ୍ୟା ୯୬୫ । ତନ୍ମଧ୍ୟରୁ ଗ୍ରୁପ୍ 'ଏ' ସ୍ତରର ଅଧିକାରୀ ସଂଖ୍ୟା ୨୯ ଏବଂ ଗ୍ରୁପ୍ 'ବି'ର ଅଧିକାରୀ ସଂଖ୍ୟା ୯୨ । ଗ୍ରୁପ୍ 'ସି'ର କର୍ମଚାରୀ ସଂଖ୍ୟା ୪୮୦ ଏବଂ ଗ୍ରୁପ୍ 'ଡ଼ି'ର କର୍ମଚାରୀ ସଂଖ୍ୟା ୩୬୪ ଅଟେ ।

ଏହି ବିଭାଗ ନିମନ୍ତେ ୨୦୦୯-୧୦ ଆର୍ଥିକ ବର୍ଷ ପାଇଁ ଯୋଜନା ବାବଦରେ ୮୦୦୦୦ ଏବଂ ଅଣଯୋଜନା ବାବଦରେ ୨୨୮୮୧୮ ହଜାର ଟଙ୍କାର ବ୍ୟୟ ଅଟକଳ କରାଯାଇଛି ।

### କେନ୍ଦ୍ରୀୟ ପ୍ରାୟୋଜିତ ଯୋଜନା

ସୂଚନା ଅଧିକାର ଆଇନ୍ ସମ୍ପର୍କରେ ଜନସଚେତନତା ତଥା ତାଲିମ୍ ପ୍ରଦାନ ପାଇଁ ସି.ଏସ୍.ପି. (ସେଣ୍ଟ୍ରାଲି ସ୍ପନ୍‌ସର୍ଡ଼ ସ୍କିମ୍) ନାମକ ଏକ ନୂତନ ଯୋଜନା ଆରମ୍ଭ କରାଯାଇ ଏଥିନିମନ୍ତେ ୨୦୦୯-୧୦ ଆର୍ଥିକ ବର୍ଷ ପାଇଁ ୫୦୦ ହଜାର ଟଙ୍କାର ବ୍ୟୟଅଟକଳ କରାଯାଇଛି ।

**ପ୍ରକାଶନ**

ଜନସଚେତନତା ସୃଷ୍ଟି କରିବା ପାଇଁ ବିଭାଗ ପକ୍ଷରୁ ଦୁଇଟି ମାସିକ ପତ୍ରିକା ଯଥା-'ଉତ୍କଳ ପ୍ରସଙ୍ଗ' ଓଡ଼ିଆ ଭାଷାରେ ଏବଂ 'ଓଡ଼ିଶା ରିଭ୍ୟୁ' ଇଂରାଜୀ ଭାଷାରେ ପ୍ରକାଶିତ ହେଉଛି । ଏଥିରେ ସରକାରଙ୍କ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମ ସମ୍ପର୍କରେ ଲେଖା ସମେତ ଓଡ଼ିଶାର କଳା, ସଂସ୍କୃତି, ବ୍ୟବସାୟ ଏବଂ ବାଣିଜ୍ୟ, ବିଜ୍ଞାନ ଓ କାରିଗରୀ ସମ୍ପର୍କିତ ଲେଖାମାନ ମଧ୍ୟ ପ୍ରକାଶିତ ହୋଇଥାଏ । ଏଥିସହିତ ରଥଯାତ୍ରା ଓ ଉତ୍କଳ ଦିବସ ପରିପ୍ରେକ୍ଷୀରେ ବିଶେଷ ସଂସ୍କରଣ ମଧ୍ୟ ପ୍ରକାଶ କରାଯାଇଥାଏ । ଏତଦ୍‌ବ୍ୟତୀତ ବିଶିଷ୍ଟ ବ୍ୟକ୍ତିମାନଙ୍କର ଜନ୍ମ ଓ ମୃତ୍ୟୁ ବାର୍ଷିକୀ ଉତ୍ସବ ତଥା ଅନ୍ୟାନ୍ୟ ଉତ୍ସବ ପାଳନ ଅବସରରେ ବିଭାଗ ପକ୍ଷରୁ କ୍ଷୁଦ୍ରପୁସ୍ତିକା, ଫୋଲଡ଼ର, ପ୍ରାଚୀରପତ୍ର ଆଦି ଉଭୟ ଇଂରାଜୀ ଓ ଓଡ଼ିଆ ଭାଷାରେ ଛପା ଯାଇଥାଏ । ଏଥି ସମେତ ଫିଚର ଆର୍ଟିକଲ୍‌ଗୁଡ଼ିକର ଅନୁବାଦ ଏବଂ ସଂକଳନ ମଧ୍ୟ ଏହି ବିଭାଗ ପକ୍ଷରୁ କରାଯାଇଥାଏ । ୨୦୦୮-୦୯ ବର୍ଷରେ ଏହିଭଳି ୨୮ ଗୋଟି ଦିବସ ପାଳନ ଅବସରରେ ବିଭାଗ ପକ୍ଷରୁ ନିମ୍ନଲିଖିତ ପୁସ୍ତିକା ପ୍ରକାଶିତ ହୋଇଥିଲା ।

୧. ସ୍ୱତନ୍ତ୍ର ଉତ୍କଳ ଦିବସ (ଓଡ଼ିଆ ଫୋଲଡ଼ର)
୨. ନୂଆ ରାଜଧାନୀ ଭୁବନେଶ୍ୱର (ଓଡ଼ିଆ କ୍ଷୁଦ୍ର ପୁସ୍ତିକା)
୩. ଶହୀଦ ରଘୁ-ଦିବାକର (ଓଡ଼ିଆ ଫୋଲଡ଼ର)
୪. ଡ଼ଃ ବି.ଆର୍.ଆମ୍ବେଦକର (ଓଡ଼ିଆ ଫୋଲଡ଼ର)
୫. ମହାରାଜା କୃଷ୍ଣଚନ୍ଦ୍ର ଗଜପତି (ଓଡ଼ିଆ ଫୋଲଡ଼ର)
୬. ଉତ୍କଳଗୌରବ ମଧୁସୂଦନ ଦାସ (ଓଡ଼ିଆ ଫୋଲଡ଼ର)
୭. ବିପ୍ଳବୀ ଧରଣୀଧର ଭୂୟାଁ (ଓଡ଼ିଆ ଫୋଲଡ଼ର)
୮. ଶ୍ରୀ ଜୟଦେବ (ଓଡ଼ିଆ କ୍ଷୁଦ୍ର ପୁସ୍ତିକା)
୯. ଶ୍ରୀଜଗନ୍ନାଥ ପୁରୀ - ରଥଯାତ୍ରା - ୨୦୦୮ - ସୂଚନା ପୁସ୍ତିକା (ଉଭୟ ଇଂରାଜୀ ଏବଂ ଓଡ଼ିଆ ଭାଷାରେ)
୧୦. ଓଡ଼ିଆ ଶ୍ରୀଜଗନ୍ନାଥ ଭଜନ ପୁସ୍ତିକା
୧୧. ରଥଯାତ୍ରା-ପୁରୀ-୨୦୦୮-କ'ଣ କରିବା ଉଚିତ୍, କ'ଣ ନକରିବା ଉଚିତ (ଓଡ଼ିଆ ଏବଂ ଇଂରାଜୀ ପ୍ରଚାର ପତ୍ର)
୧୨. ଶ୍ରୀ ଶ୍ରୀ ବଳଦେବ ଜୀଉ ରଥଯାତ୍ରା-୨୦୦୮-କେନ୍ଦ୍ରାପଡ଼ା (ଓଡ଼ିଆ କ୍ଷୁଦ୍ର ପୁସ୍ତିକା)
୧୩. ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ (ଓଡ଼ିଆ ଫୋଲଡ଼ର)
୧୪. ଶହୀଦ ବାଜି ରାଉତ (ଓଡ଼ିଆ ଫୋଲଡ଼ର)
୧୫. ବିପ୍ଳବୀ ଜୟୀ ରାଜଗୁରୁ (ଓଡ଼ିଆ ଫୋଲଡ଼ର)
୧୬. ଶହୀଦ ବିର୍ସାମୁଣ୍ଡା (ଓଡ଼ିଆ ଫୋଲଡ଼ର)
୧୭. ବିଶ୍ୱ ବାଣିଜ୍ୟ ମେଳା, ନୂଆଦିଲ୍ଲୀ ଅବସରରେ - ଓଡ଼ିଶା : ଏ ଲ୍ୟାଣ୍ଡ ଅଫ୍ ମେନି ସ୍ପ୍ଲେଣ୍ଡରସ୍ (ଇଂରାଜୀ ଫୋଲଡ଼ର)
୧୮. ଶହୀଦ ଲକ୍ଷ୍ମଣ ନାଏକ ଜୟନ୍ତୀ (ଓଡ଼ିଆ ଫୋଲଡ଼ର)
୧୯. ଉତ୍କଳକେଶରୀ ଡ଼ଃ ହରେକୃଷ୍ଣ ମହତାବ (ଓଡ଼ିଆ ଫୋଲଡ଼ର)
୨୦. ମହାନ୍ ଜନନାୟକ ନବକୃଷ୍ଣ ଚୌଧୁରୀ (ଓଡ଼ିଆ ଫୋଲଡ଼ର)
୨୧. ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ (ଓଡ଼ିଆ ଫୋଲଡ଼ର)
୨୨. ବିପ୍ଳବୀ ଚନ୍ଦନ ହଜୁରୀ (ଓଡ଼ିଆ ଫୋଲଡ଼ର)
୨୩. ବୀର ସୁରେନ୍ଦ୍ର ସାଏ (ଓଡ଼ିଆ ଫୋଲଡ଼ର)

୨୪. ନେତାଜୀ ସୁଭାଷ ଚନ୍ଦ୍ର ବୋଷ (ଓଡ଼ିଆ ଫୋଲଡ଼ର)

୨୫. ବକ୍ସି ଜଗବନ୍ଧୁ (ଓଡ଼ିଆ ଫୋଲଡ଼ର)

୨୬. ବିଜୁ ପଟ୍ଟନାୟକ (ଓଡ଼ିଆ ଫୋଲଡ଼ର)

୨୭. ଜୟପ୍ରକାଶ ନାରାୟଣ (ଓଡ଼ିଆ ଫୋଲଡ଼ର)

୨୮. ସୂଚନା ଓ ଲୋକ ସଂପର୍କ ବିଭାଗର କାର୍ଯ୍ୟାବଳୀ (ଓଡ଼ିଆ ଓ ଇଂରାଜୀ କ୍ଷୁଦ୍ର ପୁସ୍ତିକା)

୨୦୦୯ ସାଧାରଣ ନିର୍ବାଚନ ଏବଂ ବିଧାନସଭା ନିର୍ବାଚନ ସକାଶେ ଇଲେକ୍ସନ୍ ବ୍ୟାକ୍ ଗ୍ରାଉଣ୍ଡର୍ ପ୍ରକାଶନ ପାଇଁ କାର୍ଯ୍ୟାରମ୍ଭ ହୋଇଥିଲା ।

୨୦୦୯-୧୦ ଆର୍ଥିକ ବର୍ଷ ପାଇଁ ପ୍ରକାଶନ ଶାଖା ନିମନ୍ତେ ୧୧୮୯ ହଜାର ଟଙ୍କାର ବ୍ୟବସ୍ଥା କରାଯାଇଛି ।

**ସମ୍ବାଦ ସୂଚନା ଶାଖା**

ଏହି ବିଭାଗ ଅଧୀନରେ ରାଜ୍ୟ ସଦର ମହକୁମା କାର୍ଯ୍ୟାଳୟଠାରେ ଏକ ସମ୍ବାଦ ସୂଚନା ଶାଖା କାର୍ଯ୍ୟ କରୁଅଛି । ଏହି ଶାଖାରେ ରାଜ୍ୟ ସରକାରଙ୍କର ସମସ୍ତ ବିଭାଗଗୁଡ଼ିକୁ ୭ଜଣ ସୂଚନା ଅଧିକାରୀ ଏବଂ ୮ ଜଣ ଅନ୍ୟାନ୍ୟ ଅଧିକାରୀଙ୍କୁ ତାଙ୍କର ନିଜ ଦାୟିତ୍ୱ ସହିତ ବିଭିନ୍ନ ବିଭାଗଗୁଡ଼ିକରେ ସୂଚନା ଅଧିକାରୀଭାବେ କାର୍ଯ୍ୟ କରିବା ପାଇଁ ଅତିରିକ୍ତ ଦାୟିତ୍ୱ ନ୍ୟସ୍ତ କରାଯାଇଅଛି । ଅଧିକାରୀମାନେ ସଂପୃକ୍ତ ବିଭାଗରୁ ପ୍ରେସ୍ ବିଜ୍ଞପ୍ତି, ହ୍ୟାଣ୍ଡ ଆଉଟ୍, ବ୍ୟାକ୍ ଗ୍ରାଉଣ୍ଡ୍ ତଥ୍ୟାବଳୀ, ଫିଚର ଆର୍ଟିକଲ୍ ସହିତ ଅନ୍ୟାନ୍ୟ ଉନ୍ନୟନ ମୂଳକ କାର୍ଯ୍ୟକ୍ରମ ସମ୍ପର୍କିତ ସମ୍ବାଦ ସଂଗ୍ରହ କରି ବିଭିନ୍ନ ସମ୍ବାଦପତ୍ର ସଂସ୍ଥା, ଆକାଶବାଣୀ / ଦୂରଦର୍ଶନ ଏବଂ ଇଲେକ୍ଟ୍ରୋନିକ୍ ଗଣମାଧ୍ୟମକୁ ପ୍ରକାଶନ ଏବଂ ପ୍ରସାରଣ ପାଇଁ ଦେଇଥାନ୍ତି । ଏହି ଅଧିକାରୀମାନେ ଜଣେ ଉପ-ନିର୍ଦ୍ଦେଶକ ତଥା ଉପଶାସନ ସଚିବଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କାର୍ଯ୍ୟ କରିଥାନ୍ତି । ଏହାବ୍ୟତୀତ ଏହି ବିଭାଗରୁ ମହାମାନ୍ୟ ରାଜ୍ୟପାଳ ଏବଂ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟରେ ଲୋକ ସଂପର୍କ ଅଧିକାରୀଙ୍କୁ ଅବସ୍ଥାପିତ କରାଯାଇଛି ।

୨୦୦୮-୦୯ ଆର୍ଥିକ ବର୍ଷରେ ଏହି ବିଭାଗ ପକ୍ଷରୁ ୬୪୭ଟି ପ୍ରେସ୍ ହ୍ୟାଣ୍ଡ ଆଉଟ୍ ଏବଂ ୧୪ଟି ପ୍ରେସ୍ ବିଜ୍ଞପ୍ତି ପ୍ରକାଶିତ ହୋଇଛି । ଏହାବ୍ୟତୀତ ସୂଚନା ଅଧିକାରୀମାନେ ପ୍ରତିଦିନ ମନ୍ତ୍ରୀ, ପ୍ରମୁଖ ଶାସନ ସଚିବ, କମିଶନର ତଥା ଶାସନ ସଚିବ ଏବଂ ଶାସନ ସଚିବଙ୍କ ନିକଟରେ ପ୍ରେସ୍ କ୍ଲିପିଙ୍ଗ ଦାଖଲ କରିଥାନ୍ତି । ଏହି ବର୍ଷରେ ସମୁଦାୟ ୧୯,୨୫୭ ପ୍ରେସ୍ କ୍ଲିପିଙ୍ଗ ଦାଖଲ କରାଯାଇଛି । ୨୦୦୩-୦୪ ବର୍ଷରେ କର୍ତ୍ତବ୍ୟରତ ସାମ୍ବାଦିକମାନଙ୍କୁ ସ୍ୱୀକୃତି ପ୍ରଦାନ ନିମନ୍ତେ କେତେକ ନିୟମର ସଂଶୋଧନ କରାଯାଇ ୧୯୯୪ ମସିହାରେ ଗଠନ କରାଯାଇଥିବା ଆକ୍ରିଡ଼େସନ୍ କମିଟିକୁ ସରକାରଙ୍କ ରିଜୋଲ୍ୟୁସନ-୨୨୬୯୭ ତା. ୨୩.୦୮.୨୦୦୩ ଅନୁଯାୟୀ ପୁନର୍ଗଠନ କରାଯାଇଛି । ୨୦୦୮-୦୯ ଆର୍ଥିକ ବର୍ଷ ଶେଷସୁଦ୍ଧା ୧୪୨ ଜଣ ରାଜ୍ୟସ୍ତରୀୟ ଏବଂ ୧୦୨ ଜଣ ଜିଲ୍ଲା, ଉପଖଣ୍ଡ ଓ ବ୍ଲକ୍ ସ୍ତରୀୟ ସାମ୍ବାଦିକଙ୍କୁ ସ୍ୱୀକୃତି ପ୍ରଦାନ କରାଯାଇଛି ।

ସ୍ୱୀକୃତିପ୍ରାପ୍ତ ସାମ୍ବାଦିକମାନଙ୍କୁ ରେଳରେ ଯିବା ଆସିବା ନିମନ୍ତେ ରିହାତି ବ୍ୟବସ୍ଥା ସହିତ ଅନ୍ୟାନ୍ୟ ସୁବିଧାସୁଯୋଗ ଯୋଗାଇ ଦିଆଯାଉଛି । ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ଘଟଣା, ସଭାସମିତି ଓ ଉତ୍ସବ ଯଥା-ରଥଯାତ୍ରା, କୋଣାର୍କ ଉତ୍ସବ, ବେଳାଭୂମି ମହୋତ୍ସବ ଏବଂ ପ୍ରାକୃତିକ ବିପର୍ଯ୍ୟୟ ସଂଘଟିତ ସ୍ଥାନମାନଙ୍କୁ ସାମ୍ବାଦିକମାନଙ୍କ ପରିଦର୍ଶନ ନିମନ୍ତେ ଏହି ବିଭାଗ ପକ୍ଷରୁ ବ୍ୟବସ୍ଥା କରାଯାଇଥାଏ ।

ପ୍ରାକୃତିକ ଦୁର୍ବିପାକ ସମୟରେ ସୂଚନା ଜାଣିବା ପାଇଁ ଇଚ୍ଛୁକ ବ୍ୟକ୍ତିମାନଙ୍କୁ ସୂଚନା ଦେବା ନିମନ୍ତେ ଏହି ବିଭାଗ ପକ୍ଷରୁ ଦିବାରାତ୍ର ନିୟନ୍ତ୍ରଣ କକ୍ଷ ଖୋଲାଯାଇଥାଏ । କାର୍ଯ୍ୟରତ ସାମ୍ବାଦିକମାନଙ୍କ ନିମନ୍ତେ ଏକ 'କଲ୍ୟାଣ ପାଣ୍ଠି' ଗଠନ କରାଯାଇଛି ଏବଂ ଏଥିପାଇଁ ୨୦୦୯-୧୦ ଆର୍ଥିକ ବର୍ଷରେ ୫୦୦ ହଜାର ଟଙ୍କାର ବ୍ୟୟଅଟକଳ କରାଯାଇଛି । ଉକ୍ତ ସମ୍ବାଦ ସୂଚନା ଶାଖାର କାର୍ଯ୍ୟ ତୁଲାଇବା ପାଇଁ ୨୦୦୯-୧୦ ଆର୍ଥିକ ବର୍ଷ ନିମନ୍ତେ ୭୩୬ ହଜାର ଟଙ୍କା ଅଣଯୋଜନା ବାବଦରେ ଏବଂ ଯୋଜନା ବାବଦରେ ୫୦୧ ହଜାର ଟଙ୍କା ବ୍ୟୟ ଅଟକଳ କରାଯାଇଛି ।

### ଇଲେକ୍‌ଟ୍ରୋନିକ୍‌ସ୍ ଡ଼ିସ୍‌ପ୍ଲେ ବୋର୍ଡ଼

ସୂଚନା ପ୍ରଦାନର ଆଭିମୁଖ୍ୟ ନେଇ ଏହି ବିଭାଗ ଏକ ନୂତନ ପଦକ୍ଷେପ ଗ୍ରହଣ କରି ୨୦୦୫ ଏପ୍ରିଲ୍-୧ ଠାରୁ ଇଲେକ୍‌ଟ୍ରୋନିକ୍‌ସ୍ ଡ଼ିସ୍‌ପ୍ଲେ ବୋର୍ଡ଼ ମାଧ୍ୟମରେ ସମ୍ବାଦ ପରିବେଷଣ କରୁଅଛି । ଏହି ଡ଼ିସ୍‌ପ୍ଲେ ବୋର୍ଡ଼ ମାଧ୍ୟମରେ ସରକାରୀ ଯୋଜନା, ନୀତି, କାର୍ଯ୍ୟକ୍ରମ, ଗୁରୁତ୍ୱପୂର୍ଣ୍ଣ ଘଟଣାବଳୀ ଏବଂ ଜନସଚେତନ ସମ୍ବଳିତ ବିଭିନ୍ନ ସୂଚନାକୁ ତତ୍କାଳ ପରିବେଷଣ କରାଯାଉଛି । ବର୍ତ୍ତମାନ ଭୁବନେଶ୍ୱରର କ୍ୟାପିଟାଲ ଥାନା ପରିସର, ରାଜ୍ୟ ସୂଚନା କେନ୍ଦ୍ର (ଜୟଦେବ ଭବନ) ଏବଂ ଓଡ଼ିଶା ଖଣି ନିଗମ ପରିସରଠାରେ ତିନୋଟି ଇଲେକ୍‌ଟ୍ରୋନିକ୍‌ସ୍ ଡ଼ିସ୍‌ପ୍ଲେ ବୋର୍ଡ଼ କାର୍ଯ୍ୟ କରୁଅଛି । ନୂଆଦିଲ୍ଲୀସ୍ଥିତ ଓଡ଼ିଶା ଭବନଠାରେ ଆଉ ଗୋଟିଏ ଇଲେକ୍‌ଟ୍ରୋନିକ୍‌ସ୍ ଡ଼ିସ୍‌ପ୍ଲେ ବୋର୍ଡ଼ ସ୍ଥାପନ କରାଯାଇଛି । ଏହି ଶାଖା ପାଇଁ ୨୦୦୯-୧୦ ଆର୍ଥିକ ବର୍ଷ ନିମନ୍ତେ ୪୦୦ ହଜାର ଟଙ୍କାର ବ୍ୟୟ ଅଟକଳ କରାଯାଇଛି ।

### ଦୂରଦର୍ଶନ ସମ୍ବାଦ ପ୍ରସାରଣ ଶାଖା

ବିଭାଗୀୟ ଦୂରଦର୍ଶନ ସମ୍ବାଦ ପ୍ରସ୍ତୁତି ଶାଖା, ବିଶିଷ୍ଟ ତଥା ଅତିବିଶିଷ୍ଟ ବ୍ୟକ୍ତିବିଶେଷଙ୍କର ଦୈନନ୍ଦିନ ସରକାରୀ କାର୍ଯ୍ୟକ୍ରମଗୁଡ଼ିକର ଭିଡ଼ିଓ ଚିତ୍ର ଉତ୍ତୋଳନ କରି ନିୟୁଜ ଆଇଟମ୍ (ସମ୍ବାଦ) ପ୍ରସ୍ତୁତ କରିଥାଏ । ଗୁରୁତ୍ୱପୂର୍ଣ୍ଣ ଘଟଣାଗୁଡ଼ିକର ଚିତ୍ର ଉତ୍ତୋଳନ କରି ସମ୍ବାଦ କ୍ୟାପସୁଲ୍ ପ୍ରସ୍ତୁତ କରିବା ସହିତ ଏହି ଶାଖା ସରକାରଙ୍କର ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମର ସଫଳତା ଉପରେ ପ୍ରାମାଣିକ ଚଳଚ୍ଚିତ୍ର ପ୍ରସ୍ତୁତ କରିଥାଏ । ଏଗୁଡ଼ିକ ଦୂରଦର୍ଶନ ସମେତ ବିଭିନ୍ନ ଇଲେକ୍‌ଟ୍ରୋନିକ୍‌ସ୍ ଗଣମାଧ୍ୟମ ଜରିଆରେ ପ୍ରସାରିତ କରାଯାଇଥାଏ । ୨୦୦୮-୦୯ ଆର୍ଥିକ ବର୍ଷରେ ଏହି ଶାଖା ପକ୍ଷରୁ ୯୭୨ଟି କାର୍ଯ୍ୟକ୍ରମର ଭିଡ଼ିଓ ଚିତ୍ର ଉତ୍ତୋଳନ କରାଯାଇଥିଲା । ତନ୍ମଧ୍ୟରୁ ଭୁବନେଶ୍ୱର ଦୂରଦର୍ଶନର ଆଞ୍ଚଳିକ ସମ୍ବାଦ ବୁଲେଟିନ୍ ମାଧ୍ୟମରେ ୯୨୫ଟି ତଥା ଜାତୀୟ କାର୍ଯ୍ୟକ୍ରମ ଷ୍ଟେଟସ୍ ସ୍କାନ ମାଧ୍ୟମରେ ୨୩ଟି କାର୍ଯ୍ୟକ୍ରମ ପ୍ରସାରଣ କରାଯାଇଛି ।

ଏହି ଶାଖା ପାଇଁ ୨୦୦୯-୧୦ ଆର୍ଥିକ ବର୍ଷ ନିମନ୍ତେ ୫୬୩୨ ହଜାର ଟଙ୍କାର ବ୍ୟୟଅଟକଳ କରାଯାଇଛି ।

### ଦୂରଦର୍ଶନ ମାଧ୍ୟମରେ ବିକାଶମୂଳକ କାର୍ଯ୍ୟକ୍ରମର ପ୍ରଚାର

ରାଜ୍ୟ ସରକାରଙ୍କର ବିଭିନ୍ନ ଲୋକାଭିମୁଖୀ ଉନ୍ନୟନମୂଳକ କାର୍ଯ୍ୟକ୍ରମଗୁଡ଼ିକର ସଫଳତା ଏହି କାର୍ଯ୍ୟକ୍ରମ ମାଧ୍ୟମରେ ପ୍ରସାରଣ କରାଯାଇଥାଏ ।

ପ୍ରଥମଥର ପାଇଁ ପ୍ରଚାର ଏବଂ ଜନସଚେତନତା ସୃଷ୍ଟି ଉଦ୍ଦେଶ୍ୟରେ ସୂଚନା ଓ ଲୋକ ସଂପର୍କ ବିଭାଗ, ସରକାରଙ୍କର ବିଭିନ୍ନ ସଫଳ କାହାଣୀ ଉପରେ ଆଧାରିତ 'ଆମ କଥା ଓଡ଼ିଶା କଥା' ନାମକ ଏକ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଛି । ଅଦ୍ୟାବଧି ଏହି କାର୍ଯ୍ୟକ୍ରମ ୧୦୩ ଗୋଟି ଅଧ୍ୟାୟ ମାଧ୍ୟମରେ ପ୍ରସାରଣ କରାଗଲାଣି ଏବଂ ଏହାର ଦର୍ଶକ ସଂଖ୍ୟା ଓଡ଼ିଶାର ଉଭୟ ସହରାଞ୍ଚଳ ଓ ଗ୍ରାମାଞ୍ଚଳକୁ ମିଶାଇ ୩୧ ଲକ୍ଷରୁ ଉର୍ଦ୍ଧ୍ୱ ବୋଲି ଏକ ସର୍ବେକ୍ଷଣରୁ ଜଣାପଡ଼ିଛି । ଏହା ଦୂରଦର୍ଶନର ଡ଼ି.ଡ଼ି.-୧ ଚାନେଲ୍‌ରେ ପ୍ରତ୍ୟେକ ଶନିବାର ସନ୍ଧ୍ୟା ଘ.୭.୧୫ ମିନିଟ୍‌ରେ ପ୍ରସାରଣ କରାଯାଉଛି । ଏହି କାର୍ଯ୍ୟକ୍ରମ ସମଗ୍ର ଓଡ଼ିଶା, ବିଶେଷକରି ଗ୍ରାମାଞ୍ଚଳ ଲୋକମାନଙ୍କ ମଧ୍ୟରେ ବେଶ୍ ଆଦୃତ ହୋଇପାରିଛି । ସରକାରଙ୍କର ଏସବୁ ଉନ୍ନୟନମୂଳକ କାର୍ଯ୍ୟକ୍ରମର ବ୍ୟାପକ ପ୍ରଚାର ଓ ପ୍ରସାର କରି ଜନସାଧାରଣଙ୍କୁ ଏହି ବିକାଶଧାରାରେ ସାମିଲ କରିବା ଉଦ୍ଦେଶ୍ୟରେ ଆଉ ଏକ ସାପ୍ତାହିକ ବିକାଶଧର୍ମୀ ପ୍ରଚାର କାର୍ଯ୍ୟକ୍ରମ ''ବିକାଶର ନବଦିଗନ୍ତ'' ପ୍ରସାରିତ ହେବା ପାଇଁ ଚୂଡ଼ାନ୍ତ ନିଷ୍ପତ୍ତି ନିଆଯାଇଛି । ଏହି ଶାଖାପାଇଁ ୨୦୦୯-୧୦ ଆର୍ଥିକବର୍ଷ ନିମନ୍ତେ ୧୫୦୦ ହଜାର ଟଙ୍କାର ବ୍ୟୟ ଅଟକଳ କରାଯାଇଛି ।

୨୦୦୯-୧୦ ଆର୍ଥିକ ବର୍ଷରେ ଓରସାକ୍‌କୁ ସରକାରୀ ଉନ୍ନୟନମୂଳକ କାର୍ଯ୍ୟକ୍ରମଗୁଡ଼ିକର ଦୂରଦର୍ଶନ ମାଧ୍ୟମରେ ପ୍ରସାରଣ ପାଇଁ ଅନୁଦାନ ଯୋଗାଇ ଦିଆଯାଇଛି । ୨୦୦୯-୧୦ ଆର୍ଥିକ ବର୍ଷରେ ଏଥିପାଇଁ ୩୦୦୦୦ ହଜାର ଟଙ୍କାର ବ୍ୟୟଅଟକଳ କରାଯାଇଛି ।

### ଫଟୋ ସେବା

ଏହି ବିଭାଗର ଫଟୋ ଶାଖାଟି ପ୍ରଚାର କାର୍ଯ୍ୟକ୍ରମକୁ ଆବଶ୍ୟକୀୟ ସହଯୋଗ ପ୍ରଦାନ କରିଥାଏ । ଗୁରୁତ୍ୱପୂର୍ଣ୍ଣ ଘଟଣାବଳୀର ତଥ୍ୟ ସଂରକ୍ଷଣ ଏହା ମାଧ୍ୟମରେ ହୋଇଥାଏ । ଏହି ଶାଖା ମାଧ୍ୟମରେ ବିଭିନ୍ନ ବିଶିଷ୍ଟ ତଥା ଅତିବିଶିଷ୍ଟ ବ୍ୟକ୍ତିବିଶେଷଙ୍କର ଦୈନନ୍ଦିନ

ସରକାରୀ କାର୍ଯ୍ୟକ୍ରମ, ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ସରକାରୀ କାର୍ଯ୍ୟକ୍ରମଗୁଡ଼ିକର ଫଟୋଚିତ୍ର ଉତ୍ତୋଳନ କରାଯାଇ ବିଭିନ୍ନ ମୁଦ୍ରଣ ମାଧ୍ୟମ ସଂସ୍ଥାକୁ ଯୋଗାଇ ଦିଆଯାଇଥାଏ । ଏତଦ୍‌ବ୍ୟତୀତ ବିଭାଗ ପକ୍ଷରୁ ପ୍ରକାଶିତ ପୁସ୍ତିକା, ଫୋଲଡ଼ର, ପ୍ରଚାରପତ୍ର ଏବଂ ପ୍ରଦର୍ଶନୀ ପାଇଁ ମଧ୍ୟ ଫଟୋ ଯୋଗାଇ ଦିଆଯାଇଥାଏ ।

ଏହି ଶାଖାକୁ ଆଧୁନିକୀକରଣ କରାଯାଇ ଇଣ୍ଟରନେଟ୍ ସୁବିଧା ସହ ଡ଼ିଜିଟାଲ ବ୍ୟବସ୍ଥା କରାଯାଇଛି । ସମ୍ପ୍ରତି ବିଭିନ୍ନ ଗଣମାଧ୍ୟମ ସଂସ୍ଥାକୁ ଇଣ୍ଟରନେଟ୍ ମାଧ୍ୟମରେ ଫଟୋଚିତ୍ର ପ୍ରେରଣ କରାଯାଉଛି । ଏହାବ୍ୟତୀତ ଏକ ସ୍ୱତନ୍ତ୍ର ଷ୍ଟୁଡ଼ିଓ ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଇଛି । ଏହି ସମୟ ମଧ୍ୟରେ ମାନୁଆଲ୍ ଏବଂ ଡ଼ିଜିଟାଲ୍ ପଦ୍ଧତିରେ ୧୪୧୫ଟି କାର୍ଯ୍ୟକ୍ରମର ଫଟୋଚିତ୍ର ଉତ୍ତୋଳନ କରାଯାଇ ସେଥିରେ ୧୨୩୬୫ଟି ଫଟୋ ପ୍ରସ୍ତୁତ କରି ଉପରୋକ୍ତ କାର୍ଯ୍ୟ ନିମନ୍ତେ ଯୋଗାଇ ଦିଆଯାଇଛି । ଏତଦ୍‌ବ୍ୟତୀତ ୧୩୮୦ ଗୋଟି ଫଟୋ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶନ ନିମନ୍ତେ ପଠାଯାଇଛି । ଫଟୋ ଶାଖା ପାଇଁ ୨୦୦୯-୧୦ ଆର୍ଥିକ ବର୍ଷ ନିମନ୍ତେ ୬୮୧ ହଜାର ଟଙ୍କା ବ୍ୟୟ ଅଟକଳ କରାଯାଇଛି ।

**ଚଳଚ୍ଚିତ୍ର**

ଚଳଚ୍ଚିତ୍ର ହେଉଛି ଗଣ ଯୋଗାଯୋଗର ଏକ ବଳିଷ୍ଠ ମାଧ୍ୟମ । ଏହା ଗ୍ରାମାଞ୍ଚଳରେ ବସବାସ କରୁଥିବା ନିରକ୍ଷର ବ୍ୟକ୍ତିମାନଙ୍କ ପାଖରେ ସରକାରଙ୍କର ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମର ସଫଳତା ସଂପର୍କିତ ତଥ୍ୟ ପହଞ୍ଚାଇବାରେ ସାହାଯ୍ୟ କରିଥାଏ ।

ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଉପରେ ଆଧାରିତ ଏକ ପୂର୍ଣ୍ଣାଙ୍ଗ ଚଳଚ୍ଚିତ୍ର ମଧ୍ୟ ପ୍ରସ୍ତୁତ କରାଯାଉଛି । ଦୁଇଗୋଟି ଚଳଚ୍ଚିତ୍ର ତଥା ପ୍ରାମାଣିକ ଚଳଚ୍ଚିତ୍ର ବିଭାଗୀୟ ଚଳଚ୍ଚିତ୍ର ଲାଇବ୍ରେରୀକୁ ପ୍ରଚାର ଉଦ୍ଦେଶ୍ୟରେ ଯୋଗାଇ ଦିଆଯାଇଛି ଏବଂ ରାଜ୍ୟସ୍ତରୀୟ ଚଳଚ୍ଚିତ୍ର ପୁରସ୍କାର ମନୋନୟନ ନିମନ୍ତେ ୬ ଗୋଟି ଚଳଚ୍ଚିତ୍ରକୁ ବିଭାଗୀୟ ପ୍ରିଭ୍ୟୁ ହଲରେ ପ୍ରଦର୍ଶିତ କରାଯାଇଛି ।

ବିଭାଗରେ ଗଚ୍ଛିତ ଥିବା ପ୍ରାମାଣିକ ଚଳଚ୍ଚିତ୍ରଗୁଡ଼ିକୁ ଅତ୍ୟାଧୁନିକ ଉପାୟରେ ସଂରକ୍ଷଣ ଓ ପ୍ରଦର୍ଶନ କରିବା ନିମନ୍ତେ ବିଶେଷ ପଦକ୍ଷେପ ଗ୍ରହଣ କରାଯାଇଛି ।

ଏହି ଶାଖା ପାଇଁ ୨୦୦୯-୧୦ ଆର୍ଥିକ ବର୍ଷରେ ଉଭୟ ଅଣଯୋଜନା ଏବଂ ଯୋଜନା ବାବଦରେ ୨୦୭୦ ହଜାର ଟଙ୍କାର ବ୍ୟୟ ଅଟକଳ କରାଯାଇଛି ।

**ଗୋଷ୍ଠୀ ଦୃଶ୍ୟ ଶାଖା**

ଏହି ବିଭାଗରେ ଏକ ଗୋଷ୍ଠୀ ଦୃଶ୍ୟ ଶାଖା କାର୍ଯ୍ୟ କରୁଛି । ବିଭାଗ ପକ୍ଷରୁ ବିଭିନ୍ନ ଅନୁଷ୍ଠାନକୁ ଯୋଗାଇ ଦିଆଯାଇଥିବା ଟେଲିଭିଜନ୍ ସେଟ୍‌ଗୁଡ଼ିକର ମରାମତି ତଥା ରକ୍ଷଣାବେକ୍ଷଣ ଏହି ଶାଖାର ରେଡ଼ିଓ ଇନିସ୍‌ପେକ୍ଟରମାନଙ୍କ ମାଧ୍ୟମରେ କରାଯାଇଥାଏ । ସେମାନେ ମଧ୍ୟ ବିଧାନସଭା ବିବରଣୀ ସହିତ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମର ବିବରଣୀକୁ ରେକର୍ଡ଼ିଙ୍ଗ କରିଥାଆନ୍ତି । ସରକାର ସି.ଭି.ସ୍କିମ୍ ଜରିଆରେ ରାଜ୍ୟର ବିଭିନ୍ନ ଶିକ୍ଷାନୁଷ୍ଠାନ ଏବଂ ସୂଚନା କେନ୍ଦ୍ରକୁ ୯୭୨ ଗୋଟି ଟି.ଭି. ସେଟ୍ ବିନାମୂଲ୍ୟରେ ଯୋଗାଇ ଦେଇଛନ୍ତି । ୮୫୭ ଗୋଟି ଟି.ଭି. ସେଟ୍ ବିଭିନ୍ନ ଗ୍ରାମପଞ୍ଚାୟତକୁ ଯୋଗାଇ ଦିଆଯାଇଛି । ଏହି ଟି.ଭି. ସେଟ୍‌ଗୁଡ଼ିକର ଶତକଡ଼ା ୭୫ ଭାଗ ମୂଲ୍ୟ ରାଜ୍ୟ ସରକାର ବହନ କରିଥିବାବେଳେ ଅବଶିଷ୍ଟ ୨୫ ଭାଗ ସଂପୃକ୍ତ ଗ୍ରାମପଞ୍ଚାୟତ ବହନ କରିଥାନ୍ତି । ପର୍ଯ୍ୟାୟକ୍ରମେ ବିଭିନ୍ନ ସୂଚନାକେନ୍ଦ୍ର ତଥା ପାଠାଗାରମାନଙ୍କୁ କଳାଧଳା ଟି.ଭି. ସେଟ୍ ବଦଳରେ ରଙ୍ଗୀନ ଟି.ଭି. ସେଟ୍ ଯୋଗାଇ ଦିଆଯାଉଛି । ୨୦୦୯-୧୦ ଆର୍ଥିକ ବର୍ଷ ପାଇଁ ଏହି ଶାଖା ନିମନ୍ତେ ୮୯୦ ହଜାର ଟଙ୍କାର ବ୍ୟୟ ଅଟକଳ କରାଯାଇଛି ।

**ଦୃଶ୍ୟଶ୍ରାବ୍ୟ ପ୍ରଚାର ଶାଖା**

ଏହି ବିଭାଗ ଅଧୀନରେ ଏକ ଦୃଶ୍ୟଶ୍ରାବ୍ୟ ପ୍ରଚାର ଶାଖା କାର୍ଯ୍ୟ କରୁଛି । ବିଭିନ୍ନ ସ୍ଥାନରେ ଚଳଚ୍ଚିତ୍ର ପ୍ରଦର୍ଶନ କରିବା ସମେତ ସାଧାରଣ ସଭାରେ ଡ଼ାକବାଜି ଯନ୍ତ୍ରର ବ୍ୟବସ୍ଥା ଏହି ଶାଖା ପକ୍ଷରୁ କରାଯାଇଥାଏ । ଏହି ଶାଖା ନିମନ୍ତେ ୨୦୦୯-୧୦ ଆର୍ଥିକ ବର୍ଷ ପାଇଁ ଉଭୟ ଅଣଯୋଜନା ଏବଂ ଯୋଜନା ବାବଦରେ ୧୫୩୯ ହଜାର ଟଙ୍କାର ବ୍ୟୟ ଅଟକଳ କରାଯାଇଛି ।

### ରାଜ୍ୟର ବିଶିଷ୍ଟ ବ୍ୟକ୍ତି ଓ ସ୍ୱାଧୀନତା ସଂଗ୍ରାମୀମାନଙ୍କ ବକ୍ତବ୍ୟ/ସ୍ୱର ସଂରକ୍ଷଣ

ରାଜ୍ୟର ବିଶିଷ୍ଟ ବ୍ୟକ୍ତି, ସ୍ୱାଧୀନତା ସଂଗ୍ରାମୀମାନଙ୍କ ବକ୍ତବ୍ୟ ଓ ସ୍ୱର ସଂରକ୍ଷଣ କରି ରଖିବା ନିମନ୍ତେ ରାଜ୍ୟ ସରକାର ନିଷ୍ପତ୍ତି ନେଇଛନ୍ତି । ଏଥିପାଇଁ ବିଭାଗ ପକ୍ଷରୁ ଆବଶ୍ୟକ ପଦକ୍ଷେପ ଗ୍ରହଣ କରାଯାଇଛି । ୨୦୦୯-୧୦ ଆର୍ଥିକ ବର୍ଷରେ ଏହି କାର୍ଯ୍ୟକ୍ରମ ପାଇଁ ୪୯ ହଜାର ଟଙ୍କାର ବ୍ୟୟ ଅଟକଳ କରାଯାଇଛି ।

### ବିଜ୍ଞାପନ

ଏହି ବିଭାଗ ଦ୍ୱାରା ବିଭିନ୍ନ ସମ୍ବାଦପତ୍ର ଏବଂ ପତ୍ରିକାରେ ସମସ୍ତ ସରକାରୀ ବିଜ୍ଞାପନ ପ୍ରକାଶିତ ହୋଇଥାଏ । ବର୍ଗୀକୃତ ବିଜ୍ଞାପନ ଯଥା : ଟେଣ୍ଡର ନୋଟିସ୍, କୋଟେସନ୍ କଲ୍ ନୋଟିସ୍, ନିଯୁକ୍ତି ବିଜ୍ଞାପନ, ଶିକ୍ଷାନୁଷ୍ଠାନଗୁଡ଼ିକରେ ନାମଲେଖା ନିମନ୍ତେ ବିଜ୍ଞାପନ ପ୍ରଭୃତି ଏହି ବିଭାଗ ପକ୍ଷରୁ ସର୍ବସାଧାରଣଙ୍କ ଗୋଚରାର୍ଥେ ବିଭିନ୍ନ ସମ୍ବାଦପତ୍ରରେ ପ୍ରକାଶ କରାଯାଏ । ଏହି ବିଭାଗ ଜରିଆରେ ବିଭିନ୍ନ ନିଗମ ଓ ସରକାରଙ୍କ ଦ୍ୱାରା ପରିଚାଳିତ ସଂସ୍ଥାଗୁଡ଼ିକର ଟେଣ୍ଡର ନୋଟିସ୍ ପ୍ରଭୃତି ମଧ୍ୟ ପ୍ରକାଶିତ ହୋଇଥାଏ । ୨୦୦୮-୦୯ ବର୍ଷରେ ୫୦୬୩ଟି ବର୍ଗୀକୃତ ବିଜ୍ଞାପନ, ୧୩୪୨ଟି ଭୂ-ଅଧିଗ୍ରହଣ ବିଜ୍ଞାପନ ଏବଂ ୨୭୮ଟି ପ୍ରଜ୍ଞାପନମୂଳକ ବିଜ୍ଞାପନ ପ୍ରକାଶିତ ହୋଇଛି । ବିଭିନ୍ନ ବିଜ୍ଞାପନ ପ୍ରକାଶନ ବାବଦରେ ୨୦୦୯-୧୦ ଆର୍ଥିକ ବର୍ଷ ପାଇଁ ଉଭୟ ଅଣଯୋଜନା ଏବଂ ଯୋଜନା ବାବଦରେ ୩୯୫୦୦ ହଜାର ଟଙ୍କାର ବ୍ୟୟ ଅଟକଳ କରାଯାଇଛି ।

### ଗବେଷଣା, ତଥ୍ୟ ସୂଚନା ଓ ପ୍ରଶିକ୍ଷଣ

ବିଭାଗର ଏହି ଶାଖାଟି ସରକାରଙ୍କ ବିଭିନ୍ନ ବିଭାଗରୁ ତଥ୍ୟ ସଂଗ୍ରହ ସହ ଏହାକୁ ଭବିଷ୍ୟତରେ ଉପଯୋଗ ପାଇଁ ସଂରକ୍ଷଣ କରି ରଖିଥାଏ । ଏହି ଶାଖା ମଧ୍ୟ ବିଭିନ୍ନ ସମ୍ବାଦପତ୍ରରୁ ଗୁରୁତ୍ୱପୂର୍ଣ୍ଣ ସମ୍ବାଦ, ଗବେଷଣାମୂଳକ ସନ୍ଦର୍ଭରୁ ମୂଲ୍ୟବାନ ଲେଖା ଏବଂ ସରକାରଙ୍କ ଦ୍ୱାରା ପ୍ରକାଶିତ ସୂଚନା ସମ୍ବନ୍ଧୀୟ ପୁସ୍ତିକାରୁ ମୂଲ୍ୟବାନ ଉପାଦାନଗୁଡ଼ିକ ସଂଗ୍ରହ କରି ଏହାକୁ ସୁରକ୍ଷିତ ରଖେ । ଗବେଷକ, ବିଦ୍ୟାର୍ଥୀ, ଲେଖକ ତଥା ବୁଦ୍ଧିଜୀବୀମାନଙ୍କର ବୌଦ୍ଧିକ ବିକାଶ, ଜ୍ଞାନ ଆହରଣ ଓ ଗବେଷଣା ନିମନ୍ତେ ଏହି ସମସ୍ତ ସଂଗୃହୀତ ତଥ୍ୟଗୁଡ଼ିକୁ ସେମାନଙ୍କୁ ଯୋଗାଇ ଦେଇଥାଏ । ବିଭାଗ ପକ୍ଷରୁ ଉକ୍ତ ଶାଖାରେ ବିଭିନ୍ନ ପୁସ୍ତକ ସମ୍ବଳିତ ଏକ ପାଠାଗାର ଅଛି । ଯେଉଁଥିରେ କି ବହୁ ସଂଖ୍ୟକ ପୁସ୍ତକ, ମାନଚିତ୍ର, ଫିଚର ଓ ପ୍ରଚାର ପୁସ୍ତିକାଗୁଡ଼ିକୁ ସଂରକ୍ଷଣ କରି ରଖାଯାଇଛି । ୨୦୦୮-୦୯ ବର୍ଷରେ ଏହି ଶାଖାକୁ ୩୫୦ ଜଣ ପାଠକ ତଥା ୨୫୦ ଜଣ ବିଦ୍ୟାର୍ଥୀ ସମ୍ବାଦପତ୍ର ପଠନ ଏବଂ ବିଭିନ୍ନ ତଥ୍ୟ ସଂଗ୍ରହ ନିମନ୍ତେ ଆସିଥିଲେ । ବିଭାଗର ସୂଚନା ଅଧିକାରୀମାନଙ୍କ ଆବଶ୍ୟକତା ଓ ଅନ୍ୟାନ୍ୟ ଉପାଦେୟ କାର୍ଯ୍ୟ ନିମନ୍ତେ ଏହି ଶାଖା ଲେଖା ତଥ୍ୟ ଯୋଗାଇ ଦେଇଥାଏ । ଉକ୍ତ ବର୍ଷରେ ୨୦୦ ଜଣ ବିଭାଗୀୟ ଅଧିକାରୀ / କର୍ମଚାରୀଙ୍କୁ ସେମାନଙ୍କର ଆବଶ୍ୟକତା ମୁତାବକ ତଥ୍ୟ ଯୋଗାଇ ଦିଆଯାଇଥିଲା । ଏହିବର୍ଷ ୪ ଜଣ ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ ଓ ବରିଷ୍ଠ ଅଧିକାରୀ ଏବଂ ୬ ଜଣ ଉପଖଣ୍ଡ ସୂଚନା ଓ ଲୋକ ସଂପର୍କ ଅଧିକାରୀଙ୍କୁ ଆଇ.ଆଇ.ଏମ୍.ସି., ଢ଼େଙ୍କାନାଳକୁ ପ୍ରଶିକ୍ଷଣ ନିମନ୍ତେ ପଠାଯାଇଛି ।

୨୦୦୯-୧୦ ଆର୍ଥିକ ବର୍ଷ ପାଇଁ ଗବେଷଣା, ତଥ୍ୟ ସୂଚନା ଓ ପ୍ରଶିକ୍ଷଣ ଶାଖା ନିମନ୍ତେ ମୋଟ ୩୮୮ ହଜାର ଟଙ୍କା ବ୍ୟୟ ଅଟକଳ କରାଯାଇଛି ।

### ଓଡ଼ିଆ ଅନୁବାଦକଙ୍କ ଶାଖା

ଓଡ଼ିଆ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହୋଇଥିବା ସମ୍ବାଦ, ମତାମତ ଏବଂ ପ୍ରତିକ୍ରିୟା ସଂପର୍କରେ ମହାମାନ୍ୟ ରାଜ୍ୟପାଳ, ମାନ୍ୟବର ମୁଖ୍ୟମନ୍ତ୍ରୀ ଏବଂ ମୁଖ୍ୟ ଶାସନ ସଚିବ, ଶାସନ ସଚିବ ତଥା ସ୍ୱତନ୍ତ୍ର ଶାସନ ସଚିବମାନଙ୍କ ନିକଟକୁ ଇଂରାଜୀରେ ସୂଚନା ପ୍ରଦାନ କରିବା ଓଡ଼ିଶା ସରକାରଙ୍କ ଓଡ଼ିଆ ଅନୁବାଦକ ଶାଖାର ପ୍ରଧାନ କାର୍ଯ୍ୟ । ଏବେ ଏହି କାର୍ଯ୍ୟାଳୟ ପରିସର ବୃଦ୍ଧି କରାଯାଇ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଅବଗତି ନିମନ୍ତେ ପ୍ରତ୍ୟହ ଇଣ୍ଟରନେଟ୍‌ରୁ ସମ୍ବାଦ-ସୂଚନା ପ୍ରେରଣ କରାଯିବା ସଙ୍ଗେ ସଙ୍ଗେ ବିଭିନ୍ନ ସମ୍ବାଦ-ହ୍ୟାଣ୍ଡ-ଆଉଟ୍ ଓଡ଼ିଶା ସରକାରଙ୍କ ୱେବ୍‌ସାଇଟ୍‌ରେ ପ୍ରସାର କରିବା ଦାୟିତ୍ୱ ଦିଆଯାଇଛି । ୨୦୦୮-୦୯ ବର୍ଷରେ ୨୮୫୭ ସଂଖ୍ୟକ 'ପ୍ରେସ୍ ରାଉଣ୍ଡ-ଅପ୍' ନିର୍ଗମନ କରାଯାଇଛି ।

### ସୂଚନା କେନ୍ଦ୍ର ତଥା ପାଠାଗାର

ବିଭାଗ ଅଧୀନରେ ବିଭିନ୍ନ ପୌରାଞ୍ଚଳ ତଥା ଗ୍ରାମାଞ୍ଚଳରେ ଅବସ୍ଥିତ ସୂଚନା କେନ୍ଦ୍ର ତଥା ପାଠାଗାରଗୁଡ଼ିକ ସୂଚନା ପ୍ରଦାନ ତଥା ବୁଦ୍ଧିଜୀବୀମାନଙ୍କ ଜ୍ଞାନପିପାସା ମେଣ୍ଟାଇବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ଏସବୁ ସୂଚନା କେନ୍ଦ୍ର ଓ ପାଠାଗାରମାନଙ୍କରେ ପାଠକମାନଙ୍କ ନିମନ୍ତେ ବିଭିନ୍ନ ବହି, ପତ୍ରପତ୍ରିକା, ସମ୍ବାଦପତ୍ର ତଥା ଅନ୍ୟାନ୍ୟ ସୂଚନା ପୁସ୍ତିକା ସୁବିଧାରେ ଉପଲବ୍ଧ ହୋଇଥାଏ । ଏତଦ୍‌ବ୍ୟତୀତ ଟି.ଭି. ଏବଂ ରେଡ଼ିଓ ସେଟ୍ ମଧ୍ୟ ସୂଚନା କେନ୍ଦ୍ରମାନଙ୍କୁ ଯୋଗାଇ ଦିଆଯାଇଛି । ସଂପ୍ରତି ରାଜ୍ୟ ସଦର ମହକୁମା ଭୁବନେଶ୍ୱର ଏବଂ ନୂଆଦିଲ୍ଲୀ ଓ କୋଲକତାରେ ଗୋଟିଏ ଲେଖାଏଁ ମିଶାଇ ସମୁଦାୟ ୮୫ଟି ସୂଚନା କେନ୍ଦ୍ର ଓ ପାଠାଗାର କାର୍ଯ୍ୟ କରୁଅଛି । ବିଗତ ଆର୍ଥିକ ବର୍ଷରେ ସୂଚନାକେନ୍ଦ୍ର ତଥା ପାଠାଗାର ନିମନ୍ତେ ୪୦୦ ହଜାର ଟଙ୍କାର ନୂତନ ବହି କ୍ରୟ କରାଯାଇ ବିଭିନ୍ନ ସୂଚନା କେନ୍ଦ୍ରମାନଙ୍କୁ ଯୋଗାଇ ଦିଆଯାଇଛି । ଏସବୁ ପରିଚାଳନା ନିମନ୍ତେ ଆଗାମୀ ୨୦୦୯-୧୦ ଆର୍ଥିକ ବର୍ଷପାଇଁ ୧୯୩୧୮ ହଜାର ଟଙ୍କାର ବ୍ୟୟ ଅଟକଳ କରାଯାଇଛି ।

### ପ୍ରଦର୍ଶନୀ




ସରକାରଙ୍କ ଯୋଜନା, କାର୍ଯ୍ୟକ୍ରମ, ନୀତି ତଥା ସଫଳତା ସଂପର୍କରେ ଜନସଚେତନତା ସୃଷ୍ଟି କରିବା ପାଇଁ ରାଜ୍ୟର ବିଭିନ୍ନ ଗ୍ରାମାଞ୍ଚଳ ତଥା ସହରାଞ୍ଚଳରେ ବିଭାଗ ପକ୍ଷରୁ ପ୍ରଦର୍ଶନୀମାନ ଆୟୋଜନ କରାଯାଇଥାଏ । ଏହି ପ୍ରଦର୍ଶନୀରେ ଓଡ଼ିଶାର କଳା, ସଂସ୍କୃତି, ପରମ୍ପରା, ହସ୍ତତନ୍ତ, ହସ୍ତଶିଳ୍ପ, କୃଷି, ଶିଳ୍ପ ଇତ୍ୟାଦି ବିଷୟ ସମେତ ଇସ୍ପାତ, ଶକ୍ତି ଏବଂ ବନ୍ଦର ସ୍ଥାପନ କ୍ଷେତ୍ରରେ ହୋଇଥିବା ବିଭିନ୍ନ ଉଲ୍ଲେଖଯୋଗ୍ୟ ସଫଳତା ସଂପର୍କିତ ବିଷୟ ମଧ୍ୟ ସ୍ଥାନ ପାଇଥାଏ । ପ୍ରତିବର୍ଷ ନୂଆଦିଲ୍ଲୀଠାରେ ହେଉଥିବା ଭାରତ ଆନ୍ତର୍ଜାତିକ ବାଣିଜ୍ୟ ମେଳାରେ ମଧ୍ୟ ବିଭାଗ ପକ୍ଷରୁ ପ୍ରଦର୍ଶନୀ ମଣ୍ଡପ ଖୋଲାଯାଇଥାଏ । ୨୦୦୮-୦୯ ଆର୍ଥିକ ବର୍ଷରେ ବିଭାଗ ପକ୍ଷରୁ ଆନ୍ତର୍ଜାତିକ ବାଣିଜ୍ୟ ମେଳା, ନୂଆଦିଲ୍ଲୀକୁ ମିଶାଇ ସମୁଦାୟ ୯ ଗୋଟି ପ୍ରଦର୍ଶନୀ ଆୟୋଜିତ ହୋଇଛି । ୨୦୦୯-୧୦ ଆର୍ଥିକ ବର୍ଷରେ ପ୍ରଦର୍ଶନୀ ଆୟୋଜନ ନିମନ୍ତେ ପ୍ରାୟ ୯୧୦୦ ହଜାର ଲକ୍ଷ ଟଙ୍କାର ବ୍ୟୟ ଅଟକଳ କରାଯାଇଛି ।

### ସ୍ୱତନ୍ତ୍ର ଉତ୍ସବ

ଏହି ବିଭାଗ ତରଫରୁ ସ୍ୱାଧୀନତା ଦିବସ, ଗାନ୍ଧୀ ଜୟନ୍ତୀ, ସାଧାରଣତନ୍ତ୍ର ଦିବସ, ଓଡ଼ିଶା ଦିବସ, ଜାତୀୟ ପ୍ରେସ୍ ଦିବସ ତଥା ବିଶିଷ୍ଟ ବ୍ୟକ୍ତିମାନଙ୍କର ଜୟନ୍ତୀ ଓ ଶ୍ରାଦ୍ଧ ଦିବସ ପ୍ରଭୃତି ସ୍ୱତନ୍ତ୍ର ଉତ୍ସବ ରାଜ୍ୟ, ଜିଲ୍ଲା ତଥା ଉପଖଣ୍ଡ ସଦର ମହକୁମାମାନଙ୍କରେ ପାଳନ କରାଯାଇଥାଏ । ୨୦୦୮-୦୯ ଆର୍ଥିକ ବର୍ଷରେ ଏହିଭଳି ୩୧ଟି ସ୍ୱତନ୍ତ୍ର ଉତ୍ସବର ଆୟୋଜନ କରାଯାଇଛି । ନୂଆଦିଲ୍ଲୀଠାରେ ଅନୁଷ୍ଠିତ ହେଉଥିବା ସାଧାରଣତନ୍ତ୍ର ଦିବସ ପ୍ୟାରେଡ଼ରେ ବିଭାଗ ପକ୍ଷରୁ ପ୍ରଜ୍ଞାପନ ମେଢ଼ ପ୍ରଦର୍ଶିତ ହୋଇଥିଲା । ଏତଦ୍‌ବ୍ୟତୀତ ପୁରୀ ରଥଯାତ୍ରା ସମୟରେ ସୂଚନା କେନ୍ଦ୍ର ଖୋଲା ଯାଇଥିଲା । ୨୦୦୯-୧୦ ଆର୍ଥିକ ବର୍ଷରେ ସ୍ୱତନ୍ତ୍ର ଉତ୍ସବ ନିମନ୍ତେ ଉଭୟ ଅଣଯୋଜନା ଏବଂ ଯୋଜନା ବାବଦରେ ୫୨ ଲକ୍ଷ ୨୦ ହଜାର ଟଙ୍କାର ବ୍ୟୟ ଅଟକଳ କରାଯାଇଛି ।

### ସଙ୍ଗୀତ ଓ ନାଟକ ସେବା

ଏହା ପ୍ରଚାରର ଏକ ଫଳପ୍ରଦ ମାଧ୍ୟମ । ସହରାଞ୍ଚଳ ତଥା ଗ୍ରାମାଞ୍ଚଳମାନଙ୍କରେ ସରକାରଙ୍କର ବିଭିନ୍ନ ଯୋଜନା, କାର୍ଯ୍ୟକ୍ରମ ତଥା ନୀତିଗୁଡ଼ିକର ଯଥାଯଥ ପ୍ରଚାର ନିମନ୍ତେ ଏହି ବିଭାଗ ପକ୍ଷରୁ ପାରମ୍ପରିକ ଲୋକନୃତ୍ୟ ଓ ଗୀତ, ପାଲା, ଦାସକାଠିଆ, ଘୋଡ଼ାନାଚ, ପଥପ୍ରାନ୍ତ ନାଟକ ଏବଂ ସଙ୍ଗୀତ କାର୍ଯ୍ୟକ୍ରମର ଆୟୋଜନ କରାଯାଇଥାଏ । ୨୦୦୮-୦୯ ବର୍ଷରେ ବିଭାଗ ପକ୍ଷରୁ ରାଜ୍ୟରେ ଏହିଭଳି ୧୪୯୦ଟି କାର୍ଯ୍ୟକ୍ରମ ଆୟୋଜନ କରାଯାଇଛି । ଏତଦ୍‌ବ୍ୟତୀତ ଆନ୍ତଃରାଜ୍ୟ ସାଂସ୍କୃତିକ ବିନିମୟ କାର୍ଯ୍ୟକ୍ରମ ମାଧ୍ୟମରେ

୨୦୦୮-୦୯ ବର୍ଷରେ କୋଲକତାଠାରେ ଓଡ଼ିଆ ଚଳଚ୍ଚିତ୍ର ଓ ସାଂସ୍କୃତିକ କାର୍ଯ୍ୟକ୍ରମ ଆୟୋଜନ କରାଯାଇଛି । ଏଥିନିମନ୍ତେ ୨୦୦୯-୧୦ ଆର୍ଥିକ ବର୍ଷପାଇଁ ୨୧ ଲକ୍ଷ ଟଙ୍କାର ବ୍ୟୟ ଅଟକଳ କରାଯାଇଛି ।

**କମ୍ପ୍ୟୁଟର ପ୍ରଚଳନ ପରିକଳ୍ପନା**

ଗଣମାଧ୍ୟମରେ ପ୍ରଚାର କାର୍ଯ୍ୟକ୍ରମକୁ ଅଧିକ କ୍ରିୟାଶୀଳ ଏବଂ ଫଳପ୍ରସୂ କରି ତତ୍‌କ୍ଷଣାତ୍ ସମ୍ବାଦ ପ୍ରେରଣ ନିମନ୍ତେ ବିଭାଗୀୟ ଜିଲ୍ଲା ଲୋକ ସଂପର୍କ କାର୍ଯ୍ୟାଳୟଗୁଡ଼ିକୁ କମ୍ପ୍ୟୁଟରୀକରଣ କରାଯାଇଛି । ଏତଦ୍‌ବ୍ୟତୀତ ବିଭାଗୀୟ ମୁଖ୍ୟ କାର୍ଯ୍ୟାଳୟରେ କମ୍ପ୍ୟୁଟର ସହିତ ଲାନ୍ ବ୍ୟବସ୍ଥା ରହିଛି । ଜନସାଧାରଣଙ୍କୁ ସବିଶେଷ ସୂଚନା ଯୋଗାଇ ଦେବା ନିମନ୍ତେ ଏକ କିଓସ୍କ ସ୍ଥାପନ କରାଯାଇଛି । ରାଜ୍ୟ ସୂଚନା ଓ ପ୍ରଯୁକ୍ତି ବିଭାଗର ପୋର୍ଟାଲ ଗ୍ରୁପ ମାଧ୍ୟମରେ ବିଜ୍ଞାପନ ବିଷୟବସ୍ତୁ ଓ ଟେଣ୍ଡର ସମ୍ବନ୍ଧୀୟ କାଗଜପତ୍ର ରାଜ୍ୟ ସରକାରଙ୍କର ୱେବସାଇଟ୍‌କୁ ପଠାଇବା ନିମନ୍ତେ ଏକ ନୂତନ କମ୍ପ୍ୟୁଟର ପ୍ରଣାଳୀର ବ୍ୟବସ୍ଥା କରାଯାଇଛି ।

ରାଜ୍ୟ ସଚିବାଳୟଠାରେ ସମ୍ବାଦ ସୂଚନା ଶାଖାରେ ସୂଚନା ଅଧିକାରୀମାନଙ୍କର କାର୍ଯ୍ୟକୁ କ୍ରିୟାଶୀଳ କରିବା ଉଦ୍ଦେଶ୍ୟରେ ୩ ଗୋଟି କମ୍ପ୍ୟୁଟର ଯୋଗାଇ ଦିଆଯାଇଛି । ଏହି କମ୍ପ୍ୟୁଟର ପ୍ରଚଳନ ପରିକଳ୍ପନାରେ ୨୦୦୯-୧୦ ଆର୍ଥିକ ବର୍ଷପାଇଁ ୧୮୫୧ ହଜାର ଟଙ୍କାର ବ୍ୟୟଅଟକଳ କରାଯାଇଛି ।

**ସୂଚନା ଅଧିକାର**

ସୂଚନା ଓ ଲୋକ ସଂପର୍କ ବିଭାଗ ମୁଖ୍ୟତଃ ସୂଚନା ଅଧିକାର ଆଇନ-୨୦୦୫କୁ ଓଡ଼ିଶାରେ କାର୍ଯ୍ୟକାରୀ କରିବାରେ ଗୁରୁଦାୟିତ୍ୱ ବହନ କରିଛି । କାର୍ଯ୍ୟକାରୀ ସୂଚନା ପୁସ୍ତିକା, ସଚିବାଳୟର ଅଭ୍ୟର୍ଥନା କେନ୍ଦ୍ରରେ ଏକ କେନ୍ଦ୍ରୀୟ କକ୍ଷ ସ୍ଥାପନ, ଜନସୂଚନା ଅଧିକାରୀ ତଥା ଅଭିଯୋଗ ଶୁଣାଣି ସଂପର୍କିତ ଉଚ୍ଚ କର୍ତ୍ତୃପକ୍ଷଙ୍କ ତାଲିମ୍ ପ୍ରଦାନ, ଓଡ଼ିଶା ସୂଚନା ଆୟୋଗ ଗଠନ ଏବଂ ଓଡ଼ିଶା ସରକାରଙ୍କ ୱେବସାଇଟ୍ ମାଧ୍ୟମରେ ତଥ୍ୟ ପ୍ରଦାନ ଆଦି କାର୍ଯ୍ୟ ସଂପାଦନ ସହ ଓଡ଼ିଶା ସୂଚନା ଅଧିକାର ଆଇନ-୨୦୦୫ ପ୍ରଣୟନ ଅଭୁତପୂର୍ବ ସଫଳତା ଆଣିପାରିଛି । ୨୦୦୮-୦୯ ବର୍ଷରେ ଏହି କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରାଯାଇ ସୂଚନା ଆଇନର ସଫଳ କାର୍ଯ୍ୟକାରିତା ପାଇଁ ସରକାରୀ ବିଭାଗର ଜନସୂଚନା ଅଧିକାରୀ ଓ ପ୍ରଥମ ଅପିଲ୍ ଶୁଣାଣି କର୍ତ୍ତୃପକ୍ଷମାନଙ୍କୁ ତାଲିମ୍ ପ୍ରଦାନ କରାଯାଇଅଛି । ଏସବୁ କାର୍ଯ୍ୟକ୍ରମ ନିମନ୍ତେ ୨୦୦୯-୧୦ ଆର୍ଥିକ ବର୍ଷ ପାଇଁ ପୂର୍ବ ଆର୍ଥିକ ବର୍ଷଠାରୁ ଅଧିକ ଅର୍ଥ ବ୍ୟୟଅଟକଳ କରାଯାଇଛି । ସୂଚନା ଆଇନର ସଫଳ ରୂପାୟନ ନିମନ୍ତେ ବିହିତ ପଦକ୍ଷେପମାନ ଯୁଦ୍ଧକାଳୀନ ଭିତ୍ତିରେ ନିଆଯାଉଅଛି । ଉକ୍ତ କାର୍ଯ୍ୟକ୍ରମ ପାଇଁ ୨୦୦୯-୧୦ ଆର୍ଥିକ ବର୍ଷରେ ୨୦୫୦୦ ହଜାର ଟଙ୍କାର ବ୍ୟୟଅଟକଳ କରାଯାଇଛି ।



# ସମ୍ବାଦ ପରିକ୍ରମା

## ନୂତନ ମୁଖ୍ୟ ଶାସନ ସଚିବଙ୍କ ମତ : ବିକାଶ ଓ ପ୍ରଗତି ମାଧ୍ୟମରେ ମାଓବାଦୀ ସମସ୍ୟାର ସମାଧାନ ହେବ

ଗତ ସେପ୍ଟେମ୍ବର ପହିଲାରୁ ରାଜ୍ୟର ୩୮ତମ ମୁଖ୍ୟ ଶାସନ ସଚିବ ଭାବେ ଉନ୍ନୟନ କମିଶନର ଶ୍ରୀ ତରୁଣକାନ୍ତି ମିଶ୍ର, ମୁଖ୍ୟ ଶାସନ ସଚିବ ଭାବେ ଶ୍ରୀ ଅଜିତ କୁମାର ତ୍ରିପାଠୀଙ୍କଠାରୁ ଦାୟିତ୍ୱ ଗ୍ରହଣ କରିଛନ୍ତି । ଏହି ପରିପ୍ରେକ୍ଷୀରେ ସରକାରୀ କଳକୁ ଲୋକାଭିମୁଖୀ ତଥା ସମ୍ବେଦନଶୀଳ କରିବା ଉପରେ ସେ ପ୍ରାଥମିକତା ଦେବେ ବୋଲି କହିଛନ୍ତି ।

ସେ ସାମ୍ବାଦିକମାନଙ୍କୁ ଏକ ସୌଜନ୍ୟମୂଳକ ସାକ୍ଷାତକାରରେ କହିଥିଲେ ଯେ, ସମ୍ପ୍ରତି ମାଓବାଦୀ ସମସ୍ୟା ରାଜ୍ୟ ସରକାରଙ୍କ ପାଇଁ ମୁଖ୍ୟ ପ୍ରସଙ୍ଗ । ବିକାଶ ଓ ପ୍ରଗତି ମାଧ୍ୟମରେ ଏହି ସମସ୍ୟାର ସମାଧାନ ହୋଇପାରିବ । ଯେଉଁ ଅଞ୍ଚଳ ବିକାଶ ପ୍ରକ୍ରିୟାରୁ ବଞ୍ଚିତ ସେଠାରେ ମାଓବାଦୀ ସମସ୍ୟା ମୁଣ୍ଡ ଟେକିଛି । ସେହି ଅଞ୍ଚଳମାନଙ୍କୁ ବିକାଶ ଓ ପ୍ରଗତିର ମୁଖ୍ୟସ୍ରୋତକୁ ଆଣିବା ପାଇଁ ସେ ପନ୍ଥା ନିର୍ଦ୍ଧାରଣ କରିବେ । ସେହିପରି ରାଜ୍ୟର ବହୁବିଧ ସ୍ୱାର୍ଥ ହାସଲ ପାଇଁ ସେ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ମଧ୍ୟରେ ସୁସମ୍ପର୍କ ସ୍ଥାପନ ଉପରେ ଗୁରୁତ୍ୱାରୋପ କରିଥିଲେ । ସୁସମ୍ପର୍କ ସ୍ଥାପିତ ହେଲେ ରାଜ୍ୟ ବହୁଳ ଭାବେ ଉପକୃତ ହେବ । ସୌଭାଗ୍ୟବଶତଃ କେନ୍ଦ୍ର ସରକାରଙ୍କ ସଚିବାଳୟରେ ତାଙ୍କର ଅନେକ ସହଯୋଗୀ ସଚିବ ଭାବେ କାର୍ଯ୍ୟ କରୁଛନ୍ତି ବୋଲି ସେ କହିଥିଲେ । ସେମାନଙ୍କ ସହଯୋଗ ସେ ନିଶ୍ଚିତ ଭାବେ ଲାଭ କରିପାରିବେ ବୋଲି ଆଶାପ୍ରକାଶ କରିଥିଲେ ।

ପ୍ରଶାସନ ମାଧ୍ୟମରେ ଜନସାଧାରଣଙ୍କୁ ସାମାଜିକ ନ୍ୟାୟ ପ୍ରଦାନ କରିବା ଦିଗରେ ସେ କାର୍ଯ୍ୟ କରିବେ । ଜଣେ ସୃଜନଶୀଳ ଲେଖକ ଭାବେ ଖ୍ୟାତି ଅର୍ଜନ କରିଥିବା ଶ୍ରୀ ମିଶ୍ର କହିଥିଲେ ଯେ, ସରକାରୀ କାର୍ଯ୍ୟରେ ସୃଜନଶୀଳତା ସୃଷ୍ଟି ମଧ୍ୟ ସମ୍ଭବ । ଏହା ପ୍ରଶାସନକୁ କ୍ରିୟାଶୀଳ କରିପାରିବ । ମେଗା ଶିଳ୍ପ ପ୍ରକଳ୍ପ ପ୍ରତିଷ୍ଠା ବେଳେ ଥଇଥାନ ଓ ପୁନର୍ବାସ ନୀତିକୁ ଠିକ୍ ଭାବେ କାର୍ଯ୍ୟକାରୀ କରିବା ଉପରେ ସେ ଗୁରୁତ୍ୱାରୋପ କରିଥିଲେ । ଉଲ୍ଲେଖନୀୟ ଯେ ସେ ୧୯୭୫ ମସିହା ବ୍ୟାଚର ଆଇ.ଏ.ଏସ୍. ଅଫିସର ।

## ରାଜ୍ୟ ମନ୍ତ୍ରିମଣ୍ଡଳର ନିଷ୍ପତ୍ତି : ବାଲ୍ୟବିବାହ ଉଚ୍ଛେଦ ଆଇନ ଉଲଙ୍ଘନ କଲେ ଜେଲ୍

ବାଲ୍ୟବିବାହ ଉଚ୍ଛେଦ ଆଇନ୍‌ର ଚିଠା ନିୟମକୁ କ୍ୟାବିନେଟ୍ ମଞ୍ଜୁରି ଦେଇଛନ୍ତି । ବାଲ୍ୟବିବାହ ପ୍ରଥାକୁ ବିଲୋପ କରିବା ପାଇଁ ସରକାର କଡ଼ା ପଦକ୍ଷେପ ନେଇଛନ୍ତି । ବାଲ୍ୟବିବାହ କରୁଥିବା ବ୍ୟକ୍ତି ଓ ଏହାକୁ ପ୍ରୋତ୍ସାହନ ଦେଉଥିବା ବ୍ୟକ୍ତିଙ୍କୁ ଦୁଇବର୍ଷ ଜେଲ ଦଣ୍ଡ ଓ ଏକ ଲକ୍ଷ ଟଙ୍କା ଜୋରିମାନା କରାଯିବ । ଏହାଛଡ଼ା କ୍ୟାବିନେଟ୍‌ରେ ଆଉ କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ନିଷ୍ପତ୍ତି ମଧ୍ୟ ନିଆଯାଇଛି ।

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଗତ ତା.୭.୦୯.୦୯ରିଖରେ ରାଜ୍ୟ ମନ୍ତ୍ରିମଣ୍ଡଳର ବୈଠକ ଅନୁଷ୍ଠିତ ହୋଇଥିଲା । ଏହି ବୈଠକରେ ୧୦ଟି ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବକୁ ଆଲୋଚନା କରାଯାଇ ମଞ୍ଜୁରି ଦିଆଯାଇଛି । ମୁଖ୍ୟ ଶାସନ ସଚିବ ଶ୍ରୀ ତରଣୁକାନ୍ତି ମିଶ୍ର ଏ ସଂପର୍କରେ ସାମ୍ବାଦିକମାନଙ୍କୁ ସୂଚନା ଦେଇ କହିଲେ ଯେ ବାଲ୍ୟବିବାହ ଭଳି ଏକ କୁ-ପ୍ରଥାର ବିଲୋପ ପାଇଁ

କେନ୍ଦ୍ର ସରକାର ୨୦୦୭ ମସିହାରେ ଏକ ଆଇନ୍ ପ୍ରଣୟନ କରିଥିଲେ ଏବଂ ଏହି ଆଇନ୍‌କୁ ପ୍ରଣୟନ କରିବା ପାଇଁ ରାଜ୍ୟମାନଙ୍କୁ କହିଥିଲେ । ରାଜ୍ୟ ସରକାର କରିଥିବା ଚିଠା ନିୟମକୁ ଅନୁମୋଦନ କରିଛନ୍ତି । ଫଳରେ ଚିଠା ନିୟମରେ ଥିବା ବ୍ୟବସ୍ଥା ଅନୁଯାୟୀ ୧୮ ବର୍ଷରୁ କମ୍ ପୁଅ ଓ ଝିଅଙ୍କ ମଧ୍ୟରେ ବିବାହ ହୋଇ ପାରିବ ନାହିଁ । ବାଲ୍ୟବିବାହ କରୁଥିବା ବ୍ୟକ୍ତି ଓ ଏହାକୁ ପ୍ରୋତ୍ସାହିତ କରୁଥିବା ବ୍ୟକ୍ତିଙ୍କୁ ଦୁଇବର୍ଷ ଜେଲଦଣ୍ଡ ଓ ଏକଲକ୍ଷ ଟଙ୍କା ପର୍ଯ୍ୟନ୍ତ ଜୋରିମାନା ବ୍ୟବସ୍ଥା ରହିଛି । କିନ୍ତୁ ମହିଳାମାନଙ୍କ କ୍ଷେତ୍ରରେ ଜେଲଦଣ୍ଡ ଲାଗୁ ହେବ ନାହିଁ । ଏହି ଆଇନ୍‌ରେ ବାଲ୍ୟବିବାହ ରୋକିବା ପାଇଁ ଜିଲ୍ଲାପାଳମାନଙ୍କୁ ନୋଡ଼ାଲ ଅଫିସରଭାବେ ଦାୟିତ୍ୱ ଦିଆଯାଇଛି । ଏହାଛଡ଼ା ପ୍ରତି ଜିଲ୍ଲାରେ ଜଣେ ଦ୍ୱିତୀୟ ଶ୍ରେଣୀ ପାହ୍ୟା ଅଫିସ୍‌ରଙ୍କୁ ବାଲ୍ୟବିବାହ ନିରୋଧ ଅଧିକାରୀ ଭାବେ ନିଯୁକ୍ତି ଦିଆଯିବ ଓ ଏହି ଅଧିକାରୀମାନେ ବାଲ୍ୟବିବାହ ଘଟଣାର ଅନୁସନ୍ଧାନ କରି ଅବୈଧ ଘୋଷଣା କରିବା ପାଇଁ ଜିଲ୍ଲା କୋର୍ଟରେ ଆବେଦନ କରିପାରିବେ । ଏହି ବିବାହର କୁପରିଣାମ ସଂପର୍କରେ ସଚେତନତା ସୃଷ୍ଟି ଲାଗି ବିଭିନ୍ନ ସ୍ୱେଚ୍ଛାସେବୀ ସଂଗଠନ ଏବଂ ଅନ୍ୟାନ୍ୟ ସଙ୍ଗଠନକୁ ସାମିଲ କରାଯିବ । ମହିଳା ଓ ଶିଶୁ ବିକାଶ ବିଭାଗ ରାଜ୍ୟସ୍ତରରେ ସମନ୍ୱୟ ରକ୍ଷା କରିବେ ଓ ମୁଖ୍ୟ ଶାସନ ସଚିବ ମଧ୍ୟ ନିୟମିତ ବ୍ୟବଧାନରେ ସମୀକ୍ଷା କରିବେ ।

ଓଡ଼ିଶା ପୌରାଞ୍ଚଳ ଆଇନ୍‌ର ୧୭(ଏ) ଧାରାର ସଂଶୋଧନ କରାଯାଇଛି । ନିର୍ବାଚନରେ ହୋଇଥିବା ଅନିୟମିତତା ସଂପର୍କରେ ଅଭିଯୋଗ ୧୫ ଦିନ ମଧ୍ୟରେ କରିବା ପାଇଁ ନିୟମ ଥିଲା । ପ୍ରାର୍ଥୀମାନଙ୍କର ନିର୍ବାଚନରେ ହୋଇଥିବା ଖର୍ଚ୍ଚର ହିସାବ ଦେବା ପାଇଁ ୩୦ ଦିନ ସମୟ ଦିଆଯାଇଛି । ଏବେ ଅନିୟମିତତା ସଂପର୍କରେ ଅଭିଯୋଗ ଦାଖଲର ଅବଧି ୪୫ ଦିନକୁ ବୃଦ୍ଧି କରାଯାଇଛି । ବିଧାୟକ ଓ ସାଂସଦଙ୍କ କ୍ଷେତ୍ରରେ ଏହି ବ୍ୟବସ୍ଥା ରହିଛି । ଏହାଛଡ଼ା ପୂର୍ବରୁ ସହରାଞ୍ଚଳରେ ଷ୍ଟାମ୍ପ ଡ୍ୟୁଟି ବାବଦରେ ଶତକଡ଼ା ୮ ଏବଂ ସହରାଞ୍ଚଳ ସରଚାର୍ଯ୍ୟ ବାବଦରେ ଶତକଡ଼ା ୩ ହାରରେ ମୋଟ ୧୧ ପ୍ରତିଶତ ଦେବାକୁ ପଡୁଥିଲା । କେନ୍ଦ୍ର ସରକାରଙ୍କ ଜବାହରଲାଲ ସହରାଞ୍ଚଳ ନବୀକରଣ ଯୋଜନାରେ ଏହି ବ୍ୟବସ୍ଥାର ସରଳୀକରଣ ପାଇଁ କୁହାଯାଇଥିଲା । ତେଣୁ ଏହି ଷ୍ଟାମ୍ପ ଡ୍ୟୁଟିକୁ ଶତକଡ଼ା ୫କୁ ହ୍ରାସ କରାଯାଇଛି । ଏଥିରୁ ୩ ପ୍ରତିଶତ ଅର୍ଥ ରାଜ୍ୟ ସରକାର ରଖିବେ ଏବଂ ୨ ପ୍ରତିଶତ ସଂପୃକ୍ତ ପୌର ସଂସ୍ଥାକୁ ଦିଆଯିବ । କେନ୍ଦୁପତ୍ର ତୋଳାଳି ଓ ବନ୍ଧାଳିଙ୍କ କଲ୍ୟାଣ ପାଣ୍ଠିକୁ କୋଟିଏ ଟଙ୍କା ଦିଆଯିବ । ଏହାପୂର୍ବରୁ ୯୦ ପ୍ରତିଶତ ଅର୍ଥ କେନ୍ଦୁପତ୍ର ସଂଗ୍ରହ ହୋଇଥିବା ଅଞ୍ଚଳରେ ଖର୍ଚ୍ଚ ହେଉଥିଲା ଓ ୧୦ ପ୍ରତିଶତ ରାଜ୍ୟର ଅନ୍ୟ ଅଞ୍ଚଳରେ ଖର୍ଚ୍ଚ କରାଯାଉଥିଲା ।

ଏହାଛଡ଼ା ଭୁବନେଶ୍ୱରରେ ନୌସେନାର ଫ୍ଲାଇଟ୍ ଅପରେସନ୍ ପାଇଁ ୟୁନିଟ୍ ବିମାନ ବନ୍ଦର ନିକଟରେ ୨.୯୯ ଏକର ଜମି ଯୋଗାଇ ଦିଆଯିବ । ଏଥିପାଇଁ ସେମାନେ ୨୯ ଲକ୍ଷ ୯୯ ହଜାର ଟଙ୍କା ସରକାରଙ୍କୁ ପ୍ରିମିୟମ ଦେବେ । ୭୪ ଲକ୍ଷ ୪୭ ହଜାର ଟଙ୍କା ନୌସେନାକୁ ସରକାର ଛାଡ଼ କରିଛନ୍ତି । ନୌସେନାର ବଙ୍ଗୋପସାଗରରେ ହୋଇଥିବା ସମରାଭ୍ୟାସକୁ ଏଠାରୁ ନିୟନ୍ତ୍ରଣ କରାଯାଇପାରିବ ଏବଂ ପ୍ରାକୃତିକ ବିପର୍ଯ୍ୟୟ ସମୟରେ ରିଲିଫ୍ ଓ ଥଇଥାନ କାର୍ଯ୍ୟରେ ନୌସେନାକୁ ସାମିଲ କରାଯିବ ।

କ୍ରୀଡ଼ାବିତ୍ ଅନୁରାଧା ବିଶ୍ୱାଳଙ୍କୁ ଚନ୍ଦ୍ରଶେଖରପୁରଠାରେ ୬୦ x ୮୦ ବର୍ଗ ଫୁଟର ଏକ ବଡ଼ ପ୍ଲଟ ଦିଆଯିବାକୁ କ୍ୟାବିନେଟରେ ନିଷ୍ପତ୍ତି ନିଆଯାଇଛି । ପୂର୍ବରୁ ତାଙ୍କୁ ୬୦ x ୪୦ ବର୍ଗ ଫୁଟର ଏକ ପ୍ଲଟ ଦିଆଯାଇଥିଲା । ସେହିଭଳି ସେଣ୍ଟଜନ୍ ଆମ୍ବୁଲାନ୍ସକୁ ଖାରବେଳନଗରରେ ଦିଆଯାଇଥିବା ପ୍ଲଟରେ ବିବାଦ ଥିବାରୁ ଉକ୍ତ ସଂସ୍ଥାକୁ ବିଜେବି ନଗରରେ ୨୧୮ ଡିସିମିଲ ଅର୍ଥାତ୍ ୯ହଜାର ୪୮୦ ବର୍ଗଫୁଟର ଜମି ମାଗଣାରେ ଦିଆଯିବ ।

ଓଡ଼ିଶା ସୂଚନା ସେବା ନିୟମର ସଂଶୋଧନ କରାଯାଇ ଏସ୍.ଡି.ପି.ଆର୍.ଓ. ପଦବୀଗୁଡ଼ିକ ଏଣିକି ୨୫ ପ୍ରତିଶତ ପଦୋନ୍ନତି ଭିତ୍ତିରେ ପୂରଣ କରାଯିବ ଏବଂ ୭୫ ପ୍ରତିଶତ ପଦବୀରେ ସିଧାସଳଖ ନିଯୁକ୍ତି ଦିଆଯିବ ।

ସେହିଭଳି ଓଡ଼ିଶା ବିଦ୍ୟୁତ୍ ଉତ୍ପାଦନ ନିଗମର ପ୍ରତିଷ୍ଠା ହେବାକୁ ଥିବା ତୃତୀୟ ଓ ଚତୁର୍ଥ ୟୁନିଟ୍‌ର ଉତ୍ପାଦନ କ୍ଷମତା ବୃଦ୍ଧି ପ୍ରସ୍ତାବକୁ କ୍ୟାବିନେଟ୍‌ର ମଞ୍ଜୁରି ମିଳିଛି । ପୂର୍ବରୁ ଏହି ଦୁଇ ୟୁନିଟ୍‌ରେ ୬୦୦ ମେଗାୱାଟ୍ ଲେଖାଏଁ ମୋଟ ୧୨୦୦ ମେଗାୱାଟ୍ ବିଦ୍ୟୁତ୍ ଉତ୍ପାଦନ ହେବା ପାଇଁ ମଞ୍ଜୁରି ମିଳିଥିଲା । ମାତ୍ର ଉକ୍ତ ନିଗମ ସୁପର କ୍ରିଟିକାଲ ଟେକ୍ନୋଲୋଜି ବ୍ୟବହାର କରି ଉତ୍ପାଦନ କ୍ଷମତା ୬୬୦ ମେଗାୱାଟ ଲେଖାଏଁ ମୋଟ ୧୩୨୦ ମେଗାୱାଟକୁ ବୃଦ୍ଧି ପ୍ରସ୍ତାବକୁ କ୍ୟାବିନେଟ୍‌ର ମଞ୍ଜୁରି ମିଳିଛି । ଦୁଇଟି ୟୁନିଟ୍‌ରୁ ରାଜ୍ୟ ସର୍ବନିମ୍ନ ୪୨୦ ମେଗାୱାଟ୍ ବିଦ୍ୟୁତ୍ ପାଇବ । ଓ.ପି.ଜି.ସି. ତୃତୀୟ ୟୁନିଟ୍ ନିର୍ମିତ ହେବା ପରେ ଚତୁର୍ଥ ୟୁନିଟ୍ କାର୍ଯ୍ୟକ୍ଷମ ପାଇଁ ୬ ମାସ ସମୟ ଲାଗିବ । ୬ ମାସ ମଧ୍ୟରେ ଚତୁର୍ଥ ୟୁନିଟ୍‌ର କାର୍ଯ୍ୟ ଯଦି ସମାପ୍ତ ନହୁଏ ତାହେଲେ ୪୫୦ ମେଗାୱାଟ୍ ବିଦ୍ୟୁତ୍ ରାଜ୍ୟକୁ ଦେବ ।

୭ ହଜାର କୋଟି ଟଙ୍କା ବ୍ୟୟରେ ୨୦୧୩ ମସିହାରେ ଏହି ପ୍ରକଳ୍ପ କାର୍ଯ୍ୟକ୍ଷମ ହେବ । ପୁଞ୍ଜି ପ୍ରତ୍ୟାହାର ସଂକ୍ରାନ୍ତ କ୍ୟାବିନେଟ୍ କମିଟିକୁ ପୁନର୍ଗଠନ କରାଯାଇଛି । ମୁଖ୍ୟମନ୍ତ୍ରୀ ଏହାର ଅଧକ୍ଷ ରହିବେ ଓ ଶିଳ୍ପ ମନ୍ତ୍ରୀ, ସାଧାରଣ ଉଦ୍ୟୋଗ ମନ୍ତ୍ରୀ, ଅର୍ଥ ମନ୍ତ୍ରୀ, ଆଇନ୍ ଓ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ସଭ୍ୟ ରହିବେ ।

## କୃଷି ସୂଚନା

**ଧାନ :**



- ଧାନ ରୋଇବାର ୨୧ ଦିନ ହୋଇଥିଲେ ଜଳ ନିଷ୍କାସନ କରି ମୋଟ ଯବକ୍ଷାରଜାନ ସାରର ଏକ ଚତୁର୍ଥାଂଶ ପିଲସାର ହିସାବରେ ପ୍ରୟୋଗ କରନ୍ତୁ ।
- ଅଧିକ ଦିନର ତଳି (୫୦-୬୦ ଦିନର) ରୋଇବାର ଥିଲେ ବୁଦାପିଛା ୩-୪ଟା ଗଛ ଲଗାନ୍ତୁ ଏବଂ ମୂଳସାରର ପରିମାଣ ଦେଢ଼ଗୁଣ ଦେଇ ଅଳ୍ପ ଦୂରତାରେ ଲଗାନ୍ତୁ ।
- କାଣ୍ଡବିନ୍ଧା ପୋକର ନିୟନ୍ତ୍ରଣ ପାଇଁ ଏକର ପିଛା ୮ଟି ସଂଗ ଆକର୍ଷକ ଯନ୍ତା ବସାନ୍ତୁ ।
- ମାଟିଆଗୁଣ୍ଡି ପୋକର ପ୍ରାଦୁର୍ଭାବ ଥିଲେ ଏକର ପିଛା ୪୦୦ ମି.ଲି. କ୍ଲୋରୋପାଇରିଫସ୍ ୨୦୦ ଲିଟର ପାଣିରେ ମିଶାଇ ୭-୧୦ ଦିନ ଅନ୍ତରରେ ଦୁଇଥର ସିଞ୍ଚନ କରନ୍ତୁ ।
- ବିଜାଣୁ ଜନିତ ପତ୍ରପୋଡ଼ା ରୋଗ ଏବଂ କବକ ଜନିତ ମହିଷା ରୋଗର ନିୟନ୍ତ୍ରଣ ପାଇଁ ୨୦୦ ଗ୍ରାମ ପ୍ଲାନ୍ଟୋମାଇସିନ୍ ସହ ୪୦୦ ଗ୍ରାମ ଭିଟାଭାକ୍ସ ପାଓ୍ୱାର ୨୦୦ ଲିଟର ପାଣିରେ ମିଶାଇ ସିଞ୍ଚନ କରନ୍ତୁ ।

**କପା :**



- କପା ଫସଲ ୪୫ ଦିନର ହୋଇଥିଲେ ଦ୍ୱିତୀୟ ଦଫା ଯବକ୍ଷାରଜାନ ଓ ପଟାସ ସାର ପ୍ରୟୋଗ କରନ୍ତୁ ।
- ଅଧିକ ଫୁଲ ଓ ଫଳ ଧରିବା ପାଇଁ ପ୍ଲାନୋଫିକ୍ସ ହରମୋନ ୧୦ ପିପିଏମ୍ (୯ ଲିଟର ପାଣିରେ ୨ ମି.ଲି.) ହିସବାରେ ସିଞ୍ଚନ କରନ୍ତୁ ।
- ଶୋଷକ ପୋକର ନିୟନ୍ତ୍ରଣ ପାଇଁ ନିମ୍ବତେଲ ୧ ଲିଟର ୨୦୦ ଲିଟର ପାଣିରେ ମିଶାଇ ଏକ ଏକର ଜମିରେ ୧୦ ଦିନ ଅନ୍ତରରେ ଦୁଇଥର ସିଞ୍ଚନ କରନ୍ତୁ ।
- ଚିତ୍ରିତ ବକରାବିନ୍ଧା ପୋକର ପ୍ରାଦୁର୍ଭାବ ଜାଣିବା ପାଇଁ ଏକର ପିଛା ଦୁଇଟି ସଂଗ ଆକର୍ଷକ ଯନ୍ତା ବସାନ୍ତୁ ଏବଂ ଏହାର ନିୟନ୍ତ୍ରଣ ପାଇଁ ୪୦୦ ଗ୍ରାମ ବିଟିକେ (ବାୟୋଡାର୍ଟ) ୨୦୦ ଲିଟର ପାଣିରେ ମିଶାଇ ସିଞ୍ଚନ କରନ୍ତୁ ।
- ବୀଜାଣୁଜନିତ ପତ୍ର ପୋଡ଼ା ଏବଂ କୌଣିକ ପତ୍ର ଦାଗ ଦେଖାଦେଲେ ୨୦୦ ଗ୍ରାମ ପ୍ଲାନ୍ଟୋମାଇସିନ୍ ସହ ୪୦୦ ଗ୍ରାମ୍ ଭିଟାଭାକ୍ସ ପାଓ୍ୱାରକୁ ୨୦୦ ଲିଟର ପାଣିରେ ମିଶାଇ ଏକ ଏକର ଜମିରେ ସିଞ୍ଚନ କରନ୍ତୁ ।

- ଫସଲକୁ ବିଭିନ୍ନ ପୋକ ଦାଉରୁ ରକ୍ଷା କରିବା ପାଇଁ ଏକର ପିଛା ୮-୧୦ଟା ସ୍ଥାନରେ ଚଢ଼େଇ ବସିବା ପାଇଁ ଶୁଖିଲା ଡାଳ ପୋତନ୍ତୁ ।

**ହରଡ଼ :**

- ହରଡ଼ ଫସଲ ୨୧-୩୦ ଦିନ ହୋଇଥିଲେ କୋଡ଼ା ଖୋସା କରି ଘାସ ଲଟା ସଫା କରନ୍ତୁ ।

**ମାଣ୍ଡିଆ :**

- ମାଣ୍ଡିଆ ରୋଇବାର ୨୧-୨୫ ଦିନ ହୋଇଥିଲେ ମୋଟ ଯବକ୍ଷାରଜାନ ସାରର ଏକ ଚତୁର୍ଥାଂଶ ପିଲସାର ହିସାବରେ ପ୍ରୟୋଗ କରନ୍ତୁ ।
- ମହିଷା ରୋଗର ନିରାକରଣ ପାଇଁ ଏକର ପିଛା ୪୦୦ ଗ୍ରାମ ଟାଇସାକ୍ଲାଜୋଲ୍ (ବିମ୍) ୨୦୦ ଲିଟର ପାଣିରେ ମିଶାଇ ସିଞ୍ଚନ କରନ୍ତୁ ।
- କାଣ୍ଡବିନ୍ଧା ପୋକର ନିୟନ୍ତ୍ରଣ ପାଇଁ ଏକର ପିଛା ୮ଟି ସଂଗ ଆକର୍ଷକ ଯନ୍ତ୍ର ବସାନ୍ତୁ ।

**ଆଖୁ :**



- କିଆରିରେ ଅଧିକ ପାଣି ଜମିଥିଲେ ନିଷ୍କାସନ କରନ୍ତୁ ଏବଂ ଘାସ ଲଟା ସଫା କରନ୍ତୁ ।
- ଲାଲସଢ଼ା ରୋଗର ନିୟନ୍ତ୍ରଣ ପାଇଁ ଏକର ପିଛା ୪୦୦ ଗ୍ରାମ ସାଫ୍ ୨୦୦ ଲିଟର ପାଣିରେ ମିଶାଇ ସିଞ୍ଚନ୍ କରନ୍ତୁ ।
- ପବବିନ୍ଧା ପୋକର ପ୍ରାଦୁର୍ଭାବ ଦେଖା ଦେଲେ ଏକର ପିଛା ୫୦,୦୦୦ ହିସାବରେ ଟ୍ରାଇକୋଗ୍ରାମା ଚିଲୋନିସ୍ ନାମକ ପରଜୀବୀ ଜୈବ ନିୟନ୍ତ୍ରଣ ପ୍ରୟୋଗ କରନ୍ତୁ ।

**ପନିପରିବା :**

- ପନିପରିବାର ବିହନଜନିତ ମୂଳଶଢ଼ା, କାଣ୍ଡଶଢ଼ା ଏବଂ ନର୍ସରୀଜନିତ ରୋଗରୁ ରକ୍ଷା ପାଇବା ପାଇଁ ବିହନ କି.ଗ୍ରା ପ୍ରତି ପ୍ଲାଣ୍ଟୋମାଇସିନ୍ ୧ ଗ୍ରାମ ଏବଂ ବାଭିଷ୍ଟିନ୍ ୧.୫ ଗ୍ରାମ ମିଶାନ୍ତୁ ଏବଂ ତଳି ଘେରାରେ ବିହନ ବୁଣନ୍ତୁ ।

(ନିରାକାର ରଣସିଂହ ଓ ଭବାନୀ ଶଙ୍କର ନାୟକ)
କୃଷି ବିଜ୍ଞାନ କେନ୍ଦ୍ର, ରାୟଗଡ଼ା (ଗୁଣୁପୁର)






# ଆନନ୍ଦର ପର୍ବ ଦଶହରା

**ଓ**ଡ଼ିଶା ସମେତ ଭାରତର ପୂର୍ବାଞ୍ଚଳରେ ଦୁର୍ଗାପୂଜା ବା ଦଶହରା ପର୍ବ ଲୋକେ ଆନନ୍ଦ ମନରେ ପାଳନ କରୁଥିବା ପରିଲକ୍ଷିତ ହୋଇଥାଏ । ପଡ଼ୋଶୀ ପଶ୍ଚିମବଙ୍ଗ ରାଜ୍ୟରେ ମହାଡ଼ମ୍ବରରେ ଏହି ଉତ୍ସବ ପାଳନ ହେଉଥିବାରୁ, କାଳକ୍ରମେ ଓଡ଼ିଶାରେ ତାହାର ପ୍ରଭାବ ପଡ଼ିଥିବା ଅନୁମାନ କରାଯାଏ । କେବଳ କଟକ ସହରରେ ଶତାଧିକ ସୁଶୋଭିତ ଦୁର୍ଗାମେଢ଼ ସହ ଦୁର୍ଗାମୂର୍ତ୍ତି ଓ ପୂଜା ସବୁଠାରୁ ବଡ଼ ଆକର୍ଷଣୀୟ ଉତ୍ସବ ବୋଲି ମନେ ହେଉଥିଲା । ମାତ୍ର ଏବେ ରାଜଧାନୀ ଭୁବନେଶ୍ୱରରେ ମହାଡ଼ମ୍ବରରେ ଦୁର୍ଗାପୂଜା ଓ ଦଶହରା ଉତ୍ସବ ପାଳିତ ହେଉଛି । ଏପରିକି ଭାରତର କେତେକ ସ୍ଥାନରେ ପ୍ରଚଳିତ ରାବଣପୋଡ଼ି ଉତ୍ସବ ମଧ୍ୟ ପାଳିତ ହେଉଛି । ତେବେ କଟକ, ଭୁବନେଶ୍ୱର ଓ ରାଉରକେଲା ସହରମାନଙ୍କରେ ଧୂମ୍‌ଧାମରେ ଦୁର୍ଗାପୂଜା ଓ ଦଶହରା ପର୍ବ ଯେପରି ପାଳନ କରାଯାଏ ଅନ୍ୟ ସହରମାନଙ୍କରେ ତାହା ପ୍ରାୟ ପରିଲକ୍ଷିତ ହୁଏ ନାହିଁ ।

ଶରତ ଋତୁରେ ଏହି ଦୁର୍ଗା ପୂଜା ଓ ଦଶହରା ପର୍ବ କେବଳ ଓଡ଼ିଶାରେ ନୁହେଁ, ଭାରତରେ ଏକ ବଡ଼ପର୍ବ ଭାବେ ପରିଚିତ । ଅନ୍ୟ ସମୟରେ ମଧ୍ୟ ଦୁର୍ଗାଙ୍କୁ ପୂଜା କରାଯାଏ, କିନ୍ତୁ ଶରତ ଋତୁରେ ଏ ଦୁର୍ଗାପୂଜାକୁ ଶରତକାଳୀନ ବା ଶାରଦୀୟ ଦୁର୍ଗାପୂଜା ବୋଲି ସାଧାରଣତଃ କୁହାଯାଇ ଥାଏ ଏବଂ ଏହି ଦୁର୍ଗାପୂଜା ସକଳଙ୍କ ପାଇଁ ହୋଇଥିବାରୁ ଏହା ସାର୍ବଜନୀନ ଦୁର୍ଗାପୂଜା ଭାବରେ ମଧ୍ୟ ପରିଚିତ । ଆଶ୍ୱିନ ଶୁକ୍ଳପକ୍ଷର ସପ୍ତମୀ, ଅଷ୍ଟମୀ ଓ ନବମୀ ତିଥିରେ ପ୍ରତିଦିନ ପୂଜାର ଗୁରୁତ୍ୱ ଉପଲବ୍ଧ ହୋଇଥାଏ । ପୁଣି ଅଷ୍ଟମୀ ପୂଜା ପରେ ଓ ନବମୀ ପୂଜା ପୂର୍ବରୁ ସନ୍ଧି ପୂଜା ହିଁ ସଂପନ୍ନ କରାଯାଇଥାଏ । ଶେଷରେ ଦଶହରା ଦିନ ଦୁର୍ଗାଦେବୀଙ୍କୁ ବିସର୍ଜନ କରାଯାଏ ଓ ଦଶହରା ପର୍ବ ବିଭିନ୍ନ ଢଙ୍ଗରେ ପାଳନ କରାଯାଏ । ଦେବୀ ମୂର୍ତ୍ତିଙ୍କୁ ନିକଟସ୍ଥ ନଦୀରେ ଭସାଇ ଯେପରି ବିସର୍ଜନ କରାଯାଏ, ସେହି ଉତ୍ସବକୁ ଭସାଣୀ ଉତ୍ସବ ଭାବେ ମହାଡ଼ମ୍ବରରେ ପାଳନ କରାଯାଏ ।

ଦୁଷ୍ଟ ଦାନବକୁ ନିହତ କରିବାକୁ ତ ଦେବୀ ଦୁର୍ଗା ସବୁ ଦେବତାଙ୍କ ଶକ୍ତି ଓ ଜ୍ୟୋତି ନେଇ ଆବିର୍ଭୂତା ହୋଇଥିଲେ ! ମହିଷ ରୂପରେ ଅସୁର ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ - ଏ ତିନିପୁରରେ ତା'ର ଅତ୍ୟାଚାର ଜାରି ରଖିବାରୁ ସମସ୍ତେ ଅତିଷ୍ଠ ହୋଇପଡ଼ିଲେ । ଏପରିକି ମହିଷାସୁର ସ୍ୱର୍ଗର ରଜା ଇନ୍ଦ୍ରଙ୍କର ସିଂହାସନ ମଧ୍ୟ ଦଖଲ କରିନେଲା । ସମସ୍ତେ ଯାଇ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କୁ ପ୍ରାର୍ଥନା କରିବାରୁ ସମସ୍ତ ଦେବତାଙ୍କ ଶକ୍ତି, ଅସ୍ତ୍ର, ପୋଷାକ ଓ

ଜ୍ୟୋତିରେ ଦେବୀ ଦୁର୍ଗା ଆବିର୍ଭୂତା ହେଲେ । ହିମାଳୟ ପର୍ବତ ମଧ୍ୟ ଦେବୀ ଦୁର୍ଗାଙ୍କୁ ବାହନ ରୂପେ ବ୍ୟବହାର କରିବାକୁ ପରମ ପରାକ୍ରମଶାଳୀ, ଅପରିଜେୟ ସିଂହକୁ ପ୍ରଦାନ କରିଥିଲେ । ଦେବୀ ଦୁର୍ଗାଙ୍କ ପ୍ରତିମାରେ ତେଣୁ ଦେବୀ ଦଶଟି ହସ୍ତରେ ଅସ୍ତ୍ର ଧାରଣ କରିଥିବା ଦେଖାଯାଇଥାଏ । ଦେବୀଙ୍କ ମସ୍ତକରେ ମଙ୍ଗଳର ଚିହ୍ନ ଶୋଭା ପାଉଥାଏ । ଦେବୀଙ୍କ ଦୁଇପାର୍ଶ୍ୱରେ ଚାରିଗୋଟି ସନ୍ତାନଙ୍କ ମୂର୍ତ୍ତି ମଧ୍ୟ ଶୋଭା ପାଉଥାଏ । ସେମାନେ ହେଲେ ବିଦ୍ୟାଦାତ୍ରୀ ସରସ୍ୱତୀ, ଧନଦାତ୍ରୀ ଲକ୍ଷ୍ମୀ, ସିଦ୍ଧିଦାତା ଗଣେଶ ଓ ପବିତ୍ରଦାତା ସୁନ୍ଦର କାର୍ତ୍ତିକେୟ । ଗୋଟିଏ ଭୟଙ୍କର ମହିଁଷ ମଧ୍ୟରୁ ଅମର ବରପ୍ରାପ୍ତ ଅସୁର ଜନ୍ମ ହୋଇଥାଏ, ଯାହାଙ୍କୁ ଦେବୀ ଦୁର୍ଗା ତାଙ୍କର ଅପୂର୍ବ ଶକ୍ତିରେ ତ୍ରିଶୂଳ ଦ୍ୱାରା ବଧ କରିଥାନ୍ତି ।

ଆଜି ମଧ୍ୟ ଅତି ଧୂମ୍‌ଧାମରେ ଦୁର୍ଗାପୂଜା ଉତ୍ସବ ପାଳିତ ହେଉଛି କିନ୍ତୁ ରାଜ୍ୟ ସରକାରଙ୍କ ଅନୁରୋଧ ସତ୍ତ୍ୱେ ଆତଙ୍କବାଦୀମାନଙ୍କ ଅତ୍ୟାଚାରର ଇତି ହୋଇ ନାହିଁ । ଶାନ୍ତିପ୍ରିୟ ଓଡ଼ିଶାରେ ଶାନ୍ତ ବାତାବରଣକୁ କଳୁଷିତ କରିବାକୁ ଅନେକ ଉଦ୍ୟମ କରୁଛନ୍ତି । ସବୁକ୍ଷେତ୍ରରେ ଅବହେଳିତ ଓଡ଼ିଶାକୁ ସ୍ୱାବଲମ୍ବନଶୀଳ କରିବାକୁ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଆମ ସରକାର ସବୁ ପ୍ରକାର ଉଦ୍ୟମ କରି ଆସୁଛନ୍ତି । ଓଡ଼ିଶାର ଦାରିଦ୍ର୍ୟ ଲୋପ କରି ବିଭିନ୍ନ ଅବହେଳିତ ବର୍ଗର ଲୋକଙ୍କୁ ଉପରକୁ ଉଠାଇବାକୁ ସରକାର ତାଙ୍କର ଅକ୍ଳାନ୍ତ ଉଦ୍ୟମ ଜାରି ରଖିଥିବା ବେଳେ ରାଜ୍ୟର ଅନିଷ୍ଟ ଚାହୁଁଥିବା ଅନେକ ଶକ୍ତି ମୁଣ୍ଡ ଟେକି ସେହି ଉନ୍ନତି ପ୍ରକ୍ରିୟାକୁ ବ୍ୟାହତ କରିବାକୁ ସର୍ବତ୍ର ଅଶାନ୍ତି ଓ ଅସନ୍ତୋଷର ବାତାବରଣ ସୃଷ୍ଟି କରି ଚାଲିଛନ୍ତି । ହେ ମା' ଦୁର୍ଗା ! ଏ ସବୁ ଶକ୍ତିକୁ ନିପାତ କରି ତୁମ ମସ୍ତକରେ ଯେଉଁ ମଙ୍ଗଳର ଚିହ୍ନ ଓ ଶିବଙ୍କର ପ୍ରତିଛବି ରହିଛି, ତଦ୍ୱାରା ଓଡ଼ିଶାର ମଙ୍ଗଳ କର । ଏତିକି ପ୍ରାର୍ଥନା ଆମର ।

ପ୍ରଫୁଲ୍ଲଚନ୍ଦ୍ର ଘଡ଼ାଇ

# ଉତ୍କଳ ପ୍ରସଙ୍ଗ

**The Utkal Prasanga**
**September 2009**

୬୬ ଭାଗ | ୨ୟ ସଂଖ୍ୟା | ଭାଦ୍ର-ଆଶ୍ୱିନ | ସେପ୍ଟେମ୍ବର - ୨୦୦୯

**ରବିନ୍ଦ୍ର ନାଥ ଦାଶ**
କମିଶନର ତଥା ଶାସନ ସଚିବ

**ବୈଷ୍ଣବ ପ୍ରସାଦ ମହାନ୍ତି**
ନିର୍ଦ୍ଦେଶକ

**ଗୁରୁକଲ୍ୟାଣ ମହାପାତ୍ର**
ମୁଖ୍ୟ ସମ୍ପାଦକ

ସମ୍ପାଦନା ସହଯୋଗୀ
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**
**ସଚିଦାନନ୍ଦ ବାରିକ**

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
**ମାନସ ନାୟକ**
ଫଟୋ :
**ରାଜୁ ସିଂ ଓ ମନୋରଂଜନ ମହାନ୍ତି**

କମ୍ପ୍ୟୁଟର ସେଟିଂ ଓ ଡ଼ିଜାଇନିଂ
**ମନୋଜ କୁମାର ପାତ୍ର**
**ହେମନ୍ତ କୁମାର ସାହୁ**

**ପ୍ରତିଖଣ୍ଡ : ଟ.୫.୦୦**


---




ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧

*Chief Editor : Gurukalyan Mohapatra*
ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissagov.nic.in
ଫୋନ : ୦୬୭୪-୨୫୩୦୨୧୧

# ସୂଚୀ



# ସ୍ୱାଧୀନତା ଦିବସ ଉପଲକ୍ଷେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଅଭିଭାଷଣ

**ଆ**ଜି ପବିତ୍ର ସ୍ୱାଧୀନତା ଦିବସ । ଏହି ଅବସରରେ ରାଜ୍ୟବାସୀ ମୋର ପ୍ରିୟ ଭାଇ ଓ ଭଉଣୀମାନଙ୍କୁ ମୋର ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ସ୍ୱାଧୀନତା ଦିବସ ଆମ ସମସ୍ତ ପାଇଁ ଗର୍ବ ଓ ଗୌରବର ଦିବସ । ଏହା ଆମକୁ ଆମର ସଂଗ୍ରାମୀମାନଙ୍କ ତ୍ୟାଗ ଓ ଦେଶପ୍ରେମ ବିଷୟରେ ମନେପକାଇ ଦେଇଥାଏ । ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତର ମୁକ୍ତି ସଂଗ୍ରାମରେ ଯୋଗ ଦେଇଥିବା ଆମର ସଂଗ୍ରାମୀମାନଙ୍କ ପ୍ରତି ଏହି ଅବସରରେ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଭାରତର ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ଅବଦାନ ଗୁରୁତ୍ୱପୂର୍ଣ୍ଣ ଥିଲା । ଜୟୀ ରାଜଗୁରୁ, ବୀର ସୁରେନ୍ଦ୍ର ସାଏ, ଚକରା ବିଷୋଇ, ବକ୍ସି ଜଗବନ୍ଧୁ, ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଗୋପବନ୍ଧୁ ଚୌଧୁରୀ, ମା' ରମାଦେବୀ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଶହୀଦ୍ ଲକ୍ଷ୍ମଣ ନାଏକ, ଡଃ ହରେକୃଷ୍ଣ ମହତାବ ଓ ବିଜୁ ପଟ୍ଟନାୟକ ଆଦି ପୂଜ୍ୟ ନେତାମାନଙ୍କ ନେତୃତ୍ୱରେ ଓଡ଼ିଶାର ସଂଗ୍ରାମୀମାନେ ଦେଶର ମୁକ୍ତି ସଂଗ୍ରାମରେ ସାମିଲ ହୋଇଥିଲେ । ଏହି ଅବସରରେ ମୁଁ ସେମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଆପଣମାନେ ଜାଣନ୍ତି ମହାନ୍ ସ୍ୱାଧୀନତା ସଂଗ୍ରାମୀ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଆମ ଓଡ଼ିଶାର କଟକ ସହରରେ ଜନ୍ମ ହୋଇଥିଲେ । ଦେଶ ପାଇଁ ତାଙ୍କର ତ୍ୟାଗର ତୁଳନା ନାହିଁ । ମୁଁ ଏହି ଅବସରରେ ତାଙ୍କପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ସ୍ୱାଧୀନତା ପରେ ଓଡ଼ିଶା ବିଭିନ୍ନ କ୍ଷେତ୍ରରେ ସଫଳତା ହାସଲ କରିଛି । ଗତ ଦଶ ବର୍ଷ ମଧ୍ୟରେ ଏହି ବିକାଶର ଧାରା ଦ୍ରୁତ ହୋଇଛି । କୃଷି, ଶିଳ୍ପ ଓ ଭିତ୍ତିଭୂମିର ବିକାଶ ସହିତ ବିଭିନ୍ନ ସାମାଜିକ କଲ୍ୟାଣ ଓ ନିଯୁକ୍ତି କାର୍ଯ୍ୟକ୍ରମ ଉପରେ ଆମେ ଗୁରୁତ୍ୱ ଦେଇ ଆସୁଛୁଁ ।

କୃଷି ଆମର ମୁଖ୍ୟ ଜୀବିକା । ତେଣୁ କୃଷି କ୍ଷେତ୍ରର ବିକାଶ ଆମର ପ୍ରଥମ ଦାୟିତ୍ୱ । ଏହା ଜରିଆରେ ଆମର ଅର୍ଥନୀତି ମଜବୁତ୍ ହେବା ସହିତ ଗ୍ରାମାଞ୍ଚଳରେ ନିଯୁକ୍ତିର ବିପୁଳ ସୁଯୋଗ ସୃଷ୍ଟି ହୋଇପାରିବ । ଆମ କୃଷି ନୀତିରେ କୃଷି ବିକାଶର ସମସ୍ତ ଦିଗ ପ୍ରତି ଧ୍ୟାନ ଦିଆଯାଇଛି । ଚଳିତ ବର୍ଷ ବିହନ ଯୋଗାଣରେ ଆମେ ଏକ ରେକର୍ଡ଼ ପ୍ରତିଷ୍ଠା କରିଛୁଁ ।

ଜଳସେଚନ କୃଷି ପାଇଁ ଗୁରୁତ୍ୱପୂର୍ଣ୍ଣ । ଅଧିକରୁ ଅଧିକ ଚାଷ ଜମିକୁ ଜଳସେଚନ ସୁବିଧା ଯୋଗାଇଦେବା ଆମର ଲକ୍ଷ୍ୟ । ଗତ ଦଶ ବର୍ଷ ଭିତରେ ୩ ଲକ୍ଷ ୫୦ ହେକ୍ଟରରୁ ଅଧିକ ଜମିକୁ ଜଳସେଚନ ସୁବିଧା ଯୋଗାଇ ଦିଆଯାଇଛି । ଆଗାମୀ ୫ ବର୍ଷ ମଧ୍ୟରେ ଅଧିକରୁ ଅଧିକ ଜମିକୁ ଜଳସେଚନ ସୁବିଧା ପାଇଁ ଆମେ ଯୋଜନା କରିଛୁଁ ।

କୃଷିର ବିକାଶ ସହିତ ଗ୍ରାମାଞ୍ଚଳର ବିକାଶ ଯୋଡ଼ି ହୋଇରହିଛି । ଗ୍ରାମାଞ୍ଚଳରେ ରାସ୍ତାଘାଟ, ବିଜୁଳି, ଭଲ ପିଇବା ପାଣିର ସୁବିଧା ଉପରେ ଆମେ ଗୁରୁତ୍ୱ ଦେଇଆସିଛୁଁ । ଏହା ସହିତ ଗ୍ରାମାଞ୍ଚଳର ଲୋକମାନଙ୍କ ପାଖରେ ନୂଆ ନୂଆ ଟେକ୍ନୋଲୋଜିର ସୁବିଧା ପହଞ୍ଚାଇବା ପାଇଁ ମଧ୍ୟ ଆମର ଉଦ୍ୟମ ଜାରି ରହିଛି । ୨୦୧୨ ସୁଦ୍ଧା ଆମ ରାଜ୍ୟର ସବୁ ଗାଁକୁ ବିଜୁଳି ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି ।

ଶିଳ୍ପ କ୍ଷେତ୍ରରେ ବିକାଶ ପାଇଁ ଆମେ ଅନେକ ପଦକ୍ଷେପ ନେଇଛୁଁ । ୧୦ ବର୍ଷ ତଳେ ରାଜ୍ୟରେ ମାତ୍ର ୨୦ ଲକ୍ଷ ଟନ୍ ଇସ୍ପାତ୍ ଉତ୍ପାଦିତ ହେଉଥିଲା । ଆଜି ରାଜ୍ୟରେ ୧୦୦ ଲକ୍ଷ ଟନ୍ ଇସ୍ପାତ୍ ଉତ୍ପାଦିତ ହେଉଛି । ବିଶ୍ୱବ୍ୟାଙ୍କର ରିପୋର୍ଟ ଅନୁସାରେ ବିଜିନେସ୍ ପାଇଁ ଭୁବନେଶ୍ୱର ସାରା ଦେଶର ପ୍ରମୁଖ ସହରମାନଙ୍କ ମଧ୍ୟରେ ତିନି ନମ୍ବରରେ ରହିଛି ।

ପରିବେଶ ସମସ୍ତଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ । ତେଣୁ ଅଧିକରୁ ଅଧିକ ଗଛ ଲଗାଇବା ଓ ତାର ଯତ୍ନ ନେବା ପାଇଁ ମୁଁ ରାଜ୍ୟବାସୀଙ୍କୁ ଏହି ଅବସରରେ ଅନୁରୋଧ କରୁଛି ।

ଆମ ରାଜ୍ୟରେ ଆଦିବାସୀ ଭାଇଭଉଣୀମାନେ ବହୁସଂଖ୍ୟାରେ ବାସ କରନ୍ତି । ତେଣୁ ସେମାନଙ୍କର ବିକାଶ ମୋ ସରକାରର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ । ଆଦିବାସୀମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ଉପରେ ମୁଁ ସବୁବେଳେ ଜୋର୍ ଦେଇଆସିଛି । ଆଦିବାସୀ ଝିଅମାନଙ୍କର ପାଠ ପଢ଼ିବାର ସୁବିଧା ପାଇଁ ଆମେ ଏକ ହଜାର ହଷ୍ଟେଲ ତିଆରି କରିଛୁଁ । ଏଥିରେ ଏକ ଲକ୍ଷ ଆଦିବାସୀ ଝିଅ ରହି ପାଠ ପଢୁଛନ୍ତି । ଚଳିତ ବର୍ଷ ମଧ୍ୟ ଆଉ ଏକ ଲକ୍ଷ ଛାତ୍ରୀଙ୍କ ପାଇଁ ଏକ ହଜାର ନୂଆ ହଷ୍ଟେଲ ଖୋଲିବାର ଲକ୍ଷ୍ୟ ରଖାଯାଇଛି । କେବିକେ ଅଞ୍ଚଳର ବିକାଶ ପାଇଁ ବିଜୁ କେବିକେ ଯୋଜନା କାର୍ଯ୍ୟକାରୀ କରାଯାଉଛି । ଆଦିବାସୀମାନଙ୍କ ଜୀବନଧାରଣ ମାନରେ ଉନ୍ନତି ଆଣିବା ସହିତ ସେମାନଙ୍କୁ ବିକାଶର ମୁଖ୍ୟ ଧାରାରେ ସାମିଲ କରିବା ଆମର ସବୁ କାର୍ଯ୍ୟକ୍ରମର ମୁଖ୍ୟ ଲକ୍ଷ୍ୟ । ସେହିପରି ପଶ୍ଚିମ ଓଡ଼ିଶାର ବିକାଶ ପାଇଁ ପଶ୍ଚିମ ଓଡ଼ିଶା ବିକାଶ ପରିଷଦକୁ ଅଧିକ ପାଣ୍ଠି ଯୋଗାଇ ଦିଆଯାଉଛି ।

ମହିଳାମାନେ ହେଉଛନ୍ତି ଆମ ସମାଜର ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ । ମିଶନ ଶକ୍ତି କାର୍ଯ୍ୟକ୍ରମ ଜରିଆରେ ସେମାନେ ଆଜି ସମାଜରେ ଏକ ନୂଆ ଜାଗରଣ ଆଣିପାରିଛନ୍ତି । ରାଜ୍ୟର ୪୪ ଲକ୍ଷ ମହିଳା ଆଜି ଏହି ଆନ୍ଦୋଳନରେ ସାମିଲ ହୋଇଛନ୍ତି । ନିଜ ପରିବାରର ଉନ୍ନତି ସହିତ ବିଭିନ୍ନ ସାମାଜିକ ବିକାଶ କାର୍ଯ୍ୟକ୍ରମରେ ମଧ୍ୟ ସେମାନେ ଭାଗ ନେଇପାରୁଛନ୍ତି । ସେମାନଙ୍କର ବିକାଶ ପାଇଁ ସରକାର ସମସ୍ତ ସାହାଯ୍ୟ ସହଯୋଗ ଯୋଗାଇଦେବେ ।

ଯୁବ ସମାଜ ଆମର ସବୁଠାରୁ ବଡ଼ ସଂପଦ । ସେମାନଙ୍କର ଶକ୍ତିକୁ ଦେଶରେ ବିକାଶ ଲଗାଇବା ଆମର ଦାୟିତ୍ୱ । ତେଣୁ ସେମାନଙ୍କ ପାଇଁ ଆମ ସରକାର ବିଭିନ୍ନ ଆତ୍ମ-ନିଯୁକ୍ତି ଯୋଜନାମାନ ଆରମ୍ଭ କରିଛି । ଏଥିପାଇଁ ଏକ ଆତ୍ମ-ନିଯୁକ୍ତି ମିଶନ ମଧ୍ୟ ଗଠନ କରାଯାଇଛି । ଆମର ଯୁବକଯୁବତୀମାନଙ୍କର ସ୍କିଲ୍ ଅପ୍‌ଗ୍ରେଡ଼େସନ୍ ପାଇଁ ପ୍ରତି ବ୍ଲକ୍‌ରେ ଆଇ.ଟି.ଆଇ. ଖୋଲାଯାଉଛି । ମୁଁ ଆଶା କରୁଛି, ଆମର ଯୁବ ସମାଜ ସରକାରଙ୍କର ଆତ୍ମ-ନିଯୁକ୍ତି କାର୍ଯ୍ୟକ୍ରମର ସୁଯୋଗ ନେବେ ଓ ରାଜ୍ୟର ବିକାଶରେ ନିଜର ଯୋଗଦାନ ରଖିବେ ।

ଆମ ସମାଜରେ ଯେଉଁ ଭିନ୍ନକ୍ଷମ ଭାଇଭଉଣୀମାନେ ଅଛନ୍ତି, ସେମାନେ ମଧ୍ୟ ସେମାନଙ୍କର ପ୍ରତିଭାଦ୍ୱାରା ବିଭିନ୍ନ କ୍ଷେତ୍ରକୁ ସମୃଦ୍ଧ କରିପାରିଛନ୍ତି । ସେମାନଙ୍କୁ ଉତ୍ସାହିତ କରାଯିବା ଦରକାର । ରାଜ୍ୟ ସରକାର ସେମାନଙ୍କ କଲ୍ୟାଣ ଓ ଉନ୍ନତି ପାଇଁ ଅନେକ ସ୍ୱତନ୍ତ୍ର ପଦକ୍ଷେପ ଘୋଷଣା କରୁଛନ୍ତି ।

ସାରା ଦେଶରେ ବିଭିନ୍ନ ଅଞ୍ଚଳରେ ନକ୍ସଲ ସମସ୍ୟା ସମସ୍ତଙ୍କ ପାଇଁ ଚିନ୍ତାର କାରଣ ହୋଇଛି । ନକ୍ସଲମାନଙ୍କର ମୁକାବିଲା ପାଇଁ ରାଜ୍ୟ ସରକାର ଆଦିବାସୀ ଯୁବକମାନଙ୍କୁ ଏସ୍.ପି.ଓ. ଭାବରେ ନିଯୁକ୍ତି ଦେଇଛନ୍ତି । ନକ୍ସଲମାନେ ହେଉଛନ୍ତି ରାଷ୍ଟ୍ର ବିରୋଧୀ । ସେମାନଙ୍କର କିଛି ନୀତି ବା ଆଦର୍ଶ ନାହିଁ । ସେମାନେ ଦେଶ ଓ ସମାଜର ଶତ୍ରୁ । ସେମାନଙ୍କ ବିରୋଧରେ କଠୋର ପଦକ୍ଷେପ ନିଆଯିବ । ଗରିବ ଲୋକଙ୍କ କଲ୍ୟାଣ ଓ ରାଜ୍ୟର ବିକାଶ ଚାହୁଁଥିବା ଲୋକମାନେ ହିଂସା ଛାଡ଼ି ବିକାଶ କାମରେ ସାମିଲ ହେବାପାଇଁ ମୁଁ ଆହ୍ୱାନ ଜଣାଉଛି ।

ରାଜ୍ୟର ଅର୍ଥନୀତିରେ ଆଜି ଉନ୍ନତି ଆସିଛି । ଆମର ଅଭିବୃଦ୍ଧି ହାର ଜାତୀୟ ହାରଠାରୁ ଅଧିକ ରହିଛି । ଆମ ସରକାର ମଧୁବାବୁ ପେନ୍‌ସନ୍ ଯୋଜନା, ମୋ' କୁଡ଼ିଆ, କେଜି ଦୁଇ ଟଙ୍କାରେ ଚାଉଳ ଯୋଗାଣ ଆଦି ବିଭିନ୍ନ କଲ୍ୟାଣ କାର୍ଯ୍ୟକ୍ରମ ନିଜ ପାଣ୍ଠିରୁ ଆରମ୍ଭ କରୁଛନ୍ତି । ଖୁସିର କଥା ଆମର କଲ୍ୟାଣ କାର୍ଯ୍ୟକ୍ରମ ଗରିବ ଲୋକମାନଙ୍କ ମଧ୍ୟରେ ଆଶା ଓ ବିଶ୍ୱାସ ସୃଷ୍ଟି କରିପାରିଛି ।

ନ୍ୟାୟ ଓ ସମତା ଭିତ୍ତିରେ ଏକ ଶୋଷଣମୁକ୍ତ ସମାଜ ଗଠନ ଆମ ସ୍ୱାଧୀନତାର ଲକ୍ଷ୍ୟ ଥିଲା । ଶାନ୍ତି ଓ ବିକାଶ ଜରିଆରେ ହିଁ ଏହି ଲକ୍ଷ୍ୟ ଆମେ ହାସଲ କରିପାରିବା । ମୋ' ସରକାର ସବୁବେଳେ ସ୍ୱଚ୍ଛତାରେ ବିଶ୍ୱାସ କରିଆସିଛି ଓ ଏଥିପାଇଁ କାମ ମଧ୍ୟ କରୁଛି । ଉଗ୍ରବାଦୀ ଓ ସମାଜ ବିରୋଧୀ ଲୋକମାନଙ୍କ ବିରୋଧରେ ମୋ ସରକାର ସବୁବେଳେ କଠୋର ପଦକ୍ଷେପ ନେଇଆସିଛି । ଓଡ଼ିଶାକୁ ଶାନ୍ତି ଓ ପ୍ରଗତି ପଥରେ ଆଗେଇ ନେବାପାଇଁ ଆସନ୍ତୁ, ସମସ୍ତେ ମିଳିମିଶି କାମ କରିଚାଲିବା ।

- ଜୟହିନ୍ଦ୍ -

(ଗତ ତା.୧୫.୦୮.୦୯ରିଖରେ ଭୁବନେଶ୍ୱରର ମହାତ୍ମା ଗାନ୍ଧୀ ମାର୍ଗରେ ଆୟୋଜିତ ରାଜ୍ୟସ୍ତରୀୟ ପ୍ୟାରେଡ଼ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଅଭିଭାଷଣ)

# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି



**କବିବର ରାଧାନାଥ ରାୟ**

୨୮.୦୯.୧୮୪୮ - ୧୭.୦୪.୧୯୦୮



**ଗୋପାଳଚନ୍ଦ୍ର ପ୍ରହରାଜ**

୨୭.୦୯.୧୮୭୪ - ୧୬.୦୯.୧୯୪୫